# କାଳଜୟୀ କଲମ



ଓଡ଼ିଆ ସାହିତ୍ୟର ବିଶିଷ୍ଟ ସମାଲୋଚକ
ଡକ୍ଟର ନଟବର ସାମନ୍ତରାୟଙ୍କ
ପ୍ରଥମ ଶ୍ରାଦ୍ଧ ବାର୍ଷିକୀ ଉପଲକ୍ଷେ
ସ୍ମୃତିଗ୍ରନ୍ଥ

# କାଳଜୟୀ କଲମ

**ସମ୍ପାଦନା**
ସୁଲେଖା ସାମନ୍ତରାୟ

**ପ୍ରକାଶକ**
ମୃଣ୍ମୟ ପ୍ରକାଶନୀ,
ଏନ୍-୧/୨୩, ଆଇ.ଆର.ସି.ଭିଲେଜ,
ଭୁବନେଶ୍ୱର-୭୫୧୦୧୫

**ପ୍ରକାଶ କାଳ**
୧୭/୮/୨୦୦୧

**ପ୍ରଚ୍ଛଦ ଶିଳ୍ପୀ**
ଦେବ ପ୍ରସାଦ ପଟ୍ଟନାୟକ,
କେନ୍ଦ୍ରୀୟ ବିଦ୍ୟାଳୟ, ବାଲେଶ୍ୱର

**ମୁଦ୍ରଣ**
ରିପ୍ରୋପ୍ରିଣ୍ଟ ପ୍ରାଇଭେଟ୍ ଲିମିଟେଡ
ଏନ-୫/୪୩, ଆଇ.ଆର.ସି ଭିଲେଜ,
ଭୁବନେଶ୍ୱର-୭୫୧୦୧୫

# ସୂଚୀପତ୍ର

| ବିଷୟ | ଲେଖକ | ପୃଷ୍ଠା |
|---|---|---|



**ସମ୍ପର୍କ**



**କେତୋଟି ସାକ୍ଷାତକାରର**

**ଫଟୋରେ ଫଟୋରେ ନଟବର**

# ବାର୍ତ୍ତା

**ଶ୍ରୀଯୁକ୍ତ ରବି ରାୟ**
ପୂର୍ବତନ ବାଚସ୍ପତି, ଲୋକସଭା,
୩୩, କ୍ୟାନିଂ ଲେନ୍, ନୂଆଦିଲ୍ଲୀ-୧୧୦୦୦୧

ଓଡ଼ିଶାର ବିଶିଷ୍ଟ ସାହିତ୍ୟିକ, ସମାଲୋଚକ ଡକ୍ଟର ନଟବର ସାମନ୍ତରାୟଙ୍କ ତିରୋଧାନରେ ଓଡ଼ିଶା ତା'ର ଜଣେ ଲବ୍ଧପ୍ରତିଷ୍ଠ ସାହିତ୍ୟିକଙ୍କୁ ହରାଇଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଭୁବନେଶ୍ୱରର ସାମନ୍ତରାପୁରସ୍ଥିତ ତାଙ୍କ ନିଜ ବାସଭବନରେ ତାଙ୍କ ସହ ମୋର ପ୍ରଥମ ସାକ୍ଷାତରେ ମୁଁ ତାଙ୍କର ଯେଉଁ ସୃଜନଶୀଳ ମାନସିକତାର ପରିଚୟ ପାଇଥିଲି, ସେଥିପାଇଁ ତାଙ୍କ ପ୍ରତି ମୋର ସ୍ୱାଭାବିକ ସମ୍ମାନ ବଢ଼ିଯାଇଥିଲା । ସେ ଏକ ବଡ଼ ପରିବାରର ମୁଖିଆ ହୋଇଥିଲେ ସୁଦ୍ଧା ତାଙ୍କ ପାରିବାରିକ ଜଞ୍ଜାଳରୁ ନିଜକୁ ସମ୍ପୂର୍ଣ୍ଣ ନିର୍ଲିପ୍ତ ରଖି ପାରିଥିଲେ ବୋଲି ତାଙ୍କର ବୌଦ୍ଧିକ ଓ ଗବେଷଣାମୂଳକ କାମକୁ ଅବ୍ୟାହତ ରଖି ପାରିଥିଲେ । ତାଙ୍କ ନିଜ ଜୀବଦ୍ଦଶାରେ ସେ ନିଜକୁ ଓଡ଼ିଶାରେ ଜଣେ ଉଚ୍ଚକୋଟୀର ଗବେଷକ ଓ ସମାଲୋଚକ ରୂପେ ଯେପରି ପ୍ରତିଷ୍ଠା କରି ପାରିଥିଲେ, ତାହା କେବଳ ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ତାଙ୍କର ଐକାନ୍ତିକ ନିଷ୍ଠା ଯୋଗୁଁ ସମ୍ଭବ ହୋଇ ପାରିଥିଲା । ତାଙ୍କର ଦୀର୍ଘ ଦିନର ସାହିତ୍ୟିକ ସାଧନା ଯୋଗୁଁ ସେ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା 'ଅତିବଡ଼ୀ ଜଗନ୍ନାଥ ଦାସ' ପୁରସ୍କାରରେ ସମ୍ମାନିତ ହୋଇଥିଲେ ।

ଏହା ନିଃସନ୍ଦେହରେ କୁହାଯାଇପାରେ ଯେ ଡକ୍ଟର ନଟବର ସାମନ୍ତରାୟ ତାଙ୍କର ମୌଳିକ ଗବେଷଣା ଯୋଗୁଁ ଭବିଷ୍ୟତରେ ବହୁ ଯୁବ ଗବେଷକମାନଙ୍କର ପ୍ରେରଣାର ଉତ୍ସ ହୋଇ ରହିବେ ।

ତାଙ୍କ ସ୍ମୃତି ଉଦ୍ଦେଶ୍ୟରେ ତାଙ୍କ ପରିବାରବର୍ଗ ଏକ ସ୍ମରଣିକା ପ୍ରକାଶ କରୁଥିବାରୁ ମୁଁ ସେମାନଙ୍କୁ ଆନ୍ତରିକ ସାଧୁବାଦ ଜଣାଉଛି ।

# ଅଗ୍ରଲେଖା

**ଅ**ନ୍ତହୀନ, ଅତନ୍ଦ୍ର ସାଧନାରେ ଜୀବନବ୍ୟାପୀ ମଗ୍ନ ରହି ଡକ୍ଟର ନଟବର ସାମନ୍ତରାୟ ଓଡ଼ିଆ ଜାତିକୁ ଭେଟି ଦେଇ ଯାଇଛନ୍ତି ଏକ ଅମୃତର କଳସ । ଜୀବନ ସଂଗ୍ରାମରେ ନୀଳକଣ୍ଠ ପରି ସବୁତକ ବିଷପାନ କରି, ଅନ୍ୟମାନଙ୍କ ପାଇଁ ଯେଉଁ ସାହିତ୍ୟିକ ଗନ୍ତାଘର ସେ ଛାଡ଼ି ଯାଇଛନ୍ତି ତାହାର ଉପଯୁକ୍ତ ଆକଳନ, ମୂଲ୍ୟାଙ୍କନ ତଥା ବିନିଯୋଗ ଯେ ଏ ଜାତି କରିପାରିବ ତାହା ଏକ ବିରାଟ ପ୍ରଶ୍ନବାଚୀ ।

ପୁରସ୍କାର ବା ତିରସ୍କାର, ସଫଳତା ବା ବିଫଳତା, ଲାଭ ବା କ୍ଷତି, ପ୍ରାପ୍ତି ବା ଅପ୍ରାପ୍ତିର ସାଧାରଣ ସାଂସାରିକ ସଂକୀର୍ଣ୍ଣ ହିସାବ ନିକାଶଠାରୁ ବହୁ ଊର୍ଦ୍ଧ୍ୱରେ ରହି, କାଳଜୟୀ ସାହିତ୍ୟ ସୃଷ୍ଟି କରିଯିବା ଥିଲା ତାଙ୍କ ଜୀବନର ଏକମାତ୍ର ଲକ୍ଷ୍ୟ । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଏହି ଲକ୍ଷ୍ୟ ପଥରୁ ତିଳେ ମାତ୍ର ବିଚ୍ୟୁତ ନ ହୋଇ, ସମସ୍ତ ବ୍ୟକ୍ତିଗତ ସୁଖ ସୁବିଧାକୁ ଜଳାଞ୍ଜଳି ଦେଇ ସେ ଯେଉଁ କୃତିତ୍ୱର ସ୍ୱାକ୍ଷର ମହାକାଳର ବକ୍ଷରେ ଲିପିବଦ୍ଧ କରି ଯାଇଛନ୍ତି ତାହା ଯେ ଚିରକାଳ ପାଇଁ ଅମ୍ଳାନ ରହିବ ଏଥିରେ ଦ୍ୱିରୁକ୍ତି ନାହିଁ ।

ଆଜି ତାଙ୍କର ପ୍ରଥମ ଶ୍ରାଦ୍ଧ ବାର୍ଷିକୀରେ ତାଙ୍କର ଅମର ଆତ୍ମା ପ୍ରତି ଶ୍ରଦ୍ଧାଞ୍ଜଳି ଅର୍ପଣ ପୂର୍ବକ ଏହି 'କାଳଜୟୀ କଲମ' ସ୍ମୃତିଗ୍ରନ୍ଥ ତାଙ୍କୁ ସମର୍ପିତ କରି ମୁଁ ନିଜକୁ ଧନ୍ୟା ମନେ କରୁଅଛି । ଏକ ସୁଯୋଗ୍ୟ ପିତାର ଅଯୋଗ୍ୟା ସନ୍ତାନ ମୁଁ । ମହୀୟାନ ସୂର୍ଯ୍ୟଙ୍କ ସମ୍ମୁଖରେ ଦିକି ଦିକି ହୋଇ ଜଳୁଥିବା ଦୀପଶିଖାଟିଏ ମୁଁ । ଡଃ ନଟବର ସାମନ୍ତରାୟଙ୍କ କନ୍ୟା ଭାବରେ ନିଜକୁ ପରିଚିତ କରାଇଲା ବେଳେ ହୀନମନ୍ୟତାରେ ସଙ୍କୁଚିତ ହୋଇ ପଡୁଥିବା ମନ ମୋର, ବାପାଙ୍କ ସ୍ମୃତି ଉଦ୍ଦେଶ୍ୟରେ ପ୍ରକାଶିତ ଏହି ସ୍ମରଣିକାଟିକୁ ସମ୍ପାଦନା କରିବାର ସୁଯୋଗ ପାଇ ନିଜକୁ କୃତଜ୍ଞ ମନେ କରୁଅଛି ।

ସବୁ ପିତାମାତାଙ୍କ ପରି ଆମ ବାପାଙ୍କ ମଧ୍ୟ ଆମମାନଙ୍କଠାରୁ କିଛି ପ୍ରତ୍ୟାଶା ଥିଲା ନିଶ୍ଚୟ । ତାହା ପୂରଣ କରିବାରେ ଆମେମାନେ କେତେ ଦୂର ସଫଳ ହୋଇଛୁ ତାହା ଆଗାମୀ ସମୟ ହିଁ କହିବ । ଡକ୍ଟର ନଟବର ସାମନ୍ତରାୟଙ୍କର ସମସ୍ତ ପୁତ୍ର କନ୍ୟା, ଜ୍ୱାଇଁ ଓ ବୋହୂମାନଙ୍କର ମିଳିତ ଉଦ୍ୟମ ତଥା ସହଯୋଗରେ ପ୍ରକାଶିତ ଏହି ଗ୍ରନ୍ଥ, ପିତୃଋଣରେ ଚିରଦିନ ଋଣୀ ସେମାନଙ୍କର ଅବଶୋଷଗ୍ରସ୍ତ, ଭାରାକ୍ରାନ୍ତ ମନକୁ ଭୁଲାଇବାର ଏକ ପ୍ରୟାସ ମାତ୍ର ।

ସଂକଳନଟିର ପ୍ରସ୍ତୁତି ଦିଗରେ ଅକୁଣ୍ଠ ସହାୟତା ପ୍ରଦାନ କରିଥିବା ସମସ୍ତ ବ୍ୟକ୍ତି ବିଶେଷଙ୍କୁ ଏହି ଅବସରରେ ମୁଁ ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଅଛି । ଅଶେଷ ଶ୍ରମ ସ୍ୱୀକାର କରି ଡଃ ନଟବର ସାମନ୍ତରାୟଙ୍କ 'ପ୍ରବନ୍ଧାବଳୀ ଓ 'ନଟବର ବାଣୀ' ସଂଗ୍ରହ କରିଥିବା ଅଧ୍ୟାପକ ଶିବରାମ ପାତ୍ର (ଓଡ଼ିଆ ବିଭାଗ ମୁଖ୍ୟ, ଏକାମ୍ର ମହାବିଦ୍ୟାଳୟ, ଭୁବନେଶ୍ୱର) ବିଶେଷ ଧନ୍ୟବାଦାର୍ହ ।

'ମୃଣ୍ମୟ ପ୍ରକାଶନୀ'ର ଡିଟିପି ଅପରେଟର ଶ୍ରୀ ସୁକାନ୍ତ ସେଠଙ୍କର ଅକ୍ଲାନ୍ତ ପରିଶ୍ରମ ଓ ଶ୍ରୀ ହିରଣ୍ୟ ସାମନ୍ତରାୟଙ୍କର ସହଯୋଗ ପାଇଁ ସେମାନଙ୍କୁ ମଧ୍ୟ ଧନ୍ୟବାଦ ଜଣାଉଛି । 'ରିପ୍ରୋପ୍ରିଣ୍ଟ ପ୍ରାଇଭେଟ ଲିମିଟେଡ୍'ର ଶ୍ରୀ ସଂଜୟ ମହାନ୍ତି ଓ ଶ୍ରୀ ଅଜୟ ମହାନ୍ତି ଖୁବ୍ କମ ଦିନରେ ପୁସ୍ତକଟିକୁ ମୁଦ୍ରଣ କରି ନିର୍ଦ୍ଦିଷ୍ଟ ଦିନ ଉନ୍ମୋଚନ ହେବାରେ ସାହାଯ୍ୟ କରିଥିବାରୁ ସେମାନଙ୍କୁ ମଧ୍ୟ ଧନ୍ୟବାଦ ନ ଜଣାଇ ରହିପାରୁ ନାହିଁ ।

***ସୁଲେଖା ସାମନ୍ତରାୟ***

# ସଂକ୍ଷେପରେ ନଟବର

ମହାଦ୍ରୁମ ପରି ମଣିଷଟିଏର
ସଂଘର୍ଷପୂର୍ଣ୍ଣ ଜୀବନ, ଆକାଶଚୁମ୍ବୀ ସ୍ୱପ୍ନ,
ଦୁର୍ନିର୍ବାର ସଂକଳ୍ପ, ଏକନିଷ୍ଠ ସାଧନା
ତଥା ଅକଳନ ସାଫଲ୍ୟର
ବିସ୍ତୃତ ବିବରଣୀର ଏକ ସଂକ୍ଷିପ୍ତ ଇସ୍ତାହାର

# ବଂଶ ବୃକ୍ଷ

*ନଟବରଙ୍କ ପୂର୍ବପୁରୁଷ ଦୟାନଦୀ କୂଳରେ ଥିବା ତିରିମଲ ଗାଁ'ରୁ ଡେଲାଙ୍ଗ ଲୁଣିନଈ ପାଖ ରାମଚନ୍ଦ୍ରପୁରକୁ କୋଟିଲା ଦାସଙ୍କ ସମୟରୁ ଉଠି ଆସିଥିଲେ ।*







- କୋଟିଲା ଦାସ
  - ନିତ୍ୟାନନ୍ଦ ଦାସ, ପତ୍ନୀ- ଗୌରୀ ଦେବୀ
    - ଭାଗବତ ସାମନ୍ତରାୟ
    - ରାସବିହାରୀ ସାମନ୍ତରାୟ, ପତ୍ନୀ- ତୁଳସୀ ଦେବୀ
      - ବାଙ୍କନିଧି ସାମନ୍ତରାୟ
      - ସଖୀ ସାମନ୍ତରାୟ
      - ବୀରବର ସାମନ୍ତରାୟ
      - ନଟବର ସାମନ୍ତରାୟ, ପତ୍ନୀ-ଗଙ୍ଗାବାଈ ସାମନ୍ତରାୟ
        - ସରଯୂ / ପ୍ରଫୁଲ
          - ରୋଜାଲି
          - ସୋନାଲି / ପ୍ରବୀନ୍
        - ଶିବ ପ୍ରସାଦ / ପ୍ରଭାତ ନଳିନୀ
        - ସଂଯୁକ୍ତା / ଚିତ୍ତ
          - ସିଦ୍ଧାର୍ଥ
        - ସୁଲେଖା / ବିଜୟ
        - ଶମ୍ଭୁ ପ୍ରସାଦ / ସବିତା
          - ଦେବବ୍ରତ
          - ଦେବପ୍ରକାଶ
        - ସବିତା
        - ସୁଜାତା / ତ୍ରିଲୋଚନ
          - ସୁମନ ସୌରଭ
        - ସତ୍ୟ ପ୍ରସାଦ / ପୁଷ୍ପିତା
          - ସିମ୍ପ୍ରୀତ୍
        - ସସ୍ମିତା / କୃଷ୍ଣପଦ
          - ପୂଜା
          - ପିନାକୀ
        - ଶକ୍ତି ପ୍ରସାଦ
        - ସ୍ନିଗ୍ଧା
    - ଗୋବିନ୍ଦ ସାମନ୍ତରାୟ
    - ବାସୁଦେବ ସାମନ୍ତରାୟ

# ଜୀବନ ପଞ୍ଜିକା

ପିତା ଶ୍ରୀ ରାସ ବିହାରୀ ସାମନ୍ତରାୟ । ମାତା ଶ୍ରୀମତୀ ତୁଳସୀ ଦେବୀ । ବଡ଼ ଭାଇ ବାଙ୍କନିଧି, ମଝିଆ ଭାଇ ବୀରବର, ଭଉଣୀ ସଖୀ, ପତ୍ନୀ ଗଙ୍ଗାବାଈ ।

ଜନ୍ମସ୍ଥାନ: ରାମଚନ୍ଦ୍ରପୁର (ତେଲାଙ୍ଗ) ପୁରୀ ଜିଲ୍ଲା ।

| | |
|---|---|
| ୨୯ ଡ଼ିସେମ୍ବର୧୯୧୮ | ଜନ୍ମ |
| ୧୯୩୨ | ପରିବାରର ସମସ୍ତ ସ୍ଥାବର ସମ୍ପତ୍ତି ବିକ୍ରୀ |
| ୧୯୩୬ | ପୁରୀ ଜିଲ୍ଲା ସ୍କୁଲରୁ ମାଟ୍ରିକ୍ୟୁଲେସନ ପାଶ୍ |
| ୧୯୩୯ | ବନାରସସ୍ଥିତ କୁଇନ୍ସ କଲେଜରୁ ଘରୋଇ ଭାବେ ଆଇ.ଏ.ପାଶ୍ |
| ୧୯୪୧ | ରେଭେନ୍‌ସା କଲେଜରୁ ବି.ଏ.ପାଶ୍ |
| ୮ ସେପ୍ଟେମ୍ବର ୧୯୪୨ | ଡି. ଇଡ଼ି. ପାଶ୍ |
| ୧୯୪୨ | ପିତା ରାସ ବିହାରୀଙ୍କ ମୃତ୍ୟୁ |
| ୧୯୪୨ ରୁ ୧୯୪୯ | ଶିକ୍ଷକ ଜୀବନ: ଦାରିଙ୍ଗବାଡ଼ିରେ ଏସ୍.ଆଇ, ଅନୁଗୁଳରେ ଅଙ୍କ ଓ ଭୂଗୋଳ ଶିକ୍ଷକ |
| ୨୨. ଜୁନ୍ ୧୯୪୬ | ହୃଦାନନ୍ଦ ଭୋଳଙ୍କ କନ୍ୟା ଗଙ୍ଗାବାଈଙ୍କ ସହ ବିବାହ |
| ୧୯୪୮ | ଘରୋଇ ଭାବେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଓଡ଼ିଆ ଏମ୍. ଏ. ପାଶ୍ |
| ଅକ୍ଟୋବର ୧୯୪୯ ରୁ ୧୯୫୬ | ମହାରାଜା ପୂର୍ଣ୍ଣଚନ୍ଦ୍ର ମହାବିଦ୍ୟାଳୟ, ବାରିପଦାରେ ଓଡ଼ିଆ ଅଧ୍ୟାପକ |
| ଅଗଷ୍ଟ୧୯୫୬- ସେପ୍ଟେମ୍ବର ୧୯୫୯ | ରେଭେନ୍‌ସା କଲେଜ, କଟକରେ ଅଧ୍ୟାପକ |
| ୧୯୬୧ | ମା' ତୁଳସୀଙ୍କ ମୃତ୍ୟୁ |
| ୧୯ ସେପ୍ଟେମ୍ବର ୧୯୫୯ ରୁ ଡିସେମ୍ବର୧୯୭୩ | ବି.ଜେ.ବି. କଲେଜ, ଭୁବନେଶ୍ୱରରେ ଅଧ୍ୟାପନା |
| ୧୯୬୩ | ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି ଡିଗ୍ରୀ ପ୍ରାପ୍ତ |
| ୧୯୭୦-୭୩ | ପ୍ରାଧ୍ୟାପକ, ବି.ଜେ.ବି. କଲେଜ |
| ଡ଼ିସେମ୍ବର ୧୯୭୩ | ଅଧ୍ୟାପକ ଜୀବନରୁ ଅବସର ଗ୍ରହଣ । |
| ଅକ୍ଟୋବର୧୯୭୪ରୁ ଅକ୍ଟୋବର୧୯୭୯ | U.G.C. Awardee ରୂପେ ରେଭେନ୍ସା କଲେଜରେ ହିନ୍ଦୀ-ଓଡ଼ିଆ ସନ୍ଥ ଓ ଯୋଗ ସାହିତ୍ୟ, ଓଡ଼ିଆ ସାହିତ୍ୟ ଉପରେ ଶ୍ରୀ ଜଗନ୍ନାଥଙ୍କ ପ୍ରଭାବ ସମ୍ପର୍କରେ ଗବେଷଣା । |
| ୮ ଡିସେମ୍ବର ୧୯୯୩ | ନିତମ୍ବାସ୍ଥି ଭଗ୍ନ ଯୋଗୁଁ ଦୀର୍ଘଦିନ ପୀଡ଼ିତ |

୧୭ ଅଗଷ୍ଟ ୨୦୦୦(ସକାଳ ୭.୩୦) ଇହଲୀଳା ସମ୍ବରଣ-ସ୍ୱର୍ଗଦ୍ୱାରରେ ଶେଷବିଶ୍ରାମ

***

## ଡକ୍ଟର ନଟବର ସାମନ୍ତରାୟଙ୍କ ପ୍ରକାଶିତ ଗବେଷଣାତ୍ମକ ଓ ସାହିତ୍ୟ ସମାଲୋଚନା ପୁସ୍ତକାବଳୀ

୧. ବ୍ୟାସକବି ଫକୀର ମୋହନ - ୧୯୫୭
୨. ଆଧୁନିକ ଓଡ଼ିଆ ସାହିତ୍ୟର ଦିଗ୍‌ଦର୍ଶନ - ୧୯୫୯
୩. ଓଡ଼ିଆ ବୈଷ୍ଣବ ସାହିତ୍ୟ - ୧୯୫୯
୪. ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ - ୧୯୬୦
୫. ଗଙ୍ଗାଧର ସାହିତ୍ୟ ସମୀକ୍ଷା - ୧୯୬୦
୬. ସାହିତ୍ୟାଦର୍ଶ - ୧୯୬୦
୭. ରାଧାନାଥ ଓ ଚିଲିକା କାବ୍ୟ - ୧୯୬୦
୮. ଗଳ୍ପ ନୁହେଁ ସମାଲୋଚନା - ୧୯୬୩
୯. ଓଡ଼ିଆ ସାହିତ୍ୟର ଇତିହାସ - ୧୯୬୩
(୧୮୦୩-୧୯୨୦, ପିଏଚ୍.ଡି. ନିବନ୍ଧ)
୧୦. ଆଧୁନିକ ଓଡ଼ିଆ ସାହିତ୍ୟର ଭିତ୍ତିଭୂମି - ୧୯୬୪
୧୧. ନନ୍ଦକିଶୋର ସାହିତ୍ୟ ସମୀକ୍ଷା - ୧୯୬୪
୧୨. ଓଡ଼ିଆ ପଲ୍ଲୀ ସାହିତ୍ୟ - ୧୯୭୦
୧୩. ଓଡ଼ିଆ ସାହିତ୍ୟକୁ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦାନ - ୧୯୭୦
୧୪. ବଡ଼ଜେନା ସାହିତ୍ୟ ସମୀକ୍ଷା - ୧୯୭୧
୧୫. ସଖାହୀନ ପଞ୍ଚସଖା - ୧୯୭୫
୧୬. ମୁଁ କିପରି ଗବେଷଣା କଲି - ୧୯୭୬
୧୭. ଓଡ଼ିଆ ସାହିତ୍ୟରେ ସ୍ୱର ପରିବର୍ତ୍ତନ - ୧୯୭୬
୧୮. ଓଡ଼ିଆ ସାହିତ୍ୟରେ କାଳ ଓ କଳା - ୧୯୭୭
୧୯. ଓଡ଼ିଆ ସାହିତ୍ୟରେ ସମୀକ୍ଷା ଓ ସଂଗ୍ରହ - ୧୯୭୭
୨୦. ଆଧୁନିକ ଓଡ଼ିଆ ସାହିତ୍ୟ ବିକାଶର ପୃଷ୍ଠଭୂମି - ୧୯୭୯
୨୧. ଓଡ଼ିଆ ଧର୍ମ ସାହିତ୍ୟରେ ପଞ୍ଚସଖା ପରିକଳ୍ପନା - ୧୯୮୨
୨୨. ରାଧାନାଥ ସାହିତ୍ୟ ସମୀକ୍ଷା - ୧୯୮୪
୨୩. ଫକୀରମୋହନ ସାହିତ୍ୟ ସମୀକ୍ଷା - ୧୯୮୪
୨୪. କବି ଗୋପବନ୍ଧୁଙ୍କ କାବ୍ୟସୃଷ୍ଟି ମାନସ : ଏକ ସର୍ବେକ୍ଷଣ - ୧୯୯୯

***

# ପ୍ରକାଶିତ ପ୍ରବନ୍ଧାବଳୀ

| | |
|---|---|
| ୧.ଓଡ଼ିଆ ଅକ୍ଷର ଶିକ୍ଷାର ସହଜ ପ୍ରଣାଳୀ | *ପ୍ରଜାତନ୍ତ୍ର*,୨୫ସେପ୍ଟେମ୍ବର୧୯୪୯ |
| ୨. ନିବେଦନ | ୧୯୪୯ |
| ୩. ପଣ୍ଡିତ ଗୋପବନ୍ଧୁଙ୍କ ଗଦ୍ୟଶୈଳୀର ପରିଚୟ | ୧୯୪୯ |
| ୪.ଓଡ଼ିଆ ପ୍ରାଚୀନ ସାହିତ୍ୟ | *ପ୍ରଜାତନ୍ତ୍ର*, ଅକ୍ଟୋବର ୧୯୪୯ |
| ୫.ବିଦଗ୍ଧ ଚିନ୍ତାମଣି | *ଝଙ୍କାର*,ଡ଼ିସେମ୍ବର ୧୯୪୯ |
| ୬.ରାଧାନାଥ ସାହିତ୍ୟରେ ନାରୀ ପ୍ରକୃତି | *ପ୍ରଜାତନ୍ତ୍ର*,ଜାନୁୟାରୀ ୧୯୫୦ |
| ୭.ଅଳଙ୍କାର ଉତ୍ପତ୍ତିର ଇତିହାସ | ମାର୍ଚ୍ଚ ୧୯୫୦ |
| ୮.ସାହିତ୍ୟରେ ଅଳଙ୍କାର | *ପ୍ରଜାତନ୍ତ୍ର*,୨୦ ମାର୍ଚ୍ଚ ୧୯୫୦ |
| ୯.ଔଚିତ୍ୟବାଦ | *ଝଙ୍କାର*, ଏପ୍ରିଲ ୧୯୫୦ |
| ୧୦.ଲଳିତା | *ନବଭାରତ*, ମେ ୧୯୫୦ |
| ୧୧.ବୈଷ୍ଣବ ସାହିତ୍ୟର ପ୍ରକୃତ ଅଧ୍ୟୟନ | *ପ୍ରଜାତନ୍ତ୍ର*, ମେ ୧୯୫୦ |
| ୧୨.ସାହିତ୍ୟରେ ପ୍ରକୃତିର ସ୍ଥାନ | *ଝଙ୍କାର*, ଜୁଲାଇ ୧୯୫୦ |
| ୧୩.ସାହିତ୍ୟରେ ଶୃଙ୍ଗାର ରସ | *ନବଭାରତ*,ଜାନୁୟାରୀ ୧୯୫୧ |
| ୧୪.ସାହିତ୍ୟରେ ଶବ୍ଦାଳଙ୍କାର | *ନବଭାରତ*,ଫେବୃଆରୀ ୧୯୫୧ |
| ୧୫.ଓଡ଼ିଆ ଲିପିର ଅଭ୍ୟୁଦୟ ଇତିହାସ | *ଝଙ୍କାର*, ମାର୍ଚ୍ଚ ୧୯୫୧ |
| ୧୬.କବି ଗୋପବନ୍ଧୁ | *ଝଙ୍କାର*, ଏପ୍ରିଲ ୧୯୫୧ |
| ୧୭.ଦୃଷ୍ଟିକୋଣ | *ଝଙ୍କାର*, ମେ ୧୯୫୧ |
| ୧୮.ଓଡ଼ିଆ ସାହିତ୍ୟରେ ଚଉତିଶା | *ଝଙ୍କାର*,ଜୁନ୍ ୧୯୫୧ |
| ୧୯.ପଲ୍ଲୀ ସଙ୍ଗୀତ | *ଝଙ୍କାର*, ଅଗଷ୍ଟ ୧୯୫୧ |
| ୨୦.ଭଞ୍ଜ ସାହିତ୍ୟ ସମସ୍ୟା | *ଝଙ୍କାର*, ଏପ୍ରିଲ ୧୯୫୨ |
| ୨୧.ରତି ଓ ରସ | *ଝଙ୍କାର*, ସେପ୍ଟେମ୍ବର ୧୯୫୨ |
| ୨୨.ସଂସ୍କୃତ ସମାଲୋଚନା | *ଝଙ୍କାର*, ଅକ୍ଟୋବର ୧୯୫୨ |
| ୨୩.ବୈଷ୍ଣବ ସାହିତ୍ୟର କଥାବସ୍ତୁ | *ଝଙ୍କାର*, ନଭେମ୍ବର ୧୯୫୨ |
| ୨୪.ଉପେନ୍ଦ୍ର ଭଞ୍ଜଙ୍କ ରଚନାର ସଂଖ୍ୟା ନିର୍ଣ୍ଣୟ | *ଝଙ୍କାର*, ଡ଼ିସେମ୍ବର ୧୯୫୨ |
| ୨୫.ଚୋରୀ ଓ ବିଚାର | *ଝଙ୍କାର*, ଫେବୃୟାରୀ ୧୯୫୩ |
| ୨୬.ପ୍ରହେଳିକା | *ଝଙ୍କାର*, ମାର୍ଚ୍ଚ ୧୯୫୩ |
| ୨୭.ଭଞ୍ଜ ସାହିତ୍ୟ ସମାଲୋଚନାର ଏକ ସଂକ୍ଷିପ୍ତ ଇତିହାସ | *ଝଙ୍କାର*, ମେ ୧୯୫୩ |
| ୨୮.ପରକୀୟା ପ୍ରୀତି | *ଝଙ୍କାର*, ଜୁଲାଇ ୧୯୫୩ |

| | |
|---|---|
| ୨୯.ବୈଷ୍ଣବ ସାହିତ୍ୟରେ ଦର୍ଶନର ସ୍ଥାନ | *ଝଙ୍କାର*, ନଭେମ୍ବର ୧୯୫୩ |
| ୩୦.ମାତ୍ରାବୃତ୍ତ ଛନ୍ଦ ଓ ଓଡ଼ିଆ କବିତା | *ଝଙ୍କାର*, ଡିସେମ୍ବର ୧୯୫୩ |
| ୩୧.ଠିକ-ଠ-ବର୍ତ୍ତୁଳ-ଚନ୍ଦ୍ରାନନ | *ଯୁଗଭାରତୀ*, ଡ଼ିସେମ୍ବର ୧୯୫୩ |
| ୩୨.ଓଡ଼ିଆ ସାହିତ୍ୟରେ 'ବିଦ୍ୟାବିନୋଦ' ମଧୁସୂଦନ | *ବିଦ୍ୟାବିନୋଦ*, ଡିସେମ୍ବର ୧୯୫୩ |
| ୩୩.କି ହେଲାରେ | *ଯୁଗଭାରତୀ*, ଜାନୁଆରୀ ୧୯୫୪ |
| ୩୪.'ଯୌନରସ' ନା 'ଶୃଙ୍ଗାର ରସ' | *ଝଙ୍କାର*, ଜାନୁୟାରୀ ୧୯୫୪ |
| ୩୫.'୧୮୯୭ ସାଲ ଅକ୍ଟୋବର' | *ଝଙ୍କାର*, ଏପ୍ରିଲ-ଜୁନ ୧୯୫୪ |
| ୩୬.ଓଡ଼ିଆ ସାହିତ୍ୟ ଓ ବୈଷ୍ଣବ ଧର୍ମ | *ଭଞ୍ଜଭାରତୀ*, ମେ ୧୯୫୪ |
| ୩୭.ଓଡ଼ିଆ ସାହିତ୍ୟରେ ଗୌଡ଼ୀୟ ବୈଷ୍ଣବ ଧର୍ମ ଦର୍ଶନର ପ୍ରଭାବ | ଏପ୍ରିଲ ୧୯୫୫ |
| ୩୮.ନନ୍ଦକିଶୋର ଦାସ | *ମେହେର ପ୍ରଦୀପ*,ଜୁଲାଇ ୧୯୫୫ |
| ୩୯.ଓଡ଼ିଆ ସାହିତ୍ୟରେ କବି ବନମାଳୀ | *ଡଗର*, ସେପ୍ଟେମ୍ବର ୧୯୫୫ |
| ୪୦.ସାଧୁସୁନ୍ଦର ଦାସଙ୍କ ଅଦ୍ୱୈତବାଦୀ ଚଉପଦୀ ଛାନ୍ଦ । | *ଝଙ୍କାର*, ସେପ୍ଟେମ୍ବର ୧୯୫୫ |
| ୪୧.ଓଡ଼ିଆ ପ୍ରଗତିଶୀଳ ସାହିତ୍ୟର ଇତିହାସ | *ଡଗର*, ଅକ୍ଟୋବର ୧୯୫୫ |
| ୪୨.'ନବଯୁଗ'ର ନବ ସମ୍ବାଦ | *ଏକଚକ୍ର*, ଅକ୍ଟୋବର ୧୯୫୫ |
| ୪୩.ବ୍ୟାସକବି ଫକୀରମୋହନଙ୍କ ଉପନ୍ୟାସ | *ଝଙ୍କାର*, *ନଭେମ୍ବର* ୧୯୫୫ |
| ୪୪.ଉତ୍କଳ ଭ୍ରମଣ | *ମେହେର ପ୍ରଦୀପ*, ଡିସେମ୍ବର୧୯୫୫ |
| ୪୫.ପୁସ୍ତକ ସମାଲୋଚନା : 'ସାହିତ୍ୟ ଓ ସଂସ୍କୃତ'ର ଗୋଟିଏ ପୃଷ୍ଠା । | ଡିସେମ୍ବର ୧୯୫୫ |
| ୪୬.ସେନାପତି ଉପନ୍ୟାସର ଗଦ୍ୟରୀତି | *ଡଗର*, ଜାନୁୟାରୀ ୧୯୫୬ |
| ୪୭.ଗାରୁଡ଼ି ମନ୍ତ୍ର | *ମେହେର ପ୍ରଦୀପ*, ଜାନୁଆରୀ୧୯୫୬ |
| ୪୮.ମାଧ ମହାନ୍ତିଙ୍କ କନ୍ୟା ସୁନା | *ଡଗର*, ଏପ୍ରିଲ ୧୯୫୬ |
| ୪୯.ଓଡ଼ିଆ ପାଠ୍ୟପୁସ୍ତକ ଓ କବିବର ରାଧାନାଥ | *ମେହେର ପ୍ରଦୀପ*,ଏପ୍ରିଲ୧୯୫୬ |
| ୫୦.ବର୍ଣ୍ଣବୋଧ | *ଭଞ୍ଜଭାରତୀ*, ଏପ୍ରିଲ ୧୯୫୬ |
| ୫୧.ଚାନ୍ଦମଣିର ଜନ୍ମ କୁଣ୍ଡଳୀ | *ଝଙ୍କାର*, ଜୁନ୍ ୧୯୫୬ |
| ୫୨.ଜାତୀୟ ଚେତନା ଓ ଓଡ଼ିଶାରେ କଂଗ୍ରେସ ପ୍ରତିଷ୍ଠାର ପ୍ରଥମ ପର୍ଯ୍ୟାୟ | *ସମାଜ*, ଜୁନ୍ ୧୯୫୬ |
| ୫୩.ସ୍ୱାଧୀନତା ପର ଓଡ଼ିଆ ସମାଲୋଚନା ସାହିତ୍ୟ | *ଡଗର*, ଅଗଷ୍ଟ ୧୯୫୬ |

୫୪.ଫକୀରମୋହନଙ୍କ 'ଉତ୍କଳ ଭ୍ରମଣଂ' *ଝଙ୍କାର,* ନଭେମ୍ବର ୧୯୫୬
୫୫.ଫକୀରମୋହନଙ୍କ ପ୍ରଥମ
କ୍ଷୁଦ୍ରଗଳ୍ପ 'ରେବତୀ' *ଡଗର,* ନଭେମ୍ବର ୧୯୫୬
୫୬.ସମାଲୋଚନା 'ପ୍ରବନ୍ଧମାଳା' ଡିସେମ୍ବର ୧୯୫୬
୫୭.ରାଧାନାଥ ସାହିତ୍ୟ-
ସମାଲୋଚନାର ଆଦିସ୍ୱରୂପ ଫେବୃଆରୀ ୧୯୫୭
୫୮.ରାଧାନାଥ- ସାହିତ୍ୟ-ସମୀକ୍ଷା:ଏକ ଅଧ୍ୟୟନ *ଝଙ୍କାର,* ଫେବୃଆରୀ ୧୯୫୭
୫୯.'ଧରଣୀଧର' ଓ 'ମୁଁ ଚଷାପୁଅ' *ଡଗର,* ଏପ୍ରିଲ ୧୯୫୭
୬୦.ରେଭେନ୍ସା କଲେଜ *ଡଗର,* ମେ ୧୯୫୭
୬୧.'ଛମାଣ ଆଠ ଗୁଣ୍ଠ': ଏକ ଅଧ୍ୟୟନ *ଡଗର,* ଜୁନ୍ ୧୯୫୭
୬୨.ରାଧାନାଥଙ୍କ ପ୍ରେରିତ ପତ୍ର (୨) *ନବଜୀବନ,*.ଜୁଲାଇ ୧୯୫୭
୬୩.ଫକୀରମୋହନଙ୍କ ରଚନାର ପ୍ରକାଶ ସମୟ ଅଗଷ୍ଟ ୧୯୫୭
୬୪.ଫକୀରମୋହନଙ୍କ 'ମୁଁ ହାଟବାହୁଡ଼ା' *ମେହେର ପ୍ରଦୀପ,*ସେପ୍ଟେମ୍ବର ୧୯୫୭
୬୫.ସେନାପତି ଉପନ୍ୟାସରେ
ସଇତାନର ସ୍ୱରୂପ *ବ୍ୟାସକବି ଫକୀର ମୋହନ,* ଅଗଷ୍ଟ ୧୯୫୭
୬୬.ଆଧୁନିକ ଓଡ଼ିଆ ସାହିତ୍ୟର ଇତିହାସ *ନବଜୀବନ,* ଜାନୁଆରୀ,୧୯୫୮
୬୭.କବି ମାନସିଂହଙ୍କ ପନ୍ଦର ବର୍ଷର
ରଚନାର କାଳ ନିର୍ଣ୍ଣୟ *ଡଗର,* ଜାନୁୟାରୀ ୧୯୫୮
୬୮.ନେତ୍ରମଣିର ଡାଇରୀ *ଡଗର,* ମେ ୧୯୫୮
୬୯.ପୁସ୍ତକ ସମାଲୋଚନା: କବି ଲିପି ମେ ୧୯୫୮
୭୦.ଦରବାର: ଏକ ଅଧ୍ୟୟନ *ଝଙ୍କାର,* ଜୁନ୍-ସେପ୍ଟେମ୍ବର ୧୯୫୮
୭୧.ଚନ୍ଦ୍ରଭାଗା ଏକ ଅଧ୍ୟୟନ *ଝଙ୍କାର,* ଅକ୍ଟୋବର-ନଭେମ୍ବର ୧୯୫୮
୭୨.ସାହିତ୍ୟିକ ଗୋପାଳବଲ୍ଲଭ *ଝଙ୍କାର,* ଡ଼ିସେମ୍ବର ୧୯୫୮
୭୩.ଶିକାର *ଝଙ୍କାର,* ଜାନୁୟାରୀ ୧୯୫୯
୭୪.ଊନବିଂଶ ଶତାବ୍ଦୀ ଓ
''ସମ୍ବଲପୁର ହିତୈଷିଣୀ'' *ଝଙ୍କାର,* ଏପ୍ରିଲ ୧୯୫୯
୭୫.ମଥୁରାମଙ୍ଗଳ ଏପ୍ରିଲ ୧୯୫୯
୭୬.ଅନୁଗୁଳରେ ଆଧୁନିକ ଶିକ୍ଷା
ପ୍ରସାରର ଆଦି-ଇତିହାସ *ଆମଦେଶ,* ଜୁଲାଇ ୧୯୫୯
୭୭.ସମ୍ବାରକ ଶ୍ରୀ ନୀଳକଣ୍ଠ ଦାଶ *ଡଗର,* ଅଗଷ୍ଟ ୧୯୫୯
୭୮.ରାଧାନାଥଙ୍କ ପ୍ରେରିତ ପତ୍ର (୧) *ଝଙ୍କାର,* ଅଗଷ୍ଟ ୧୯୫୯
୭୯.ଗଳ୍ପ ନୁହେଁ ସମାଲୋଚନା *ଡଗର,* ସେପ୍ଟେମ୍ବର ୧୯୫୯

| | |
|---|---|
| ୮୦.ଓଡ଼ିଶାରେ ପ୍ରେସ ଓ ପତ୍ରିକା | *ଝଙ୍କାର*, ସେପ୍ଟେମ୍ବର ୧୯୫୯ |
| ୮୧.ଆଧୁନିକ ଓଡ଼ିଆ ସାହିତ୍ୟ ଓ ବାଲେଶ୍ୱର | *ଝଙ୍କାର*, ଅକ୍ଟୋବର ୧୯୫୯ |
| ୮୨.ଉପଧା-ଇତିହାସ | *ଝଙ୍କାର*,ନଭେମ୍ବର-ଡ଼ିସେମ୍ବର ୧୯୫୯ |
| ୮୩.ଭକ୍ତକବି ଅଭିମନ୍ୟୁ ସାମନ୍ତସିଂହାର | ୧୯୬୦ |
| ୮୪.ରାଧାନାଥ ସାହିତ୍ୟ ଅଧ୍ୟୟନର ପୃଷ୍ଠଭୂମି | ୧୯୬୦ |
| ୮୫.କେଦାର ଗୌରୀ | ୧୯୬୦ |
| ୮୬.ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ | ୧୯୬୦ |
| ୮୭.'ଲୁହାର ମଣିଷ'ରେ ଚରିତ୍ର ଚିତ୍ରଣ | ଅକ୍ଟୋବର ୧୯୬୦ |
| ୮୮.ରାଧାନାଥଙ୍କ ରଚନାବଳୀ ଓ ସେମାନଙ୍କ ପ୍ରକାଶ ସମୟ ନିର୍ଣ୍ଣୟ | ଜାନୁୟାରୀ ୧୯୬୧ |
| ୮୯.ଆଧୁନିକ ଓଡ଼ିଆ ସାହିତ୍ୟକୁ ବିଲୁପ୍ତ ପତ୍ରିକାର ଦାନ | ଜାନୁୟାରୀ ୧୯୬୧ |
| ୯୦.ଆଧୁନିକ ଓଡ଼ିଆ ସାହିତ୍ୟର ଇତିହାସରେ ମିଶନାରୀ ଥମସ୍ ସଟନ | ସେପ୍ଟେମ୍ବର-ଅକ୍ଟୋବର ୧୯୬୧ |
| ୯୧.ଓଡ଼ିଆ ସାହିତ୍ୟରେ ଅମିତ୍ରାକ୍ଷର ଛନ୍ଦର ପ୍ରଥମ ପ୍ରବର୍ତ୍ତନ | *ଆସନ୍ତାକାଲି*, ଅକ୍ଟୋବର ୧୯୬୧ |
| ୯୨.ମାତ୍ରାବୃତ୍ତ ଛନ୍ଦ ଓ ଓଡ଼ିଆ କବିତା | ଡିସେମ୍ବର ୧୯୬୩ |
| ୯୩.ସିଂହାବଲୋକନ | ଜାନୁୟାରୀ ୧୯୬୪ |
| ୯୪.ମେଘ ବରଷିଲା ଟପର ଟପର | *ବିଚିତ୍ରବି କଲେଜ ମାଗାଜିନ*,ଜାନୁୟାରୀ ୧୯୬୬ |
| ୯୫.କାଳ ଓ କଳା | *ଝଙ୍କାର*, ଏପ୍ରିଲ ୧୯୬୭ |
| ୯୬.ଚତୁର ବିନୋଦ: ଏକ ବିହଙ୍ଗମ ଦୃଷ୍ଟି | *ଝଙ୍କାର*, ଅକ୍ଟୋବର ୧୯୬୭ |
| ୯୭.'ଉତ୍କଳକାହାଣୀ'ର ପ୍ରକାଶ କାଳ | *ଝଙ୍କାର*, ଜାନୁଆରୀ ୧୯୭୦ |
| ୯୮.ପ୍ରଥମ ଯୁଗର ଓଡ଼ିଆ ପାଠ୍ୟପୁସ୍ତକ (ଅଭିଧାନ) | *ଝଙ୍କାର*, ଏପ୍ରିଲ ୧୯୭୦ |
| ୯୯.ପ୍ରଥମ ଯୁଗର ଆଧୁନିକ ପାଠ୍ୟ ପୁସ୍ତକ (ବ୍ୟାକରଣ) | ଜାନୁୟାରୀ ୧୯୭୧ |
| ୧୦୦.ଶିକ୍ଷା ବିଭାଗ ଓ ଓଡ଼ିଆ ସାହିତ୍ୟ: ଆଦିଯୁଗ | *ଝଙ୍କାର*, ଏପ୍ରିଲ ୧୯୭୧ |
| ୧୦୧.ଉତ୍କଳ, ସାହିତ୍ୟ-ମାସିକ (ଉତ୍କଳ ଦର୍ପଣ) | *ନବରବି*, ଜୁନ୍ ୧୯୭୧ |
| ୧୦୨.'ଛମାଣ ଆଠଗୁଣ୍ଠ'ର ବିଷୟ ବସ୍ତୁ : ଏକ ସ୍ପଷ୍ଟୀକରଣ | *ନବରବି*, ଅକ୍ଟୋବର ୧୯୭୧ |
| ୧୦୩.ଓଡ଼ିଆ ଭାଷା ଓ ଓଡ଼ିଆ କମିସନର | *କୋଣାର୍କ*, ଡିସେମ୍ବର ୧୯୭୧ |

| | |
|---|---|
| ୧୦୪.ରାଧାନାଥଙ୍କ କାବ୍ୟ ବିଷୟବସ୍ତୁର ଅନୁସନ୍ଧାନ- ଇତିହାସ | *ନବରବି*, ଜାନୁୟାରୀ-ଫେବୃୟାରୀ ୧୯୭୨ |
| ୧୦୫.ଟୟା ଓ କଟୟା | *ମରୁତୀର୍ଥ*, ଫେବୃୟାରୀ-ମାର୍ଚ୍ଚ ୧୯୭୨ |
| ୧୦୬.କଳସା ଚଉତିଶାର କାଳ-ନିରୂପଣ | *ନବରବି*, ଜୁଲାଇ ୧୯୭୨ |
| ୧୦୭.ବର୍ଣ୍ଣବୋଧର ପରିଚୟ | *ନବରବି*, ଅଗଷ୍ଟ ୧୯୭୨ |
| ୧୦୮.ଆଧୁନିକ ଓଡ଼ିଆ ସାହିତ୍ୟକୁ 'ପ୍ରଜାତନ୍ତ୍ର ପ୍ରଚାର ସମିତି'ର ଅବଦାନ | *ପ୍ରଜାତନ୍ତ୍ର ରଜତ ଜୟନ୍ତୀ ଗ୍ରନ୍ଥ*,ଅଗଷ୍ଟ ୧୯୭୨ |
| ୧୦୯.ଓଡ଼ିଆ ସାହିତ୍ୟର ବିକାଶଧାରା: ଏକ ବିହଙ୍ଗମ ଦୃଷ୍ଟି | *ଉତ୍କଳ ସାହିତ୍ୟ ସମାଜର ହୀରକ ଯୁବୁଲି ଗ୍ରନ୍ଥ*, ଅକ୍ଟୋବର ୧୯୭୨ |
| ୧୧୦.ପାଗଳା ଭଗିଆର ଜମାନବନ୍ଦୀ | *ନବରବି*, ଅକ୍ଟୋବର ୧୯୭୨ |
| ୧୧୧.'କା'- ଏକ ଅଧ୍ୟୟନ | *ମରୁତୀର୍ଥ*,ନଭେମ୍ବର-ଡ଼ିସେମ୍ବର ୧୯୭୨ |
| ୧୧୨.ଆହୁଟ | *ନବରବି*, ଜାନୁୟାରୀ ୧୯୭୩ |
| ୧୧୩.ମୁଁ କିପରି ଗବେଷଣା କଲି | *ନବରବି*, ଫେବୃୟାରୀ ୧୯୭୩ |
| ୧୧୪.'ଶିଶୁବେଦ'ର ସ୍ୱରୂପ ଉଦ୍‌ଘାଟନ | *ନବରବି*, ମାର୍ଚ୍ଚ ୧୯୭୩ |
| ୧୧୫.ଶିକ୍ଷା ବିଭାଗ ଓ ଆଧୁନିକ ଓଡ଼ିଆ ସାହିତ୍ୟ | ଉତ୍କଳ ବିଶ୍ୱବିଦ୍ୟାଳୟ ହୀରକ ଜୁବୁଲି ଗ୍ରନ୍ଥ ୧୯୭୩ |
| ୧୧୬.ଆଧୁନିକ ଓଡ଼ିଆ ସାହିତ୍ୟର ବିସ୍ମୃତ ସାଧକ | *ଝଙ୍କାର*, ଏପ୍ରିଲ ୧୯୭୩ |
| ୧୧୭.ପରମ୍ପରାରେ ଶିଶୁବେଦ | *ନବରବି*, ଜୁଲାଇ ୧୯୭୩ |
| ୧୧୮.ସାହିତ୍ୟ ସାଧକ ଶ୍ରୀ ଶ୍ୟାମସୁନ୍ଦର | *ନବରବି*, ଅକ୍ଟୋବର ୧୯୭୩ |
| ୧୧୯.ପ୍ରବନ୍ଧମାଳା: ଏକ ସମୀକ୍ଷା | *ଝଙ୍କାର*, ଅକ୍ଟୋବର ୧୯୭୩ |
| ୧୨୦.ଭକ୍ତକବି ମଧୁସୂଦନଙ୍କ ରଚନାର କାଳ ନିର୍ଣ୍ଣୟ | ଜାନୁୟାରୀ ୧୯୭୪ |
| ୧୨୧.ଦେବନାଶନବଟ | ଏପ୍ରିଲ ୧୯୭୪ |
| ୧୨୨.ସାହିତ୍ୟ ସମୀକ୍ଷକ ଶ୍ରୀ ଶ୍ୟାମସୁନ୍ଦର | ଜୁଲାଇ ୧୯୭୪ |
| ୧୨୩.ଓଡ଼ିଆ ସାହିତ୍ୟକୁ ଐତିହାସିକମାନଙ୍କର ଅବଦାନ (ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ) | ଅକ୍ଟୋବର ୧୯୭୪ |
| ୧୨୪.ଶିଶୁବେଦର ଜନ୍ମ ଇତିହାସ | ଅକ୍ଟୋବର ୧୯୭୪ |
| ୧୨୫.ମଧୁସୂଦନ-ସାହିତ୍ୟରେ ବ୍ୟବହୃତ ଛନ୍ଦର ସ୍ୱରୂପ | ଡ଼ିସେମ୍ବର ୧୯୭୪ |
| ୧୨୬.ଗୋଲକବିହାରୀ ଧଳଙ୍କ ପୁସ୍ତକାବଳୀର କାଳାନୁକ୍ରମିକ ପରିଚୟ | ୧୯୭୪ |
| ୧୨୭.ବେଦମନ୍ତ୍ର ଯୁଗତେ ସେ ଯେ ପଢ଼ନ୍ତି କଳସା | ଜାନୁୟାରୀ ୧୯୭୫ |
| ୧୨୮.ଶିଶୁବେଦ: ଏକ ଅଧ୍ୟୟନ | ଫେବୃୟାରୀ ୧୯୭୫ |

୧୫୫.ଗୋପବନ୍ଧୁଙ୍କ କବିତାରେ
ବ୍ୟବହୃତ ଛନ୍ଦର ସ୍ୱରୂପ *ଆସନ୍ତାକାଲି,* ଅକ୍ଟୋବର ୧୯୮୨
୧୫୬.ଦୁର୍ଗମପଥ ଏ ଭଜନ *ଆସନ୍ତାକାଲି,* ଅକ୍ଟୋବର ୧୯୮୩
୧୫୭.ଧଡ଼ିଆ ପଣ୍ଡିତଂମାନ୍ୟ *ଝଙ୍କାର,* ଜୁନ୍ ୧୯୮୪
୧୫୮.ବନ୍ଦୀର ଆତ୍ମକଥା: ଏକ କଳାତ୍ମକ ବିଶ୍ଳେଷଣ ଅକ୍ଟୋବର ୧୯୮୪
୧୫୯.ଧର୍ମପଦ: ଏକ ଅଧ୍ୟୟନ *କୋଣାର୍କ,* ଡ଼ିସେମ୍ବର ୧୯୮୫
୧୬୦.ବନ୍ଦୀର ସ୍ୱଦେଶ ଚିନ୍ତା: ଏକ ମାର୍ମିକ ଅନୁଶୀଳନ ଅକ୍ଟୋବର ୧୯୮୬
୧୬୧.ଗୋ-ମାହାତ୍ମ୍ୟ:
ଏକ ବିଶ୍ଳେଷଣାତ୍ମକ ଅଧ୍ୟୟନ *ଅମୃତାୟନ,* ଅକ୍ଟୋବର ୧୯୮୭
୧୬୨.ଓଡ଼ିଆ ଭାଷା-ବିଲୋପ ଆନ୍ଦୋଳନ:
ଏକ ସ୍ପଷ୍ଟୀକରଣ *ଝଙ୍କାର,* ଅଗଷ୍ଟ ୧୯୮୯
୧୬୩.ଓଡ଼ିଆ ଭାଷା-ବିଲୋପ ଆନ୍ଦୋଳନ:
ଏକ ସ୍ପଷ୍ଟୀକରଣ *ଝଙ୍କାର,* ସେପ୍ଟେମ୍ବର ୧୯୮୯
୧୬୪.ଓଡ଼ିଆ ଭାଷା-ବିଲୋପ ଆନ୍ଦୋଳନ:
ଏକ ସ୍ପଷ୍ଟୀକରଣ *ଝଙ୍କାର,* ଜାନୁଆରୀ ୧୯୯୩
୧୬୫.'ଘର':ଏକ ଅଧ୍ୟୟନ *କୋଣାର୍କ-୮୮,*ଏପ୍ରିଲ ୧୯୯୩
୧୬୬.ଓଡ଼ିଆ ଭାଷା-ବିଲୋପ ଆନ୍ଦୋଳନ:
ଏକ ସ୍ପଷ୍ଟୀକରଣ *ଝଙ୍କାର,* ଜୁଲାଇ ୧୯୯୩
୧୬୭.କବି ଗୋପବନ୍ଧୁଙ୍କ ସାହିତ୍ୟ
ଅନୁଶୀଳନର ଉପାଦାନ *ନବରବି,* ଅକ୍ଟୋବର ୧୯୯୭
୧୬୮.ବ୍ରହ୍ମତତ୍ତ୍ୱ ବା ନଚିକେତା ଉପାଖ୍ୟାନ: ଏକ ଅନୁଶୀଳନ ୧୯୯୯
୧୬୯.କଠୋପନିଷଦ: ଏକ ସଂକ୍ଷିପ୍ତ ସମୀକ୍ଷା ୧୯୯୯
୧୭୦.କାରା କବିତା: ଏକ ଅଧ୍ୟୟନ ୧୯୯୯
୧୭୧.ଅବକାଶ ଚିନ୍ତା : ଏକ ମାର୍ମିକ ପର୍ଯ୍ୟାଲୋଚନା ୧୯୯୯
୧୭୨.ଧଡ଼ିଆ ପଣ୍ଡିତଂମନ୍ୟର ପରିଶିଷ୍ଟ ୧୯୯୯

[ଏଇ ପାଞ୍ଚଟି ପ୍ରବନ୍ଧ 'ଗୋପବନ୍ଧୁ କାବ୍ୟ ସୃଷ୍ଟି ମାନସ ଏକ ସର୍ବେକ୍ଷଣ' (୧୯୯୯) ରେ ପ୍ରଥମ ଥର ପାଇଁ ପ୍ରକାଶିତ ]

୧୭୩. ସୁସଂଗଠକ ଡ଼କ୍ଟର ମହତାବ *ମୃଣ୍ମୟୀ,* ଏପ୍ରିଲ୍-ଜୁନ୍ ୨୦୦୦

*(ସଂଗ୍ରାହକ- ଅଧ୍ୟାପକ ଶିବରାମ ପାତ୍ର)*

# ସ୍ୱୀକୃତି

ସାରସ୍ୱତ ସାଧକ ଡଃ ନଟବର ସାମନ୍ତରାୟଙ୍କର
ଦୀର୍ଘ ଅର୍ଦ୍ଧ ଶତାବ୍ଦୀରୁ ଅଧିକ କାଳର ସାଧନା ପ୍ରସୂତ
ବିପୁଳ ସାହିତ୍ୟିକ ଗନ୍ତାଘରର ସ୍ୱୀକୃତି ସ୍ୱରୂପ
ବିଭିନ୍ନ ଅନୁଷ୍ଠାନ ଦେଇଥିବା ପୁରସ୍କାର, ସମ୍ମାନ, ସମ୍ବର୍ଦ୍ଧନା
ଇତ୍ୟାଦିର ବିବରଣୀ ସହ
କେତୋଟି ସୁନିର୍ବାଚିତ ମାନପତ୍ରର ନକଲ...
ତତ୍‌ସହିତ ବିଭିନ୍ନ ବିଶିଷ୍ଟ ବ୍ୟକ୍ତିବିଶେଷଙ୍କର
ଡଃ ନଟବର ସାମନ୍ତରାୟଙ୍କ ଉପରେ
ପ୍ରଦତ୍ତ ମନ୍ତବ୍ୟର ଉର୍ଦ୍ଧୃତାଂଶ...

# ପୁରସ୍କାର, ସମ୍ମାନ ତଥା ସମ୍ବର୍ଦ୍ଧନାର ବିବରଣୀ

| | |
|---|---|
| ୧୯୫୩ | ପ୍ରଜାତନ୍ତ୍ର ପ୍ରଚାର ସମିତି, କଟକଙ୍କ ଦ୍ୱାରା ଆୟୋଜିତ ବିଷୁବ ମିଳନରେ ଚତୁର୍ଥ ବିଷୁବ ପୁରସ୍କାର ପ୍ରାପ୍ତ । |
| ଏପ୍ରେଲ ୧୯୬୦ | ପ୍ରଜାତନ୍ତ୍ର ପ୍ରଚାର ସମିତି, କଟକଙ୍କ ବିଷୁବ ମିଳନରେ ଶ୍ରେଷ୍ଠ ଲେଖକ ହିସାବରେ 'ଝଙ୍କାର ପୁରସ୍କାର' ପ୍ରାପ୍ତ । |
| ୧୯୬୦ | 'ବ୍ୟାସକବି ଫକୀର ମୋହନ' ପୁସ୍ତକ ଲାଗି ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ । |
| ୧୯ ସେପ୍ଟେମ୍ବର ୧୯୬୨ | ମାସିକ ପତ୍ରିକା 'ଡଗର'ର ରଜତ ଜୟନ୍ତୀ ଅବସରରେ ସର୍ବଶ୍ରେଷ୍ଠ ଗବେଷକ ଓ ସମାଲୋଚକ ରୂପେ ସମ୍ମାନିତ । |
| ୨୭ ମାର୍ଚ୍ଚ ୧୯୬୫ | ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ଆୟୋଜିତ 'ଓଡ଼ିଆ ସାହିତ୍ୟକୁ ଆର୍ତ୍ତବଲ୍ଲଭଙ୍କ ଦାନ' ପ୍ରବନ୍ଧ ପ୍ରତିଯୋଗିତାରେ ଶ୍ରେଷ୍ଠ ପ୍ରାବନ୍ଧିକ ଭାବେ ପୁରସ୍କୃତ । |
| ୧୯୬୫ | 'ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ' ପୁସ୍ତକ ଲାଗି ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ । |
| ଏପ୍ରିଲ ୧୯୭୩ | 'ପ୍ରଜାତନ୍ତ୍ର ପ୍ରଚାର ସମିତି'ର ଚତୁର୍ବିଂଶ ବିଷୁବ ମିଳନରେ ଝଙ୍କାର ପୁରସ୍କାର ପ୍ରାପ୍ତ । |
| ୧୯୭୬ | ତୃତୀୟ ପୂର୍ବ ଭାରତୀୟ ସାଂସ୍କୃତିକ ସମ୍ମେଳନ ସମ୍ମାନ, ଭୁବନେଶ୍ୱର । |
| ୨୮ ମାର୍ଚ୍ଚ ୧୯୭୮ | ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ଅଭିନନ୍ଦିତ |
| ୨୬ ଏପ୍ରିଲ ୧୯୮୦ | ନନ୍ଦିଘୋଷ, (ବୋଲଗଡ଼)ଙ୍କ ଦ୍ୱାରା ସାମ୍ବତ୍ସରିକ ଉପାୟନ ପ୍ରାପ୍ତ । |
| ଜୁନ୍ ୧୯୮୦ | ସାରଳା ପୁରସ୍କାର ସମିତି, ଭୁବନେଶ୍ୱର ଦ୍ୱାରା ଅଭିନନ୍ଦିତ |
| ୧୯୮୧ | ନିଖିଳ ଭାରତ ଓଡ଼ିଆ ଅଧ୍ୟାପକ ସମ୍ମେଳନ, ତୃତୀୟ ଅଧିବେଶନରେ (ଭଞ୍ଜବିହାର) ସମ୍ମାନିତ । |
| ୧୫ ଡିସେମ୍ବର ୧୯୮୨ | ଓଡ଼ିଶା ସାହିତ୍ୟ ଏକାଡେମୀଙ୍କ ରଜତ ଜୟନ୍ତୀ ଉତ୍ସବରେ ସମ୍ମାନିତ । |

| | |
|---|---|
| ୧୯୮୨ | ଅଭିମନ୍ୟୁ ସ୍ମୃତି ସଂସଦ, ଭୁବନେଶ୍ୱରଙ୍କ ଦ୍ୱାରା ସମ୍ବର୍ଦ୍ଧିତ । |
| ୨୫ ମାର୍ଚ୍ଚ ୧୯୮୪ | ଉତ୍କଳ ପାଠକ ସଂସଦ,କଟକଙ୍କ ଦ୍ୱାରା 'ଜ୍ଞାନବାରିଧି' ଉପାଧିରେ ଭୂଷିତ । |
| ଏପ୍ରିଲ ୧୯୮୫ | ପ୍ରଜାତନ୍ତ୍ର ପ୍ରଚାର ସମିତି, କଟକଙ୍କ ୩୬ତମ ବିଷୁବ ମିଳନରେ ବିଷୁବ ପୁରସ୍କାର ପ୍ରାପ୍ତ । |
| ୧୯୮୫ | ଓଡ଼ିଶା ଲେଖକ ସାମ୍ମୁଖ୍ୟ, ଭୁବନେଶ୍ୱର ଦ୍ୱାରା ସମ୍ବର୍ଦ୍ଧିତ |
| ୮ ଏପ୍ରିଲ ୧୯୮୭ | ଓଡ଼ିଆ ଗବେଷଣା ପରିଷଦ, କଟକଙ୍କ ତରଫରୁ 'କ୍ଷେତ୍ରବାସୀ ସାହିତ୍ୟ ବିଦ୍ୟା ପୁରସ୍କାର' ପ୍ରାପ୍ତ । |
| ୨୨ ଡ଼ିସେମ୍ବର ୧୯୯୦ | ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ, ରେଭେନ୍ସା କଲେଜ, କଟକଙ୍କ ଦ୍ୱାରା ସମ୍ବର୍ଦ୍ଧିତ । |
| ୯ ଜାନୁୟାରୀ ୧୯୯୨ | ନିମାପଡ଼ା ମହାବିଦ୍ୟାଳୟ ଦ୍ୱାରା ସମ୍ମାନିତ । |
| ୨୨ ଡ଼ିସେମ୍ବର ୧୯୯୨ | ପଲ୍ଲୀକବି ନନ୍ଦକିଶୋର ସାରସ୍ୱତ ସମ୍ମାନରେ ସମ୍ମାନିତ । |
| ୧୪ ଜାନୁୟାରୀ ୧୯୯୩ | ବ୍ୟାସକବିଙ୍କ ୧୫୦ତମ ଜୟନ୍ତୀ ଉତ୍ସବରେ 'ଫକୀରମୋହନ ସମ୍ମାନ', (ଭୁବନେଶ୍ୱର) ପ୍ରାପ୍ତ । |
| ୨୦ ଏପ୍ରିଲ ୧୯୯୪ | କେଦାର ନାଥ ଗବେଷଣା ପ୍ରତିଷ୍ଠାନ, ଭୁବନେଶ୍ୱରଙ୍କ ଦ୍ୱାରା ସମ୍ମାନିତ । |
| ୨୩ ଜୁନ୍ ୧୯୯୪ | ଶ୍ରୀକ୍ଷେତ୍ର ଲେଖକ ସାମ୍ମୁଖ୍ୟ, ପୁରୀଙ୍କ ଦ୍ୱାରା 'ଅତିବଡ଼ୀ ଜଗନ୍ନାଥ ଦାସ ସମ୍ମାନ'ରେ ସମ୍ମାନିତ । |
| ୫ ଡ଼ିସେମ୍ବର ୧୯୯୪ | ସ୍ନାତକୋତ୍ତର ଓଡ଼ିଆ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱରଙ୍କ ଦ୍ୱାରା ସମ୍ବର୍ଦ୍ଧିତ । |
| ୨୨ ଡିସେମ୍ବର ୧୯୯୪ | ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ, ରେଭେନ୍ସା କଲେଜ ଦ୍ୱାରା ସମ୍ବର୍ଦ୍ଧିତ । |
| ୧୬ ସେପ୍ଟମ୍ବର ୧୯୯୫ | ଓଡ଼ିଶା ସାହିତ୍ୟ ଏକାଡ଼େମୀଙ୍କ 'ଅତିବଡ଼ୀ ଜଗନ୍ନାଥ ଦାସ ପୁରସ୍କାର' ପ୍ରାପ୍ତ । |
| ୨୦୦୦ | ଷୋଡ଼ଶ ଭୁବନେଶ୍ୱର ପୁସ୍ତକମେଳା ଅବସରରେ ସମ୍ବର୍ଦ୍ଧିତ । |

* * *

## ଓଡ଼ିଶା ସାହିତ୍ୟ ଏକାଡେମୀ

ଭୁବନେଶ୍ୱର

## ମାନନୀୟ ଡଃ ନଟବର ସାମନ୍ତରାୟ

ମହାଶୟ,

ସାମ୍ପ୍ରତିକ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଅନ୍ୟତମ ବିଶିଷ୍ଟ ପ୍ରାବନ୍ଧିକ, ସମାଲୋଚକ ଓ ଗବେଷକ ଭାବରେ ଆପଣଙ୍କର ଭୂମିକା ଅତ୍ୟନ୍ତ ମହନୀୟ ।

ବିଗତ ୩୦ ବର୍ଷ ଧରି ଧାରାବାହିକ ଭାବେ ଓଡ଼ିଆ ସାହିତ୍ୟର ବିଭିନ୍ନ ଯୁଗ ଏବଂ ବିଭବ ସମ୍ପର୍କରେ ବହୁ ଗବେଷଣାତ୍ମକ ସନ୍ଦର୍ଭ ଏବଂ ସମାଲୋଚନାତ୍ମକ ପ୍ରବନ୍ଧମାନ ରଚନା କରି ଆପଣ ଓଡ଼ିଆ ପ୍ରବନ୍ଧ ଏବଂ ଆଲୋଚନା ରଚନା କ୍ଷେତ୍ରରେ ନୂତନ ଆଦର୍ଶ ଏବଂ ଆଭିମୁଖ୍ୟର ସୂତ୍ରପାତ କରିଛନ୍ତି ।

ଆଜି ଏହି ଶୁଭ ଅବସରରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଆପଣଙ୍କର ସାହିତ୍ୟିକ ପ୍ରତିଭାକୁ ଅଭିନନ୍ଦନ ଜ୍ଞାପନ କରି ନିଜକୁ ଗୌରାବାନ୍ୱିତ ମନେକରୁଅଛି ।

ସମ୍ପାଦକ    ୨୮-୩-୭୮    ସଭାପତି

## ଓଡ଼ିଶା ସାହିତ୍ୟ ଏକାଡେମୀ

ଭୁବନେଶ୍ୱର

ରଜତ ଜୟନ୍ତୀ- ୧୯୮୨

## ମାନନୀୟ ଡଃ ନଟବର ସାମନ୍ତରାୟ

ମହାଶୟ,

ବିଶିଷ୍ଟ ଗବେଷକ, ସାହିତ୍ୟ-ସମାଲୋଚକ ଓ ପ୍ରାବନ୍ଧିକ ଭାବରେ ସାମ୍ପ୍ରତିକ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଆପଣଙ୍କର ଭୂମିକା ମହନୀୟ । ଆପଣଙ୍କର ନିରଳସ ସାଧନା ଫଳରେ ଓଡ଼ିଆ ସାହିତ୍ୟ ସମାଲୋଚନା ପରିସର ସମୃଦ୍ଧ ଓ ସମ୍ପ୍ରସାରିତ ହୋଇ ପାରିଅଛି ।

ଓଡ଼ିଶା ସାହିତ୍ୟ ଏକାଡେମୀ ରଜତ ଜୟନ୍ତୀ ପାଳନ ଅବକାଶରେ ଆପଣଙ୍କ ସାହିତ୍ୟିକ ପ୍ରତିଭାକୁ ଅଭିନନ୍ଦନ ଜ୍ଞାପନ କରି ନିଜକୁ ଗୌରବାନ୍ୱିତ ମନେକରୁଅଛି ।

ସମ୍ପାଦକ    ୧୫/୧୨/୮୨    ସଭାପତି

# ୧୯୭୯ ଶାରଳା ପୁରସ୍କାର ଉତ୍ସବ ଉପଲକ୍ଷେ ବରେଣ୍ୟ ସାହିତ୍ୟିକଙ୍କୁ ଉପାୟନ ଡକ୍ଟର ନଟବର ସାମନ୍ତରାୟ

ସମ୍ମାନନୀୟ ମହାଶୟ,

ସ୍ୱାଧିନତା-ଉତ୍ତର କାଳରେ ଓଡ଼ିଆ ସମାଲୋଚନା ଓ ଗବେଷଣା କ୍ଷେତ୍ରରେ ଐତିହାସିକ ଧାରାର ପ୍ରବର୍ତ୍ତକ ଭାବେ ଆପଣ ବିପୁଳ ଗୌରବର ଅଧିକାରୀ । ଗଭୀର ଅଧ୍ୟବସାୟ, ଶ୍ରମସାଧ୍ୟ ଓ ଧୈର୍ଯ୍ୟନିଷ୍ଠ ଗବେଷଣା, ସତ୍ୟ ଶାଣିତ ଅନୁସନ୍ଧିତ୍ସା ଓ ଅକୁତୋଭ ନିରପେକ୍ଷତା ଆପଣଙ୍କ ସାରସ୍ୱତ ସମାଲୋଚନାର ଦିଗ୍‌ବଳୟକୁ ଏକ ନୂତନ ବିଭାରେ ବିମଣ୍ଡିତ କରିପାରିଛି । ସେହି ଗବେଷଣାର ଫଳଶ୍ରୁତି ସ୍ୱରୂପ, 'ବ୍ୟାସକବି ଫକୀର ମୋହନ','ଯୁଗପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ','ନନ୍ଦକିଶୋର ସାହିତ୍ୟ ସମୀକ୍ଷା', 'ସାହିତ୍ୟାଦର୍ଶ', 'ଗଙ୍ଗାଧର ସାହିତ୍ୟ ସମୀକ୍ଷା','ଗଳ୍ପ ନୁହେଁ ସମାଲୋଚନା', 'ବଡ଼ଜେନା ସାହିତ୍ୟ ସମୀକ୍ଷା', 'ସଖାହୀନ ପଞ୍ଚସଖା', 'ଓଡ଼ିଆ ସାହିତ୍ୟରେ ସ୍ୱର ପରିବର୍ତ୍ତନ', 'ମୁଁ କିପରି ଗବେଷଣା କଲି', 'ଓଡ଼ିଆ ସାହିତ୍ୟରେ ସମୀକ୍ଷା ଓ ସଂଗ୍ରହ', 'ଓଡ଼ିଆ ସାହିତ୍ୟରେ କାଳ ଓ କଳା' ଆଦି ଗ୍ରନ୍ଥଗୁଡ଼ିକ ଓଡ଼ିଆ ସାହିତ୍ୟର ସମାଲୋଚନା ବିଭାଗକୁ ବହୁ ଭାବରେ ପରିପୁଷ୍ଟ କରିଅଛି । ଆପଣଙ୍କ ଜୀବନର ଦୀର୍ଘ ଦଶବର୍ଷର ଗବେଷଣା ପ୍ରସୂତ ପିଏଚ.ଡି ନିବନ୍ଧ 'ଓଡ଼ିଆ ସାହିତ୍ୟର ଇତିହାସ'(୧୮୦୩-୧୯୨୦)ଏକ ପ୍ରାମାଣିକ ତଥ୍ୟପୂର୍ଣ୍ଣ ଗବେଷଣା ଗ୍ରନ୍ଥ ରୂପେ ଓଡ଼ିଆ ସାହିତ୍ୟରେ ଏକ ନୂତନ ଶଙ୍କୁ ସ୍ଥାପନ କରିଛି ଓ ବହୁ ଭାବରେ ଆଧୁନିକ ସାହିତ୍ୟର ଚର୍ଚ୍ଚା ଓ ଗବେଷଣାରେ ସହାୟତା କରୁଅଛି । ଏବେ ମଧ୍ୟ ଆପଣ ଗବେଷଣାରେ ସେହି ବିପୁଳ ଉତ୍ସାହ ଓ ଅଧ୍ୟୟନସୁଲଭ ନିଷ୍ଠାପର ବିଶ୍ୱାସରେ ବ୍ରତୀ । ଆପଣ ଦୀର୍ଘାୟୁ ହୋଇ ଓଡ଼ିଆ ସାହିତ୍ୟର ଏହି ବିଭାଗକୁ ଅଧିକ ସମୃଦ୍ଧ କରନ୍ତୁ ଏହା ହିଁ ଆମମାନଙ୍କର ଏକାନ୍ତ କାମନା ।

ଆଜି 'ଶାରଳା ପୁରସ୍କାର' ପ୍ରଦାନର ପ୍ରଥମ ଉତ୍ସବ ଅବସରରେ ଆପଣଙ୍କ ବିପୁଳ କୃତିର ସ୍ୱୀକୃତି ସ୍ୱରୂପ ଅଭିନନ୍ଦିତ କରି ଆମେ ନିଜକୁ ଗୌରବାନ୍ୱିତ ମନେକରୁଛୁ ।

ଉଦ୍‌ଘାଟକ | ମୁଖ୍ୟ ଅତିଥି | ବିଶିଷ୍ଟ ଅତିଥି | ସଭାପତି,

୧୪/୬/୮୦

ଭୁବନେଶ୍ୱର ।

# ଜ୍ଞାନ ବାରିଧି ଡଃ ନଟବର ସାମନ୍ତରାୟ

ମହାଶୟ,

ଆପଣ ଜଣେ ଗଣିତ ଶିକ୍ଷକ ରୂପେ କର୍ମମୟ ଜୀବନ ଆରମ୍ଭ କରିଥିଲେ ମଧ ଶୁଷ୍କ ଗାଣିତିକ ସୂତ୍ର ଆପଣଙ୍କୁ ବାନ୍ଧି ରଖି ପାରିନାହିଁ । ଆପଣ ଧାବିତ ହୋଇଛନ୍ତି ଓଡ଼ିଆ ସାହିତ୍ୟର ଐତିହାସିକ ପଟ୍ଟଭୂମିକୁ ଉନ୍ମୋଚନ କରି ରସ ଆସ୍ୱାଦନ କରିବା ପାଇଁ । ଆପଣଙ୍କ ଜୀବନ ବ୍ୟାପୀ ସାଧନା ଏବଂ ଅନୁସନ୍ଧାନ ଓଡ଼ିଆ ଆଧୁନିକ ସାହିତ୍ୟର ଇତିହାସ ଓ ଗବେଷଣାକୁ ସମୃଦ୍ଧକରି ହୋଇଛି ବଳିଷ୍ଠ । ସାହିତ୍ୟ ସମାଲୋଚନା କ୍ଷେତ୍ରରେ ନୂତନ ଦିଗ୍‌ଦର୍ଶନ, ବିସ୍ତୃତ ତଥ୍ୟର ଉପସ୍ଥାପନା ହିଁ ଆପଣଙ୍କର ମୌଳିକତା । ଆଧୁନିକ ଓଡ଼ିଆ ସାହିତ୍ୟର ଐତିହାସିକ ଗବେଷଣା ସହିତ ସଂଖ୍ୟାଧିକ ଆଲୋଚନା ପୁସ୍ତକ ରଚନା କରି ଆପଣ ଚିର ସ୍ମରଣୀୟ ହୋଇଛନ୍ତି ଓଡ଼ିଆ ଜାତିର ।

ହେ ସତ୍ୟାନୁସନ୍ଧାନୀ ଗବେଷକ ! ଆପଣଙ୍କ ମହନୀୟ ପ୍ରତିଭାର ଆଲୋକରେ ଆଲୋକିତ ହୋଇ ଆମେ ଆଜି ଏହି ଶୁଭ ଅବସରରେ ଆପଣଙ୍କୁ "ଜ୍ଞାନବାରିଧି" ଉପାଧିରେ ଭୂଷିତ କରି ଭଗବାନଙ୍କ ନିକଟରେ ଆପଣଙ୍କ ଦୀର୍ଘ ଜୀବନ ପାଇଁ ପ୍ରାର୍ଥନା କରୁଛୁ ।

ଉତ୍କଳ ପାଠକ ସଂସଦ, କଟକ

ତା-୨୫/୩/୮୪

# ବ୍ୟାସକବି ଫକୀରମୋହନ ସେନାପତି

## ୧୫୦ ତମ ଜୟନ୍ତୀ ଉତ୍ସବ

ଭୁବନେଶ୍ୱର, ତା ୧୪-୧-୯୩

# ଡଃ ନଟବର ସାମନ୍ତରାୟ

ମାନନୀୟେଷୁ,

ଆଧୁନିକ ଓଡ଼ିଶାର ଅନ୍ୟତମ ନିର୍ମାତା ତଥା ଓଡ଼ିଶାର ନବଜାଗରଣରେ ଭାଷା, ସାହିତ୍ୟ ଓ ସଂସ୍କୃତି ସାମ୍ମୁଖ୍ୟର ମୁଖ୍ୟ ନାୟକ ବ୍ୟାସକବି ଫକୀରମୋହନ ସେନାପତିଙ୍କ ସାହିତ୍ୟର ସହୃଦୟ ସମୀକ୍ଷଣ କରି ତାଙ୍କ ସାରସ୍ୱତ ପ୍ରତିଭାକୁ ପ୍ରତିଭାତ କରିବା ଗୌରବର ଆପଣ ଅଧିକାରୀ ।

ଆଜି ଫକୀରମୋହନ ସେନାପତିଙ୍କ ୧୫୦ ତମ ଜୟନ୍ତୀ ଉତ୍ସବ ଅବସରରେ ଫକୀରମୋହନ ସାହିତ୍ୟର ଶ୍ରେଷ୍ଠ ସାଧକ ରୂପେ ଆପଣଙ୍କୁ "ଫକୀରମୋହନ ସମ୍ମାନ" ଅର୍ପଣ କରାଯାଉଅଛି ।

ସଭାପତି　　　　　　　　　　ମୁଖ୍ୟ ଅତିଥି

# ପଲ୍ଲୀକବି ନନ୍ଦକିଶୋର
# ସାରସ୍ୱତ ସମ୍ମାନ-୧୯୯୨

ଓଡ଼ିଆ ସାହିତ୍ୟର ବରିଷ୍ଠ ଗବେଷକ ତଥା ସମାଲୋଚକ

**ଶ୍ରୀଯୁକ୍ତ ନଟବର ସାମନ୍ତରାୟ**

ମହାଶୟ,

ଓଡ଼ିଆ ସମାଲୋଚନା ସାହିତ୍ୟ କ୍ଷେତ୍ରରେ ଆପଣଙ୍କ ନାମ ଏକ ସ୍ୱର୍ଣ୍ଣ ସ୍ୱାକ୍ଷର । ଆପଣଙ୍କ ଯୌକ୍ତିକତା, ବିଶ୍ଳେଷଣ ସାମର୍ଥ୍ୟ, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ସାହିତ୍ୟିକ ତଥ୍ୟ ଅନୁଶୀଳନରେ ନୂତନ ବୌଦ୍ଧିକତାର ପରମ୍ପରା ସୃଷ୍ଟି କରିପାରିଛି । ଆପଣଙ୍କ ପୂର୍ବସୂରୀ ଗବେଷକ ପରମାନନ୍ଦ ଆଚାର୍ଯ୍ୟଙ୍କୁ ସ୍ମରଣ କରି ଆପଣ ଯଥାର୍ଥରେ କହନ୍ତି: "Research is not a work,it is an attitude'. ସେଥିପାଇଁ ଆପଣଙ୍କ ସମୁଦାୟ ଜୀବନ ଏକ ଅନ୍ତହୀନ ସାଧନା । 'ଆଧୁନିକ ଓଡ଼ିଆ ସାହିତ୍ୟର ଭିତ୍ତିଭୂମି' ଆପଣଙ୍କର ଅନବଦ୍ୟ ଅବଦାନ । 'ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ', 'ଗଙ୍ଗାଧର ସାହିତ୍ୟ ସମୀକ୍ଷା','ଓଡ଼ିଆ ସାହିତ୍ୟକୁ ଆର୍ତ୍ତବଲ୍ଲଭଙ୍କ ଦାନ', 'ଗଳ୍ପ ନୁହେଁ ସମାଲୋଚନା' ଇତ୍ୟାଦି ଗ୍ରନ୍ଥ ଆପଣଙ୍କ ଦୀର୍ଘ, ନିରଳସ ଓ ନିଷ୍ଠାପର ସାଧନାର ଗୋଟିଏ ଗୋଟିଏ ଉଜ୍ଜ୍ୱଳ ପ୍ରତୀକ । ପଲ୍ଲୀକବି ନନ୍ଦକିଶୋର ବଳଙ୍କ କୃତି-ଆଧାରିତ ଆପଣଙ୍କ ଆଲୋଚନା ଗ୍ରନ୍ଥ 'ନନ୍ଦକିଶୋର ସାହିତ୍ୟ ସମୀକ୍ଷା' ଅଦ୍ୟାବଧି ସେ କ୍ଷେତ୍ରରେ ସର୍ବଶ୍ରେଷ୍ଠ ରଚନା ।

ଆଜି ଏ ପୁଣ୍ୟ ଅବସରରେ ଆପଣଙ୍କ ଭଳି ଓଡ଼ିଶାର ଜଣେ ସୁଯୋଗ୍ୟ ସନ୍ତାନଙ୍କୁ ମାନପତ୍ର ସହ ପ୍ରଥମ ପଲ୍ଲୀକବି ନନ୍ଦକିଶୋର ସାରସ୍ୱତ ସମ୍ମାନ ପ୍ରଦାନ କରି ପଲ୍ଲୀକବି ନନ୍ଦକିଶୋର ପ୍ରତିଷ୍ଠାନ ନିଜକୁ ଗୌରବାନ୍ୱିତ ମନେ କରୁଛି ।

ମୁଖ୍ୟ ଅତିଥି　　ସଭାପତି　　ସଭାପତି

୧୨/୧୨/୯୨　　ପଲ୍ଲିକବି ନନ୍ଦକିଶୋର ପ୍ରତିଷ୍ଠାନ

# କେଦାରନାଥ ଗବେଷଣା ପ୍ରତିଷ୍ଠାନ
# ଭୁବନେଶ୍ୱର-୨
## ଡଃ ନଟବର ସାମନ୍ତରାୟ

ବାଣୀଭବନ, ସାମନ୍ତରାୟପୁର, ଭୁବନେଶ୍ୱର ।

ମହାଶୟ,

ଜୀବନର ବହୁ ଉତ୍‌ଥାନ ପତନ ଦେଇ ଆପଣ ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରିବା ପାଇଁ 'ଓଡ଼ିଆ ସାହିତ୍ୟର ଇତିହାସ ' ସମେତ ବହୁ ଗବେଷଣାତ୍ମକ ପୁସ୍ତକ ରଚନା କରିଯାଇଛନ୍ତି । ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ଅନ୍ୟତମ ଅଗ୍ରଦୂତ ରୂପେ ଆପଣଙ୍କ କୃତିତ୍ୱ ଦେଶ ଓ ବିଦେଶରେ ପରିବ୍ୟାପ୍ତ ।

ପ୍ରଖ୍ୟାତ ଐତିହାସିକ ପ୍ରତ୍ନତତ୍ତ୍ୱବିତ୍ ଓ ସାହିତ୍ୟ ସମାଲୋଚକ କେଦାରନାଥ ମହାପାତ୍ରଙ୍କ ତ୍ରୟୋଦଶ ବାର୍ଷିକ ଶ୍ରାଦ୍ଧୋତ୍ସବରେ ଆପଣଙ୍କ ପରି ଜଣେ କୃତବିଦ୍ୟ ତଥା ବୟୋଜ୍ୟେଷ୍ଠ ସାଧକଙ୍କୁ ସମ୍ମାନିତ କରିବାର ସୌଭାଗ୍ୟ ଲାଭ କରି କେଦାରନାଥ ଗବେଷଣା ପ୍ରତିଷ୍ଠାନ ଗୌରବାନ୍ୱିତ ହୋଇଛି ।

ସମ୍ପାଦକ　　ମୁଖ୍ୟ ଅତିଥି　　ସଭାପତି

କେଦାରନାଥ ଗବେଷଣା ପ୍ରତିଷ୍ଠାନ, ଭୁବନେଶ୍ୱର.　　୨୦/୪/୧୯୯୪

# ଡଃ ନଟବର ସାମନ୍ତରାୟ

ମହୋଦୟେଷୁ

ଓଡ଼ିଆ ସମାଲୋଚନା ସାହିତ୍ୟର ଆପଣ ଗର୍ବ ଓ ଗୌରବ । ଆପଣଙ୍କ ଆଲୋଚନାରେ ନୂତନତାର ସ୍ୱାଦୁ ଏତେ ଅଧିକ ପ୍ରାଣବନ୍ତ, ନୂତନ ଦୃଷ୍ଟିଭଙ୍ଗୀର ସ୍ପର୍ଶ ଏତେ ଅଧିକ ମୌଳିକ, ସ୍ୱଚ୍ଛ ବିଚାରଧାରାର ପ୍ରାଞ୍ଜଳତା ଏତେ ଅଧିକ ବାକ୍‌-ମୁଖର ଓ ବିଷୟ ଉପସ୍ଥାପନାରେ ବିଜ୍ଞତା ଏବଂ ଚତୁରତା ଏତେ ଅଧିକ ସୁସ୍ପଷ୍ଟ ଯେ, ତାହା ନିଜ ଆଲୋକରେ ସ୍ୱତଃ ଦୀପ୍ତିବନ୍ତ ହେବା ସଙ୍ଗେ ସଙ୍ଗେ ସମକାଳୀନ ବହୁ ଆଲୋଚନାକୁ ଗଭୀର ଭାବରେ ପ୍ରଭାବିତ କରି ପାରିଛି ।

ହେ ବରେଣ୍ୟ ସମାଲୋଚକ !

ଗଣିତ ଶିକ୍ଷକ ରୂପେ ଆପଣଙ୍କର କର୍ମମୟ ଜୀବନର ଆରମ୍ଭ ହୋଇଥିଲା । ଗଣିତ ଶିକ୍ଷକର ଓଡ଼ିଆ ଅଧ୍ୟାପକ ଭିତରେ ଘଟ ପରବର୍ତ୍ତନ ବାହ୍ୟତଃ କର୍ମ ଓ ଚେତନାର ପରିବର୍ତ୍ତନ ରୂପେ ଦେଖା ଦେଇଥିଲେ ହେଁ ଏ ପରିବର୍ତ୍ତନ ହେଉଛି ଯଥାର୍ଥତଃ ସାହିତ୍ୟ ସମାଲୋଚନାରେ ଗାଣିତିକ ବିଚାରବୋଧର ସାର୍ଥକ ରୂପାୟନ; ଜଣେ ନିଷ୍ଠାପର ସାଧକର ଚିନ୍ତା ରାଜ୍ୟରେ ବୈଜ୍ଞାନିକ ବିଶ୍ଳେଷଣର ପରିପୂର୍ଣ୍ଣ ପରିପ୍ରକାଶ ମାତ୍ର ।

ହେ ମହାନ ସାଧକ !

ଓଡ଼ିଆ ଭାଷା ଓ ସାହିତ୍ୟର ଛାତ୍ର ଛାତ୍ରୀ, ଅଧ୍ୟାପକ ଅଧ୍ୟାପିକା, ଗବେଷକ ଏବଂ ଓଡ଼ିଶାର ବିଦଗ୍ଧ ଜନସମାଜ ଆପଣଙ୍କ ନିକଟରେ ଚିରକୃତଜ୍ଞ । ଓଡ଼ିଆ ସ୍ନାତକୋତ୍ତର ଭାଷା ଓ ସାହିତ୍ୟ ବିଭାଗ ଆପଣଙ୍କ ଦୀର୍ଘ ନିରାମୟ ଜୀବନ ପାଇଁ ଭଗବାନଙ୍କ ନିକଟରେ ପ୍ରାର୍ଥନା କରିବା ସଙ୍ଗେ ସଙ୍ଗେ ଆପଣଙ୍କୁ ଆନ୍ତରିକ ସମ୍ବର୍ଦ୍ଧନା ଜ୍ଞାପନ କରୁଛି ।

| | |
|---|---|
| ଅଧ୍ୟକ୍ଷ | ମୁଖ୍ୟ ଅଧ୍ୟାପକ |
| ରେଭେନ୍ସା କଲେଜ କଟକ | ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ |
| ତା୨୨/୧୨/୯୦ | ରେଭେନ୍ସା କଲେଜ |

# ନିଖିଳଭାରତ ଓଡ଼ିଆ ଅଧ୍ୟାପକ ସମ୍ମେଳନ

## ତୃତୀୟ ଅଧିବେଶନ ୧୯୮୧

## ଭଞ୍ଜ ବିହାର

# ଡଃ ନଟବର ସାମନ୍ତରାୟ

ଓଡ଼ିଆ ଭାଷା ଓ ସାହିତ୍ୟ ଅଧ୍ୟାପନା କ୍ଷେତ୍ରରେ ଆପଣଙ୍କର ଅବଦାନ ଅବିସ୍ମରଣୀୟ । ଓଡ଼ିଆ ଅଧ୍ୟାପକ ସମ୍ମେଳନ ଆଜି ଆପଣଙ୍କୁ ସମ୍ମାନିତ କରି ଗୌରବାନ୍ୱିତ ବୋଧ କରୁଛି ।

| | | |
|---|---|---|
| ସଭାପତି | ମୁଖ୍ୟଅତିଥି | ସମ୍ପାଦକ |

ଭଞ୍ଜ ବିହାର, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ୧୧/୫/୧୯୮୧

# ଓଡ଼ିଶା ସାହିତ୍ୟ ଏକାଡେମୀ
# ଭୁବନେଶ୍ୱର
# ଅତିବଡ଼ୀ ଜଗନ୍ନାଥ ଦାସ ପୁରସ୍କାର
# ଶ୍ରୀଯୁକ୍ତ ନଟବର ସାମନ୍ତରାୟ

ସମ୍ମାନାସ୍ପଦେଷୁ,

ବିଶିଷ୍ଟ ସମାଲୋଚକ, ଗବେଷକ ଓ ଶିକ୍ଷାବିତ୍ ଭାବରେ ଆପଣ ଯଶସ୍ୱୀ । ଆପଣଙ୍କର ମହନୀୟ ଅବଦାନ ହେତୁ, ଆଧୁନିକ ଓଡ଼ିଆ ଗଦ୍ୟ ସାହିତ୍ୟ ଏବଂ ସମାଲୋଚନା ସାହିତ୍ୟ ଋଦ୍ଧିମନ୍ତ ଓ ପୁଷ୍ଟଳ ।

ଅର୍ଦ୍ଧଶତାବ୍ଦୀ ଧରି ଆପଣଙ୍କର ସାରସ୍ୱତ ସାଧନାର ସାଫଲ୍ୟ ସ୍ୱରୂପ ଓଡ଼ିଆ ଭାଷାରେ ରଚିତ ଆପଣଙ୍କର ତେଇଶି ଗୋଟି ଗବେଷଣା ଓ ସମାଲୋଚନା ସନ୍ଦର୍ଭ ଗ୍ରନ୍ଥ ନୂତନ ପାଢ଼ିର ସମାଲୋଚକ, ଗବେଷକମାନଙ୍କୁ ଦିଗ୍‌ଦର୍ଶନ ଦେଇ ଆସିଛି । ଓଡ଼ିଆ ପଲ୍ଲୀ ସାହିତ୍ୟ, ପୁରାତନ ଓଡ଼ିଆ କାବ୍ୟ ସାହିତ୍ୟ, ଓଡ଼ିଆ ବୈଷ୍ଣବ ସାହିତ୍ୟ, ଧର୍ମୀୟ ତତ୍ତ୍ୱାଲୋଚନା, ଆଧୁନିକ ଓଡ଼ିଆ ସାହିତ୍ୟର ଇତିହାସ ପ୍ରଣୟନ ତଥା ବିଭିନ୍ନ ଭ୍ରାନ୍ତ ମତବାଦର ବୈଜ୍ଞାନିକ ଓ ତର୍କ ସମ୍ମତ ଖଣ୍ଡନ, ସତ୍ୟର ପ୍ରତିଷ୍ଠା କରିବା ସହିତ ଆପଣଙ୍କର ଅପ୍ରତିମ ପ୍ରତିଭା, ଗଭୀର ଅଧ୍ୟୟନ, ପାଣ୍ଡିତ୍ୟ ତଥା ନିଷ୍ଠାର ପରିଚୟ ଦେଇଅଛି ।

ଆଜି ଏହି ଶୁଭ ଅବସରରେ ଓଡ଼ିଶା ସାହିତ୍ୟ ଏକାଡେମୀ ଆପଣଙ୍କୁ "ଅତିବଡ଼ୀ ଜଗନ୍ନାଥ ଦାସ" ସାରସ୍ୱତ ସମ୍ମାନ ସମର୍ପଣ କରିବାର ସୌଭାଗ୍ୟ ପାଇ ଆପଣଙ୍କୁ ଗୌରବାନ୍ୱିତ ମନେ କରୁଅଛି ।

ସଚିବ — ସଭାପତି

ତା୧୬/୯/୧୯୯୫

## ସମ୍ମାନନୀୟ ଡଃ ନଟବର ସାମନ୍ତରାୟ, ସହୃଦୟେଷୁ !

ମହାଭାଗ !

ଓଡ଼ିଆ ସମାଲୋଚନା ସାହିତ୍ୟରେ ମୌଳିକ ଅନ୍ତର୍ଦୃଷ୍ଟି ସମ୍ପନ୍ନ ଅଭିନବ ଦୃଷ୍ଟିକୋଣ ପ୍ରଦର୍ଶନ କରି ଆପଣ ଯେଉଁ ବିପୁଳ ପ୍ରଜ୍ଞାର ପରିଚୟ ଦେଇଛନ୍ତି ତାହା ଓଡ଼ିଆ ସାହିତ୍ୟର ଇତିହାସରେ କାଳଜୟୀ ସ୍ୱାକ୍ଷର ବହନ କରିବ । ଆପଣଙ୍କର ପ୍ରୟୋଗାତ୍ମକ ଓ ବିଶ୍ଳେଷଣାତ୍ମକ ସମାଲୋଚନା ଧାରା ଗବେଷକମାନଙ୍କୁ ସାରସ୍ୱତ ଦୃଷ୍ଟିଭଙ୍ଗୀ ଓ ବୈଜ୍ଞାନିକ ମନନଶୀଳତା ଦିଗରେ ନିୟତ ଦିଗ୍‌ଦର୍ଶନ ପ୍ରଦାନ କରିଆସିଛି । ଆପଣଙ୍କର ନିରବଚ୍ଛିନ୍ନ ସାରସ୍ୱତ ଆପଣଙ୍କୁ ଓଡ଼ିଆ ସମାଲୋଚନା ସାହିତ୍ୟରେ ଜଣେ ଯୁଗ ପ୍ରବର୍ତ୍ତକ ଭାବରେ ପ୍ରତିଷ୍ଠିତ କରିଛି । ଆପଣଙ୍କର ସରଳ, ନିରାଡ଼ମ୍ବର ଅକୃତ୍ରିମ ଆତ୍ମୀୟତା, ସହୃଦୟତା ଓ ନିର୍ମଳ ଚରିତ୍ରବତ୍ତା କେବଳ ଅଗଣିତ ଛାତ୍ର ଓ ଗବେଷକମାନଙ୍କୁ ଯେ ଆକୃଷ୍ଟ କରିଥାଏ ତାହା ନୁହେଁ, ସାଧନାର ମାର୍ଗ ମଧ୍ୟ କରିଥାଏ ।

ଆଜି ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ଓଡ଼ିଆ ବିଭାଗ ତାହାର ରଜତ ଜୟନ୍ତୀ ମହୋତ୍ସବରେ ଆପଣଙ୍କ ସୁଦୀର୍ଘ, ପ୍ରଜ୍ଞାଦୀପ୍ତ ନିରାମୟ ଜୀବନ କାମନା କରି ଆପଣଙ୍କୁ ଯତ୍‌କିଞ୍ଚିତ ଶ୍ରଦ୍ଧା ଉପହାର ନିବେଦନ ପୂର୍ବକ ନିଜକୁ ଧନ୍ୟ ମନେ କରୁଛି । ଇତି ।

ଆପଣଙ୍କର ଗୁଣମୁଗ୍ଧ

ବାଣୀବିହାର — ସ୍ନାତକୋତ୍ତର ଓଡ଼ିଆ ବିଭାଗ

ତା ୫/୧୨/୯୪ — ଉତ୍କଳ ବିଶ୍ୱବିଦ୍ୟାଳୟ

## ଷୋଡ଼ଶ ଭୁବନେଶ୍ୱର ପୁସ୍ତକମେଳା:୨୦୦୦

### ଡଃ ନଟବର ସାମନ୍ତରାୟ,

### ଭୁବନେଶ୍ୱର

ମାନନୀୟେଷୁ,

ଆପଣ ଉଭୟ ଲୋକ ସାହିତ୍ୟ ଓ ବିଦଗ୍ଧ ସାହିତ୍ୟର ସମୀକ୍ଷକ ଭାବରେ ଅମ୍ଳାନ କୃତିତ୍ୱର ଅଧିକାରୀ । ଆପଣଙ୍କ 'ଓଡ଼ିଆ ସାହିତ୍ୟର ଇତିହାସ :୧୮୦୩-୧୯୨୦' ଗବେଷଣାତ୍ମକ ନିବନ୍ଧ ସାହିତ୍ୟରେ ଏକ ଦିଗବାରେଣୀ ଖୁଣ୍ଟ । ଐତିହାସିକ ଚେତନା, ତଥ୍ୟନିଷ୍ଠତା, ସୂକ୍ଷ୍ମ ରସବୋଧ ଏବଂ ନୈର୍ବ୍ୟକ୍ତିକ ବିଶ୍ଳେଷଣ ଯୋଗୁଁ ଆପଣଙ୍କ ଆଲୋଚନା ସ୍ୱକୀୟ ମୌଳିକତାରେ ସମୁଜ୍ଜ୍ୱଳ । ଆପଣଙ୍କ ଲିଖିତ 'ଆଧୁନିକ ଓଡ଼ିଆ ସାହିତ୍ୟର ଭିତ୍ତିଭୂମି', 'ସଖାହୀନ ପଞ୍ଚସଖା', 'ଓଡ଼ିଆ ବୈଷ୍ଣବ ସାହିତ୍ୟ' ଓ 'ଗଳ୍ପ ନୁହେଁ ସମାଲୋଚନା' ଗ୍ରନ୍ଥ ଓଡ଼ିଆ ସାହିତ୍ୟର ଅମୂଲ୍ୟ ସମ୍ପଦ ।

ଷୋଡ଼ଶ ଭୁବନେଶ୍ୱର ପୁସ୍ତକ ମେଳାରେ ଆପଣଙ୍କ ସାହିତ୍ୟ କୀର୍ତ୍ତି ପାଇଁ ସମ୍ବର୍ଦ୍ଧନା ଜଣାଇଲା ବେଳେ ଆମେ ଆପଣଙ୍କର ନିରାମୟ, କର୍ମମୟ, ସୁଦୀର୍ଘ ଜୀବନ କାମନା କରୁଛୁ ।

ସଭାପତି — ମୁଖ୍ୟଅତିଥି — ସମ୍ପାଦକ

ଭୁବନେଶ୍ୱର ପୁସ୍ତକମେଳା କମିଟି

# ସେମାନଙ୍କ ଦୃଷ୍ଟିରେ

*ସଂଗ୍ରହ ଓ ସମ୍ପାଦନା*
*ଅଧ୍ୟାପକ ଶିବରାମ ପାତ୍ର*

ଅଧ୍ୟାପକ ସାମନ୍ତରାୟ ବିଶ୍ଳେଷକ ସମାଲୋଚନାର ଆଶ୍ରୟ ଗ୍ରହଣ କରିଛନ୍ତି । ଓଡ଼ିଆ ସାହିତ୍ୟରେ ସମାଲୋଚନାର ଅଭାବ ଥିବା ସ୍ଥଳେ ଏପରି ଆଲୋଚନାର ପ୍ରୟୋଜନୀୟତା ସ୍ୱତଃ ଅନୁଭୂତ ହେବ ।

**ଗିରିଜାଶଙ୍କର ରାୟ**
୧୫/୨/୧୯୫୯

ସମାଲୋଚନା ନାନା ଦୃଷ୍ଟିରୁ କରାଯାଇ ପାରେ । ଗତାନୁଗତିକ ରୀତିରେ ହୋଇପାରେ, ତାହା ମଧ୍ୟ ନିପୁଣ ଭାବରେ କରା ଯାଇପାରେ ଓ ଗତାନୁଗତିକ ପ୍ରଥାକୁ ତ୍ୟାଗକରି ନୂଆ ବିଚାର ଦିଆଯାଇ ପାରେ । ଶ୍ରୀ ନଟବର ସାମନ୍ତରାୟଙ୍କ ପ୍ରବନ୍ଧମାନଙ୍କରେ ନୂଆ ବିଚାରର ଛାପା ସ୍ପଷ୍ଟ ଦେଖିବାକୁ ମିଳେ ।

**ଡଃ ପ୍ରହ୍ଲାଦ ପ୍ରଧାନ**
୨୦/୯/୧୯୬୦

ଶ୍ରୀମାନ ନଟବର ସାମନ୍ତରାୟ ଯେଉଁ ଧାରାରେ ଊନବିଂଶ ଶତାବ୍ଦୀର ଓଡ଼ିଆ ସାହିତ୍ୟକୁ ନେଇ ଅନୁସନ୍ଧାନ ଆରମ୍ଭ କରିଛନ୍ତି, ତାହା ଯେପରି କାମ୍ୟ, ସେହିପରି ପ୍ରଶଂସନୀୟ । ଯେଉଁ କେତେଜଣ ତରୁଣ ସାହିତ୍ୟିକ ଓଡ଼ିଆ ସାହିତ୍ୟର ଆଲୋଚନା ବିଭାଗ ଉପରେ କାମ କରିଛନ୍ତି, ସେମାନଙ୍କ ମଧ୍ୟରେ ନଟବରଙ୍କ ଲେଖା ହିଁ ପ୍ରକୃତ ଗବେଷଣାର ସୂଚନା ଦିଏ । ସେ ଏହା ଭିତରେ ଯାହା କରିଗଲେଣି, ତାହା ଊନବିଂଶ ଶତାବ୍ଦୀର ଓଡ଼ିଆ ସାହିତ୍ୟର ଇତିହାସର ସୁଦୃଢ଼ ମୂଳପତ୍ତନ ହେବ, ଏଥିରେ କୌଣସି ସନ୍ଦେହ ନାହିଁ ।

**ଡଃ ମାୟାଧର ମାନସିଂହ**
୧୧/୯/୧୯୫୭

ଫକୀର ମୋହନଙ୍କ ଜୀବନ ଓ ସାହିତ୍ୟ ସୃଷ୍ଟି ଉପରେ ଓଡ଼ିଆ ଭାଷାରେ ସର୍ବଶ୍ରେଷ୍ଠ ଆଲୋଚକ ... ହେଉଛନ୍ତି  ଅଧ୍ୟାପକ ଡଃ ନଟବର ସାମନ୍ତରାୟ । ଫକୀର ମୋହନଙ୍କ ଜୀବନ ସମ୍ପର୍କରେ ବର୍ତ୍ତମାନ ଓଡ଼ିଆ ଭାଷାରେ ଯାହା କିଛି ଉପାଦାନ ପ୍ରାପ୍ତବ୍ୟ, ସେଗୁଡ଼ିକ ହେଲା, ସେନାପତିଙ୍କ ଆତ୍ମଚରିତ, ଫକୀର ମୋହନ ସାହିତ୍ୟ ପରିଷଦ ପ୍ରକାଶିତ 'ଫକୀର ମୋହନ ପରିକ୍ରମା' ଏବଂ ଡଃ ସାମନ୍ତରାୟଙ୍କର ଆନ୍ତରିକ ଅନ୍ୱେଷଣ ଓ ଅନ୍ତର୍ଦୃଷ୍ଟିପୂର୍ଣ୍ଣ ବିଶ୍ଳେଷଣ ସୂଚକ ଆଲୋଚନା ଗୁଡ଼ିକ ।

**ଡଃ ମାୟାଧର ମାନସିଂହ**
୫/୧୨/୧୯୭୨

ଗବେଷଣା ହେଉଛି ଯଥାର୍ଥରେ ଏକ ହରଡ଼ ଘଣା । ଏଥିରୁ ରସ ବାହାର କରିବା ହେଉଛି ଗବେଷକଙ୍କର କର୍ତ୍ତବ୍ୟ । ନହେଲେ ସମୟରେ ତା'ର ନୈଷ୍ଠିକ ପ୍ରାଣଟି ମଧ ଚାଲିଯିବ । ସେ କେବଳ ଭାଲୁ ଲାଙ୍ଗୁଳ ଧରି ବୁଲୁଥିବେ ସିନା ଆଉ କିଛି କରିପାରିବେ ନାହିଁ । ଯା ଦେହରେ ଜୋର ଅଛି, ପେଟରେ ବିଦ୍ୟା ଅଛି ସେ ଲାଙ୍ଗୁଳଟିକୁ ଜବତ କରିବା ସଙ୍ଗେ ସଙ୍ଗେ ବୁଦ୍ଧି ଖଟାଇ ଭାଲୁକୁ ବି ଆୟତ୍ତ କରି ପାରିବ । ଆପଣ ଏମିତି କରି ପାରିବେନି ତ ସେମିତି ଘଣାରେ ପଡ଼ିଥିବେ । ଲାଙ୍ଗୁଳ ଧରି ସବୁ ଦିଗ ଘୂରୁଥିବେ ।

**ପରମାନନ୍ଦ ଆଚାର୍ଯ୍ୟଙ୍କ**
ସନ୍ଦେଶ, ନଟବର ସାମନ୍ତରାୟଙ୍କୁ

ଅଧ୍ୟାପକ ନଟବରଙ୍କ ସମୀକ୍ଷା ହେଉଛି ଏକ ଭିନ୍ନ ପର୍ଯ୍ୟାୟର । ଐତିହାସିକ ପୃଷ୍ଠଭୂମି ଉପରେ ସୃଷ୍ଟିର ସ୍ୱରୂପ ବିଶ୍ଳେଷଣ କରିବା ତାଙ୍କର ପ୍ରଧାନ ଲକ୍ଷ୍ୟ ।

**ଡଃ କୁଞ୍ଜବିହାରୀ ତ୍ରିପାଠୀ**
୧୪/୩/୧୯୬୦

ଅଧ୍ୟାପକ ସାମନ୍ତରାୟଙ୍କ ପ୍ରତ୍ୟେକ ଲେଖା କୌଣସି ଏକ ନିର୍ଦ୍ଦିଷ୍ଟ ଆଦର୍ଶ ଓ ଆଭିମୁଖ୍ୟ ଦ୍ୱାରା ଅନୁପ୍ରାଣିତ, ସେଥିରେ କୌଣସିଟି କେବେ ଆକସ୍ମିକ ଓ ଅପ୍ରତ୍ୟାଶିତ ନୁହେଁ । ପତନ-ଅଭ୍ୟୁଦୟ-ବନ୍ଧୁର ପନ୍ଥାର ଯାତ୍ରୀ ଏଇ ଅଧ୍ୟାପକଙ୍କ ଜୀବନଧାରା ସହିତ ତାଙ୍କର ରଚନା ଗୁଡ଼ିକ ଘନିଷ୍ଠ ଭାବେ ସଂପୃକ୍ତ । ଭିନ୍ନ ଭିନ୍ନ ସମୟରେ ଲିଖିତ ତାହାଙ୍କ ଆଲୋଚନାରେ ଆମେ ଯେଉଁ ଭିନ୍ନ ଭିନ୍ନ ସ୍ୱର ଶୁଣିବାକୁ ପାଉ ତାହା ଏଇ କଣ୍ଟକିତ ଜୀବନ ହେତୁ ସମ୍ଭବପର ହୋଇଥିଲା ବୋଲି ମନେ ହୁଏ ।

**ଡଃ ଚିନ୍ତାମଣି ବେହେରା**
ଏପ୍ରିଲ ୧୯୮୧

ଓଡ଼ିଆ ଅଧ୍ୟାପକମାନଙ୍କ ସମାଲୋଚନା ସାହିତ୍ୟ ସର୍ବାଂଶରେ ବୃତ୍ତି ନିର୍ଭରଶୀଳ । ଲକ୍ଷ କରିବାର କଥା, ଅଧ୍ୟାପନା ବୃତ୍ତିର ପରିଣତି ସ୍ୱରୂପ ଯେଉଁ ସାହିତ୍ୟ ବିକାଶ ଲାଭ କରେ, ସେଥିରେ ପ୍ରତିଭା-ଦ୍ୟୋତକ ସୃଷ୍ଟି ସହିତ ପ୍ରବଞ୍ଚନା ମୂଳକ ଅପସାହିତ୍ୟ ଆବିର୍ଭୂତ ହେବା ଆଦୌ ବିଚିତ୍ର ନୁହେଁ ଏଇ ପ୍ରତିଭାଦ୍ୟୋତିକ ସାହିତ୍ୟ ହେଉଛି ଓଡ଼ିଆ ଅଧ୍ୟାପକ ଶ୍ରେଣୀର ଯଥାର୍ଥ ଅବଦାନ ଓ ଏଇ ଶ୍ରେଣୀର ଜଣେ ସାର୍ଥକ ପ୍ରତିନିଧି ହେଉଛନ୍ତି ଡକ୍ଟର ନଟବର ସାମନ୍ତରାୟ ।

**ଡଃ ଚିନ୍ତାମଣି ବେହେରା**
ଏପ୍ରିଲ୍ ୧୯୮୧

ଡଃ ନଟବର ସାମନ୍ତରାୟଙ୍କ ସମାଲୋଚନା ଧାରାରେ ଐତିହାସିକ ବିଚାରବୋଧ ସହିତ ସମୟ ଓ ସମାଜର ଅନ୍ତର୍ଧ୍ୱନି ଓ ପରିବର୍ତ୍ତିତ ପରିସ୍ଥିତିରେ ବ୍ୟକ୍ତି ଚରିତ୍ରର ମୂଲ୍ୟାୟନ ସହିତ ସାହିତ୍ୟର ଅନ୍ତଃସୌନ୍ଦର୍ଯ୍ୟ ପ୍ରକଟିତ । ବୋଧହୁଏ ଡଃ ସାମନ୍ତରାୟ ହିଁ ଏକମାତ୍ର

ବ୍ୟକ୍ତି ଯିଏ କି ନିଜସ୍ୱ ମୌଳିକ ଧାରାଟିଏ ପ୍ରତିଷ୍ଠା କରିପାରି ଅଛନ୍ତି ।

**ଡଃ କୃଷ୍ଣଚରଣ ବେହେରା**
୧୯୮୯

ଆଧୁନିକ ଓଡ଼ିଆ ସମାଲୋଚନା- ସାହିତ୍ୟକୁ ଯେ ସେ ବହୁ ଦିଗରୁ ଉନ୍ନତ କରି ନିଜ ପାଇଁ ଏକ ସ୍ୱତନ୍ତ୍ର ଆଲୋଚନା ମାର୍ଗ ତିଆରି କରି ଦେଇଛନ୍ତି ତାହା ନୁହେଁ, ଏଇ ମାର୍ଗର ଅନ୍ୟ ପଥଯାତ୍ରୀଙ୍କ ପାଇଁ ବହୁ ମୂଲ୍ୟବାନ ମାନସିକ ଖାଦ୍ୟ ସମ୍ପାଦି ଯିବାକୁ ମଧ ଭୁଲି ନାହାନ୍ତି ।

**ଡଃ ଚିନ୍ତାମଣି ବେହେରା**
ଏପ୍ରେଲ ୧୯୮୧

ଅମୃତ ବେଳାରେ ଏପରି ଜଣେ ଜଣେ ପ୍ରତିଭା ଆବିର୍ଭୂତ ହୁଅନ୍ତି, ଯାହାଙ୍କର ତପସ୍ୟା ସାହିତ୍ୟର ଇତିହାସରେ କେବଳ ଯେ ନବ ନବ ଦିଗ୍‌ବଳୟ ଉନ୍ମୋଚନ କରେ ତାହା ନୁହେଁ, ଅଧିକନ୍ତୁ ସେଭଳି ପ୍ରତିଭା ଜାତୀୟ ସାହିତ୍ୟରେ ମହାଦୀପରେ ମଧ ପରିଣତ ହୋଇଯାଆନ୍ତି । ତାଙ୍କ ଅବଲମ୍ବିତ ମାର୍ଗ ଅନ୍ୟର ଅନୁକରଣୀୟ ହୋଇଯାଏ । ଅଲକ୍ଷ୍ୟରେ ସମକାଳୀନ ବହୁ ଲେଖକ ତାଙ୍କର ପ୍ରଭାବରେ ଆଚମ୍ବିତ ଭାବରେ ଆପେ ଆପେ ପ୍ରଭାବିତ ହୋଇଯାଆନ୍ତି । ପୁଣି କେତେକ ସଚେତନ ଚିତ୍ତରେ ସେହି ପ୍ରତିଭା ସୂର୍ଯ୍ୟକୁ ପ୍ରଦକ୍ଷିଣ କରିଯାଆନ୍ତି । ଏହିପରି ବରେଣ୍ୟ ପ୍ରତିଭା ସାହିତ୍ୟକୁ ଦେଇଥାନ୍ତି ନୂତନ ଦିଗ୍‌ଦର୍ଶନ, ନୂତନ ପ୍ରାଣ ପ୍ରାଚୁର୍ଯ୍ୟ । ସମକାଳୀନ ଯୁଗରେ ନବୀନ ଆଲୋଡ଼ନ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଅନାଗତ ପାଇଁ ସେମାନେ ବିପୁଳ ସମ୍ଭାବନା ବି ସୃଷ୍ଟି କରିପାରନ୍ତି । ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ସମାଲୋଚନା ସାହିତ୍ୟରେ ଡଃ ନଟବର ସାମନ୍ତରାୟ ସେହିଭଳି ଏକ ଅନନ୍ୟ ପ୍ରତିଭା । ସେ ଏଭଳି ଏକ ପ୍ରଦୀପ, ଯେଉଁ ପ୍ରଦୀପରୁ ଆଲୋକ ସଂଗ୍ରହ କରି ଆମ ସାହିତ୍ୟରେ ଅନେକ ଅନେକ ପ୍ରଦୀପ ଜଳି ଉଠିଛନ୍ତି ।.....ସ୍ୱାଧୀନତାର ପରବର୍ତ୍ତୀ କାଳରେ ଓଡ଼ିଆ ସମାଲୋଚନା ସାହିତ୍ୟକୁ ସୁସମୃଦ୍ଧ କରିବା ଅଭୀପ୍‌ସାରେ ଯେଉଁ ମୁଷ୍ଟିମେୟ ଅଧ୍ୟାପକ ଧୂପାୟିତ ହୋଇଛନ୍ତି, ସେମାନଙ୍କ ମଧ୍ୟରେ ଡଃ ସାମନ୍ତରାୟଙ୍କ ସ୍ଥାନ ବିଶେଷ ଭାବରେ ଉଲ୍ଲେଖଯୋଗ୍ୟ । ଅଧ୍ୟାପକ ଜୀବନରୁ ଅବସର ନେଲା ପରେ ବି' ତାଙ୍କର ସାଧନା ଅନାହତ ରହିଛି । ସମାଲୋଚନା ତାଙ୍କ ନିକଟରେ ସାଧନାର ସମ୍ପଦ । ବହୁ ନିଷ୍ଠାପର ଧ୍ୟାନ ଧାରଣା, ଅନାହତ ତପସ୍ୟାର ଅମୃତମୟ ଫଳ ସ୍ୱରୂପ ପ୍ରାଚୀନ ଓ ଆଧୁନିକ ସାହିତ୍ୟ ତଥା ସୌନ୍ଦର୍ଯ୍ୟତତ୍ତ୍ୱ ବା ଅଳଙ୍କାରତତ୍ତ୍ୱ ଆଲୋଚନାରେ ସେ ନୂତନ ମାର୍ଗର ସନ୍ଧାନ ଦେଇଛନ୍ତି ।

**ଡଃ ଅସିତ୍ କବି**
୧୯୯୪

## (ମୃତ୍ୟୁ ପରେ)

ଦୀର୍ଘ ୪୦ ବର୍ଷରୁ ଅଧିକ ସମୟ ଧରି ତାଙ୍କର ଅଜସ୍ରସ୍ରାବୀ ଲେଖନୀ ଉତ୍କଳ ଭାରତୀଙ୍କ ସାରସ୍ୱତ ଭଣ୍ଡାରକୁ ବିଭିନ୍ନ ରତ୍ନଖଣ୍ଡ ମାନଙ୍କରେ ସମୃଦ୍ଧ କରୁଥିଲେ । ବିଚିତ୍ର ତାଙ୍କର ମନୀଷା । ତାଙ୍କର ହୃଦୟଗ୍ରାହୀ ପାଣ୍ଡିତ୍ୟ ଅଗଣିତ ବିଦଗ୍ଧ ଏବଂ ଜ୍ଞାନପିପାସୁ ପାଠକମାନଙ୍କୁ ବିମୁଗ୍ଧ କରୁଥିଲା । କି ଆଧୁନିକ, କି ପ୍ରାଚୀନ ଉଭୟ କାଳର ବିଶିଷ୍ଟ କବିମାନଙ୍କ ସଂପର୍କରେ ତାଙ୍କର ଉଦ୍‌ଘାଟିତ ତଥ୍ୟ କେବଳ ଆଜି ନୁହେଁ, ବହୁ କାଳ ଧରି ତାଙ୍କର ପ୍ରଶସ୍ତ ସତ୍ୟଦର୍ଶୀ ବ୍ୟକ୍ତିତ୍ୱର ଜୟଗାନ କରୁଥିବ ।

**ପ୍ରଫେସର ଗୌରୀ କୁମାର ବ୍ରହ୍ମା**
ଭୁବନେଶ୍ୱର

ସ୍ୱର୍ଗତ ନଟବର ସାମନ୍ତରାୟଙ୍କୁ କେବଳ ଜଣେ ସାହିତ୍ୟ-ସମାଲୋଚକ ଭାବେ ଅଭିହିତ କରିବା ଠିକ୍ ହେବ ନାହିଁ, ଯେପରି ଠିକ୍ ହେବ ନାହିଁ ତାଙ୍କୁ କେବଳ ଗବେଷକ ଭାବେ ଅଭିହିତ କରିବା । ତାଙ୍କର ବିଶ୍ୱାସ ଥିଲା ଯେ ଉତ୍ତୀର୍ଣ୍ଣ ସାହିତ୍ୟର ଅବବୋଧ ପାଇଁ ତାର ପରିପ୍ରେକ୍ଷୀର ଅବବୋଧ ଗୁରୁତ୍ୱପୂର୍ଣ୍ଣ । ଏହି ବିଶ୍ୱାସ ଯୋଗୁଁ ସେ ନିରଳସ ଭାବେ ଆଜୀବନ ସବୁ ପ୍ରାସଙ୍ଗିକ ତଥ୍ୟ ସଂଗ୍ରହ କରି ଚାଲିଥିଲେ । ତାଙ୍କର ପ୍ରଚେଷ୍ଟା ଯୋଗୁଁ ହିଁ ସେପରି ଅନେକ ତଥ୍ୟ ଆଜି ଆମ ନିକଟରେ ଉପଲବ୍ଧ । ଏପରି ସାଧନାର, ପାଣ୍ଡିତ୍ୟର ପରମ୍ପରା ଦ୍ରୁତଗତିରେ ବିଚ୍ଛିନ୍ନ ହୋଇଆସୁଛି । ବିଚ୍ଛିନ୍ନ ହୋଇଗଲେ ସାହିତ୍ୟ ଯେଉଁ ପରିପୂର୍ଣ୍ଣତା ଦେଇପାରିଥାନ୍ତା ତାହା ଦେଇପାରିବ ନାହିଁ । ଦୀର୍ଘ, ଅକ୍ଲାନ୍ତ ସାଧନା ଦ୍ୱାରା ସ୍ୱର୍ଗତ ନଟବର ସାମନ୍ତରାୟ ଏ ପରମ୍ପରାର ମହତ୍ତ୍ୱ ପ୍ରତିପାଦିତ କରି ଦେଇଗଲେ ।

**ଶ୍ରୀଯୁକ୍ତ ରମାକାନ୍ତ ରଥ,** ସଭାପତି
କେନ୍ଦ୍ର ସାହିତ୍ୟ ଏକାଡେମୀ

ଡକ୍ଟର ସାମନ୍ତରାୟଙ୍କର ସ୍ୱତଃ ଅନୁଶୀଳନ, ନୂତନ ଶୈଳୀ, ଓଡିଆ ସାହିତ୍ୟ ମନ ସୁଶୋଭିତ କରିଥିଲା । ତାଙ୍କ ରଚିତ 'ଓଡିଆ ସାହିତ୍ୟର ଇତିହାସ', 'ପଲ୍ଲୀକବି ନନ୍ଦକିଶୋର ସମୀକ୍ଷା', 'ବ୍ୟାସକବି ଫକୀରମୋହନ' ଗ୍ରନ୍ଥ ତାଙ୍କ ଅନନ୍ୟ ସାରସ୍ୱତ ସାଧନାର ପ୍ରତିଲିପି । ଡକ୍ଟର ସାମନ୍ତରାୟ ଯଥାର୍ଥରେ ଥିଲେ ଓଡିଆ ସାହିତ୍ୟର ବିରଳ ପ୍ରତିଭା ।

**ଡଃ ପଠାଣି ପଟ୍ଟନାୟକ**
ସଭାପତି, ଉତ୍କଳ ସାହିତ୍ୟ ସମାଜ ।

ସେ ଥିଲେ ଶିକ୍ଷକଙ୍କ ଭଳି ଜଣେ ଶିକ୍ଷକ । ସେ ବଞ୍ଚିଥିବା ବେଳେ ତାଙ୍କ କଥା ଯେତିକି ମନେପଡୁଥିଲା; ତାଙ୍କ ଅବର୍ତ୍ତମାନରେ ସେ ବହୁତ ମନେ ପଡୁଛନ୍ତି । ତାଙ୍କ ଛାତ୍ର

ବତ୍ସଳତା ତାଙ୍କର ଅଗଣିତ ଛାତ୍ରଙ୍କୁ ମୁଗ୍ଧ କରିଥିଲା । ଅଧ୍ୟାପନା ବେଳେ ତାଙ୍କ ତନ୍ମୟତା ଲକ୍ଷ୍ୟ କରିବାର କଥା । ବିଷୟବସ୍ତୁ ସବୁ ଯେପରି ବର୍ଷାର ବାରିଧାରା ଝରିବା ପରି ତାଙ୍କ ମୁହଁରୁ ଝରି ପଡୁଥିଲା । ସେ ସବୁ ଏବେ ସ୍ମରଣିକା ପାଇଁ ଅଭିପ୍ରେତ ହୋଇଯିବ ।

**ଶ୍ରୀଯୁକ୍ତ ଶରତ କୁମାର କର**
ବାଚସ୍ପତି, ଓଡିଶା ବିଧାନସଭା

ଓଡ଼ିଆ ଭାଷା ସାହିତ୍ୟ ବିଭାଗରେ ତାଙ୍କ ପରି ପଣ୍ଡିତ ଗବେଷକ ଓ ଅଧ୍ୟବସାୟୀ ଅଧ୍ୟାପକ ଖୁବ୍ କମ୍ ଅଛନ୍ତି । ତାଙ୍କ ଦ୍ୱାରା ହିଁ ଆଧୁନିକ ଓଡ଼ିଆ ସାହିତ୍ୟର ଯଥାର୍ଥ ସମୟୋଚିତ ସମାଲୋଚନା ସମ୍ଭବପର ହୋଇଥିଲା । ସେ ଥିଲେ ବହୁପାଠୀ ଓ ସାହିତ୍ୟର ଗଭୀର ମର୍ମ ବୁଝିବାରେ ଧୁରୀଣ । ଓଡ଼ିଆ ସାହିତ୍ୟର ଇତିହାସରେ ଅନେକ ଅନ୍ଧକାରାବୃତ ଅଞ୍ଚଳର ରହସ୍ୟ ସେ ତାଙ୍କର ଗଭୀର ଜ୍ଞାନ ଓ ପ୍ରଜ୍ଞାଦୀପ୍ତ ଦୃଷ୍ଟିରେ ଉନ୍ମୋଚିତ କରି ଆଲୋକକୁ ଆଣିଛନ୍ତି ।

**ମହାପାତ୍ର ନୀଳମଣି ସାହୁ**
*ସୌଜନ୍ୟ: ଅନୁପମ ଭାରତ ୨୭.୮.୨୦୦୦*

ନଟବରବାବୁ ଯାହା ଲେଖୁଥିଲେ, ତା' ମଧ୍ୟରୁ ଗୋଟିଏ ଧାଡ଼ି ଉପରେ କେହି ମୁଣ୍ଡଳା ବୁଲାଇଦେଇ ପାରିବ ନାହିଁ ବୋଲି ତାଙ୍କର ଦୃଢ ବିଶ୍ୱାସ ଥିଲା । ମୁଁ ତାଙ୍କର ଏହି ବ୍ୟକ୍ତିଗତ ମତକୁ ଆତ୍ମପ୍ରୌଢ଼ି ବୋଲି କେବେହେଲେ ଭାବୁନଥିଲି । ଏହା ଥିଲା ନିରାଟ ସତ୍ୟର ନିର୍ଭୀକ ପରିପ୍ରକାଶ ମାତ୍ର । ଆଧୁନିକ ଓଡ଼ିଆ ସାହିତ୍ୟର କ୍ରମ ବିକାଶ ନିର୍ଦ୍ଦେଶ କରି ସେ ଯେଉଁ କଠୋର ପରିଶ୍ରମ ସହିତ ପ୍ରଶଂସନୀୟ ବୋଧଶକ୍ତି ଏବଂ ସିଦ୍ଧାନ୍ତ ଗ୍ରହଣର ଅଂସଖ୍ୟ ଉଦାହରଣ ଦେଇଯାଇଛନ୍ତି, ତାହା ବିଚାର କଲେ ଯେ କୌଣସି 'ପଣ୍ଡିତ ଲୋକ' ତାଙ୍କ ପାଦରେ ମୁଣ୍ଡ ନୁଆଇଁ ଦେବେ ।

**ଗୌରୀ କୁମାର ବ୍ରହ୍ମା**
*ସୌଜନ୍ୟ: ଚିର ସନ୍ଧାନ(ଅଗଷ୍ଟ ୨୪-୩୧)*

ଡକ୍ଟର ସାମନ୍ତରାୟ ସମାଲୋଚନା ଲେଖିବା ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟରେ ସମାଲୋଚନାର ଭାଷା ଶୁଷ୍କ, ନିରସ ଓ ଗଦ୍ୟମୟ ଥିଲା । ସମାଲୋଚନାକୁ ବୌଦ୍ଧିକ ଦୃଷ୍ଟିକୋଣରୁ କୌଣସି ଭାବେ ନ୍ୟୁନ ନକରି ସେଥିରେ ପ୍ରାଣବତ୍ତା ଭରିଦେବାରେ ତାଙ୍କର ଭୂମିକା ଥିଲା ଜଣେ ପଥିକୃତର ଭୂମିକା ।

**ଡଃ. ଶକୁନ୍ତଳା ବଳିଆର ସିଂ**
*ସୌଜନ୍ୟ : ସମାଜ (୨୭ ଅଗଷ୍ଟ ୨୦୦୦)*

'ଭାବକସ୍ୟୋପକୁର୍ବାଣା ଭାବୟିତ୍ରୀ, ସାହି କବେଃ ଶ୍ରମମଭପ୍ରାୟଂ ଚ ଭାବୟତି' (ରାଜଶେଖର) ଅର୍ଥାତ୍ ଭାବୟିତ୍ରୀ ପ୍ରତିଭା ଭାବକର ଉପଚାରକ । ଏହି ପ୍ରତିଭା ବଳରେ କବିର ଶ୍ରମ ଓ ଅଭିପ୍ରାୟ ମୂଲ୍ୟାଙ୍କନ କରିହୁଏ । ବସ୍ତୁତଃ ଡକ୍ଟର ସାମନ୍ତରାୟ ଥିଲେ ଭାବୟିତ୍ରୀ ପ୍ରତିଭାର ଅଧିକାରୀ; ତେଣୁ ଭାବକ ସାହିତ୍ୟର ଗୋଟିଏ ବିଭାଗରେ ଆମୃତ୍ୟୁକାନ୍ତ ଲେଖନୀ ଚାଳନା କରି ଏକପତ୍ନୀ ବ୍ରତ ପାଳନର ଆନ୍ତରିକ ନିଷ୍ଠାପରି ବିଶ୍ୱସ୍ତ ରହିବା କମ କଷ୍ଟକର ନୁହେଁ । ତହିଁରେ ପୁଣି ସାହିତ୍ୟିକର ଖ୍ୟାତି ମିଳିବାରେ ସମ୍ଭାବନା ନଥିବା ସମାଲୋଚନା ପ୍ରତି ମନ ବଳାଇବା ପାଗଳାମି ଛଡା ଅନ୍ୟ କିଛି ନୁହେଁ । ତଥାପି ସାମନ୍ତରାୟ ଏଭଳି ଏକ ପଥରେ ମୃତ୍ୟୁ ଅବଧି ପଦଚାଳନା କରିଥିଲେ ।

ପ୍ରଥମେ ପ୍ରକାଶିତ ସମାଲୋଚନା କୃତି 'ବ୍ୟାସକବି ଫକୀରମୋହନ' (୧୯୫୭) ଭିତ୍ତିରେ କବି-ସମୀକ୍ଷକ ଡକ୍ଟର ମାୟାଧର ମାନସିଂହ ସେ କାଳରେ ସାମନ୍ତରାୟଙ୍କୁ 'ତରୁଣ ଗବେଷକ' କହିବା ଖୁବ୍ ବେଶୀ ତାତ୍ପର୍ଯ୍ୟପୂର୍ଣ୍ଣ ।

ବସ୍ତୁତଃ ଡଃ ନଟବର ସାମନ୍ତରାୟ ଯେଉଁ ତଥ୍ୟନିଷ୍ଠ ଗବେଷଣା ପ୍ରବନ୍ଧ ରଚନାର ପ୍ରଣାଳୀ ନିର୍ମାଣ କରିଥିଲେ ତାହା ଏବେ ସୁଦ୍ଧା ଅନତିକ୍ରମଣୀୟ ରହିଛି ।

**ଡଃ. ବାବାଜୀ ଚରଣ ପଟ୍ଟନାୟକ**

ପ୍ରାଧ୍ୟାପକ, ବି.ଜେ.ବି ପ୍ରାତଃ ମହାବିଦ୍ୟାଳୟ, ଭୁବନେଶ୍ୱର

*ସୌଜନ୍ୟ: ପ୍ରଗତିବାଦୀ, (ଅଗଷ୍ଟ ୨୭,୨୦୦୦)*

ଓଡିଆ ସାହିତ୍ୟର ନିରଳସ ସାଧକ, ପ୍ରଖ୍ୟାତ ଗବେଷକ ଡକ୍ଟର ନଟବର ସାମନ୍ତରାୟ ନିଷ୍ଠାପର ଅଧ୍ୟୟନ ଓ ଗଭୀର ମନନଶୀଳତାର ସହ ଆଲୋଚନା-ସମାଲୋଚନା ମାଧ୍ୟମରେ ଓଡିଆ ସାହିତ୍ୟକୁ ରୁଚିବନ୍ତ, ପ୍ରାଣବନ୍ତ ଓ ବୁଦ୍ଧିମନ୍ତ କରିଯାଇଛନ୍ତି । ସାହିତ୍ୟିକର ଚଲାପଥକୁ କୁସୁମିତ କରି ସୁଗମ କରିବା ପାଇଁ ଏବେବି ସମାଲୋଚକଙ୍କର ଅଭାବ ରହିଛି ବୋଲି ଅନେକ ଦର୍ଶାଉଥିବା ବେଳେ ସେ ଅଭାବ ପୂରଣ କରି ନଟବର ସାମନ୍ତରାୟ ପର୍ଯ୍ୟାଲୋଚନା ମାଧ୍ୟମରେ ଓଡିଆ ସାହିତ୍ୟକୁ ସମୃଦ୍ଧ କରିଛନ୍ତି ।

ବାସ୍ତବରେ ସେ ଥିଲେ ଗବେଷକମାନଙ୍କ ପାଇଁ ପ୍ରେରଣାର ଉତ୍ସ । ଆଧୁନିକ ଓଡିଆ ସାହିତ୍ୟର ମନନଶୀଳ ଅନୁଶୀଳନ ଓ ବୌଦ୍ଧିକ ବିଶ୍ଳେଷଣ ଦିଗରେ ସେ ନିଜର ସମଗ୍ର ଜୀବନ ଉତ୍ସର୍ଗ କରିଥିଲେ । ଦିଗହରା ସାହିତ୍ୟିକମାନଙ୍କୁ ରେଳଧାରଣାରେ ସିଗ୍‌ନାଲ୍ ଭଳି ସେ ସଙ୍କେତ ଦେଇ ସମୁଚିତ ଦିଗ ଦେଖାଉଥିଲେ ।

**ରାଜ କିଶୋର ରାଜ**

ସଭାପତି, ନୀଳଶୈଳ

*ସୌଜନ୍ୟ: ପର୍ଯ୍ୟବେକ୍ଷକ (ତା. ୩୦ ଅଗଷ୍ଟ ୨୦୦୦)*

ଓଡିଶାର ବୟୋଜ୍ୟେଷ୍ଠ ପ୍ରଖ୍ୟାତ ଗବେଷକ, ଓଡିଆ ସାହିତ୍ୟ ଓ ସଂସ୍କୃତିର ନିରଳସ ସାଧକ, ପ୍ରବୀଣ ସମାଲୋଚକ ଓ ପ୍ରାବନ୍ଧିକ, ଛାତ୍ରବତ୍ସଳ ଅଧ୍ୟାପକ ସ୍ୱର୍ଗତଃ ଡକ୍ଟର ନଟବର ସାମନ୍ତରାୟଙ୍କ ବିୟୋଗରେ ଓଡିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ଗବେଷଣା କ୍ଷେତ୍ରରେ ଯେଉଁ କ୍ଷତି ଘଟିଲା ତାହା ଅପୂରଣୀୟ ।

**ଭଗବାନ ପଣ୍ଡା, ସଂପାଦକ,**

କେଦାରନାଥ ଗବେଷଣା ପ୍ରତିଷ୍ଠାନ,ଭୁବନେଶ୍ୱର

ସମାଲୋଚନାକୁ ସର୍ଜନାତ୍ମକ କଳାରୂପେ ପରିପ୍ରକାଶ କରିବାରେ ତାଙ୍କ ପ୍ରତିଭାର ପଟାନ୍ତର ନାହିଁ ।

**ବାଲ୍ମିକୀ ପଟ୍ଟନାୟକ,** ଅଧ୍ୟକ୍ଷ ଏବଂ
**ଜମ୍ବୁପାଣି ସାମନ୍ତ,** ଓଡ଼ିଆ ବିଭାଗ ମୁଖ୍ୟ
କେ.ଏସ୍.ୟୁ.ବି. କଲେଜ, ଭଞ୍ଜନଗର

ମୁଁ ମୋର ସ୍ୱଳ୍ପ ଜ୍ଞାନରେ ଯେତିକି ଜାଣେ; ସେଥିରେ ମୁଁ ଗୋଟିଏ କଥାରେ ଅନ୍ତତଃ ନିଃସନ୍ଦେହ ଯେ ଡକ୍ଟର ସାମନ୍ତରାୟ ଊନବିଂଶ ଓ କେତେକାଂଶରେ ବିଂଶ ଶତାବ୍ଦୀର ଓଡିଆ ସାହିତ୍ୟର ସର୍ବପ୍ରଥମ ବିଧିବଦ୍ଧ ଢାଞ୍ଚା ତିଆରି କରି ଯାଇଛନ୍ତି । କାହାରି ବାଟରେ ନଯାଇ ଓଡିଆ ସମାଲୋଚନାରେ ସେ ନିଜ ବାଟ ନିଜେ ତିଆରି କରିଛନ୍ତି । ତାଙ୍କ ଶୂନ୍ୟସ୍ଥାନ ପୂରଣ ପାଇଁ ଓଡିଆ ସମାଲୋଚନା ସାହିତ୍ୟକୁ ବହୁକାଳ ଅପେକ୍ଷା କରିବାକୁ ପଡିବ ।

**ହୃଷୀକେଶ ମଲ୍ଲିକ,**ଅଧ୍ୟାପକ, ଓଡିଆ ବିଭାଗ
ରାଜଧାନୀ କଲେଜ, ଭୁବନେଶ୍ୱର

ବର୍ତ୍ତମାନର ସମାଲୋଚନା କ୍ଷେତ୍ରରେ ମୂଲ୍ୟବୋଧ ଓ ନୀତିକୁ ଆଂଶିକ ଗୁରୁତ୍ୱ ଦିଆଯାଉଥିବା ବେଳେ ଡକ୍ଟର ସାମନ୍ତରାୟ କାଳର ପ୍ରଭାବ ଓ ମୂଲ୍ୟବୋଧକୁ ସର୍ବାଧିକ ପ୍ରାଧାନ୍ୟ ଦେଇଛନ୍ତି । ଏ ଦୃଷ୍ଟିରୁ ସାହିତ୍ୟର ମୂଲ୍ୟ ନିରୂପଣ କରିବାରେ ସମାଲୋଚକର ଭୂମିକାକୁ ଯଦି ବିଚାରକର ଭୂମିକା ଭାବେ ଗ୍ରହଣ କରାଯାଏ ତେବେ ସାମନ୍ତରାୟ ହେଉଛନ୍ତି ଯଥାର୍ଥରେ ଜଣେ ବିଚାରକ ।

**ସୁଧା ଦାଶ**
*ସୌଜନ୍ୟ: ସ୍ୱାଭିମାନ (୨୪.୮.୨୦୦୦)*

ଗବେଷଣାରେ ସ୍ୱକୀୟତା, ଗବେଷକର ମୌଳିକ ତଥ୍ୟ, ଯୁକ୍ତି, ସିଦ୍ଧାନ୍ତର ଉପସ୍ଥାପନ ଶୈଳୀ, ଗବେଷଣା ଲବ୍ଧ ପ୍ରସଙ୍ଗର ସୁଦୂର ପ୍ରଭାବୀ ଅବଦାନ ଏସବୁକୁ କରାୟତ୍ତ କରି ସେ ସ୍ୱୟଂସିଦ୍ଧ ଗବେଷକଟିଏ ହୋଇ ଏ ଜାତିକୁ ଏକାଧିକ ପୁସ୍ତକାବଳୀ ଦାନ କରି ଆମ ବାଣୀ ଭଣ୍ଡାରକୁ ସମୃଦ୍ଧ କରିଛନ୍ତି ।

**ଚିନ୍ମୟ ରାୟ**
*ସୌଜନ୍ୟ: ଅନୁପମ ଭାରତ (୨୭.୮.୨୦୦୦)*

ସାହିତ୍ୟ ସମାଲୋଚନାରେ ସେ ବେଶ୍ ନିରପେକ୍ଷ । ... ତାଙ୍କ ଅନୁଭବର ଗଭୀରତା ଯେତେ, ଦୃଷ୍ଟିରେ ତାତ୍ପର୍ଯ୍ୟତା ମଧ୍ୟ ସେତେ । ପୁଣି ସୁକ୍ଷ୍ମାତିସୁକ୍ଷ୍ମ ବିଚାରବୋଧ, ଯୁକ୍ତି ଅକାଟ୍ୟ, ଶବ୍ଦ ମାପଚୁପ୍ ।

**ସିଦ୍ଧାର୍ଥ ଶଙ୍କର ପାଢ଼ୀ**
*ସୌଜନ୍ୟ: ଅନୁପମ ଭାରତ (୨୭.୮.୨୦୦୦)*

* * *

# ସମୀକ୍ଷା

ଜୀବନବ୍ୟାପୀ ଯେ ଅନ୍ୟମାନଙ୍କର ସାହିତ୍ୟକୃତିର
ସମୀକ୍ଷା କରି କାଳ ନିର୍ବାହ କରିଥିଲେ
ଆଜି ସେ ନିଜେ ସମୀକ୍ଷିତ
ଅନ୍ୟ ସମୀକ୍ଷକଙ୍କ କଲମରେ...
କାଳର କଷଟିରେ କଳାର ମୂଲ ତଉଲୁଥିବା
ନଟବର ଆଜି ଅନ୍ୟମାନଙ୍କର
ଯବକାଚ ତଳେ ଜାଜ୍ୱଲ୍ୟମାନ...

# ସାହିତ୍ୟ ସାଧକ ସ୍ୱର୍ଗୀୟ ଡଃ ନଟବର ସାମନ୍ତରାୟ

*ଡଃ ସର୍ବେଶ୍ୱର ଦାସ*

**ଚା**ହୁଁ ଚାହୁଁ ବର୍ଷେ ହୋଇଗଲା ଅନବଦ୍ୟ ସାହିତ୍ୟ ସାଧକ ଡଃ ନଟବର ସାମନ୍ତରାୟଙ୍କର ଇହଧାମ ତ୍ୟାଗ କରିବାର ।

ଆଜି ତାଙ୍କର ସ୍ମୃତିଚାରଣ କଲାବେଳେ ତାଙ୍କର ହସ ହସ ମୁହଁ ଆଖି ଆଗରେ ଭାସି ଉଠୁଛି । ଦୀର୍ଘ ଅର୍ଦ୍ଧ ଶତାବ୍ଦୀରୁ ଅଧିକ ସ୍ନେହସମ୍ପର୍କ ତାଙ୍କ ସହିତ । ମୋଠାରୁ ବୟସରେ ଅଧିକ ଥିଲେ ସେ -ମୋର ବଡ଼ଭାଇ ପରି ଥିଲେ । କିନ୍ତୁ ସର୍ବଦା ସମବୟସ୍କ ବନ୍ଧୁ ପରି ସେ ବ୍ୟବହାର କରୁଥିଲେ । ହସ କୌତୁକ କରୁଥିଲେ ।

ମନେ ପଡୁଛି । ମୁଁ ସମ୍ବଲପୁରରୁ ଆସି ରେଭେନ୍ସା କଲେଜରେ ଯୋଗ ଦେଇଥାଏ- ୧୯୫୧ ମସିହା ହେବ । ସେ ଥାଆନ୍ତି କଟକ ଷ୍ଟେସନ୍ ଆର ପାଖରେ । ଗଣ୍ଡରପୁରରେ ଗୋଟିଏ ଛୋଟ ଘର ଭଡ଼ାନେଇ । ତାଙ୍କର ପଡ଼ୋଶି ଥା'ନ୍ତି ଇଂରେଜୀ ଅଧ୍ୟାପକ ତ୍ରିଲୋଚନ ମିଶ୍ର । ମୁଁ ଦୁହିଁଙ୍କ ପାଖକୁ ଯାଏ । ନଟବର ବାବୁ କେତେ ଆଦର କରନ୍ତି ।

ବଡ଼ ଉତ୍ସାହରେ ସେ ଲାଗି ପଡ଼ିଥା'ନ୍ତି ତାଙ୍କର ଗବେଷଣାରେ । ଆଧୁନିକ ଓଡ଼ିଆ ସାହିତ୍ୟର ଇତିହାସ ଉପରେ ସନ୍ଦର୍ଭ ଲେଖିବାକୁ ଉପାଦାନ ସଂଗ୍ରହ କରୁଥାନ୍ତି । ପ୍ରବନ୍ଧ ଲେଖୁଥା'ନ୍ତି ଓଡ଼ିଆ ସାହିତ୍ୟର ବିଭିନ୍ନ ଦିଗ ଉପରେ । ପୁଣି ଯେମିତି ସେମିତି କିଛି ଲେଖନ୍ତିନି । ଗଭୀର ଅନୁଧ୍ୟାନ କରି, ସଂପୃକ୍ତ ସମସ୍ତ ବିଷୟ ବିଚାର କରି, ଅନ୍ୟମାନଙ୍କ ମତାମତ ବିଚାର କରି ସେ ନିଜର ମତ ଦୃଢ଼ ଭାବରେ ବ୍ୟକ୍ତ କରୁଥିଲେ । ମୂଳରୁ ତାଙ୍କର ଗବେଷଣାରେ ଥିଲା ନିଷ୍ଠା, ମୌଳିକତା, ନିଜସ୍ୱ ଚିନ୍ତା ।

ପରେ ତାଙ୍କର 'ଓଡ଼ିଆ ସାହିତ୍ୟର ଇତିହାସ' ପଢ଼ି ମନେ ପଡ଼ିଛି ଇଂଲଣ୍ଡର George Saintsburyଙ୍କ କଥା । ସେ ତାଙ୍କର History of English Literature ପୁସ୍ତକର ମୁଖବନ୍ଧରେ ଲେଖିଥିଲେ ଯେ ଯେଉଁ ଯେଉଁ ବହି କଥା ସେହି ଇତିହାସରେ ସେ ଉଲ୍ଲେଖ କରିଥିଲେ, ପ୍ରତ୍ୟେକଟି ବହି ସେ ନିଜେ ଭଲରୂପେ ପଢ଼ିଛନ୍ତି ଓ ତା'ପରେ ନିଜର ମନ୍ତବ୍ୟ ଦେଇଛନ୍ତି । କୌଣସି ବହି ନପଢ଼ି ଅନ୍ୟ କାହାରି ମତାନୁଯାୟୀ କୌଣସି ମତ ଦେଇ ନାହାନ୍ତି । ନଟବର ବାବୁ ମଧ୍ୟ ସେହିପରି କୌଣସି ବହି ନପଢ଼ି ଅନ୍ୟ କାହାର ମତ ଉପରେ ନିର୍ଭର କରି ମତ ଦେଇନାହାନ୍ତି । ଯେଉଁ ଯେଉଁ ବହି କଥା ସେ ଉଲ୍ଲେଖ କରିଛନ୍ତି ତାଙ୍କର 'ଓଡ଼ିଆ ସାହିତ୍ୟର ଇତିହାସ'ରେ ପ୍ରତ୍ୟେକଟି ନିଜେ ପଢ଼ିଛନ୍ତି । ଏବଂ କେବଳ ସେହି ବହି ନୁହେଁ, ସେହି ବହି ଉପରେ ଯାହା କିଛି ଲେଖିଛନ୍ତି ବା ସେ ବହି ସହିତ ପ୍ରତ୍ୟକ୍ଷରେ ବା ପରୋକ୍ଷରେ ଯେ କୌଣସି ବହି ସଂପୃକ୍ତ ସେ ବହି ପଢ଼ିଛନ୍ତି । ତା' ପରେ ନିଜର ସୁଚିନ୍ତିତ ମତ ବ୍ୟକ୍ତ କରିଛନ୍ତି । ଅତ୍ୟନ୍ତ ଅଧ୍ୟବସାୟୀ ଥିଲେ ସେ । ଗଭୀର

ଭାବରେ, ତନ୍ନ ତନ୍ନ ଭାବରେ ଅନୁଧ୍ୟାନ ନକରି ସେ ମତ ବ୍ୟକ୍ତ କରୁ ନଥିଲେ ଏବଂ ନିରପେକ୍ଷ ମତ ବ୍ୟକ୍ତ କଲାବେଳେ କାହାର କ'ଣ ପ୍ରତିକ୍ରିୟା ହେବ, ସେ କଥା ବିଚାର କରୁ ନଥିଲେ । ଯୁକ୍ତିଯୁକ୍ତ ଭାବରେ ତାଙ୍କର ବକ୍ତବ୍ୟ ପ୍ରକାଶ କରୁଥିଲେ ।

ସେ ସାହିତ୍ୟର ଇତିହାସ ଲେଖିବାକୁ ଯାଇ ସାହିତ୍ୟର ପୃଷ୍ଠଭୂମି, ରାଜନୈତିକ,ସାମାଜିକ, ଧର୍ମଗତ, ସାଂସ୍କୃତିକ ପୃଷ୍ଠଭୂମିର ବିସ୍ତୃତ ଆଲୋଚନା କରିଛନ୍ତି । ପ୍ରତ୍ୟେକ ପୁସ୍ତକର ପୃଷ୍ଠପଟ ବିଷୟରେ ଆଲୋକପାତ କରିଛନ୍ତି । ପୁସ୍ତକର ପ୍ରକାଶ କାଳ ନିରୂପଣ କରି ତହିଁ ଉପରେ ସମସାମୟିକ ପ୍ରତିକ୍ରିୟା, ବିଭିନ୍ନ ପତ୍ର ପତ୍ରିକା ବା ପୁସ୍ତକରୁ ସଂଗ୍ରହ କରି ପ୍ରକାଶ କରିଛନ୍ତି ।

କିନ୍ତୁ ନଟବର ବାବୁ କେବଳ ସାହିତ୍ୟର ଐତିହାସିକ ନଥିଲେ, ସେ ଥିଲେ ନିରପେକ୍ଷ ସମୀକ୍ଷକ ଏବଂ କେବଳ ପୃଷ୍ଠପଟ ଦୃଷ୍ଟିରୁ ସେ କୌଣସି ରଚନାର ସମୀକ୍ଷା କରୁ ନଥିଲେ । ଗୋଟିଏ କଳାକୃତି ରୂପେ ତାହାର ସମୀକ୍ଷା କରୁଥିଲେ । ଭାବ, ଭାଷା, ଶୈଳୀ, ସଙ୍ଗଠନ, ଦୃଷ୍ଟିରୁ ବିଚାର କରୁଥିଲେ ।

ପ୍ରତ୍ୟେକ ଆଲୋଚନାରେ ତାଙ୍କର ଗଭୀର ଅନୁସନ୍ଧିତ୍ସା ପରିଲକ୍ଷିତ ହୁଏ । ମନେ ପଡୁଛି ତାଙ୍କର 'ଓଡ଼ିଆ ସାହିତ୍ୟର ଇତିହାସ'ରେ ରାଧାନାଥଙ୍କର କାବ୍ୟ କବିତାର ସମୀକ୍ଷା । ରାଧାନାଥଙ୍କୁ ସେ 'ଯୁଗ ପ୍ରବର୍ତ୍ତକ', 'ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରଥମ ଭିତ୍ତି ସଂସ୍ଥାପକ' ରୂପେ ଅଭିହିତ କରିଛନ୍ତି । ସ୍ଥାନେ ସ୍ଥାନେ ତାଙ୍କର କଳା କୌଶଳର, ସୃଷ୍ଟି ଅଭିପ୍ସାର ଉଚ୍ଛ୍ୱସିତ ପ୍ରଶଂସା କରିଛନ୍ତି । କିନ୍ତୁ Literary detective ବା ସାହିତ୍ୟିକ ଗୋଏନ୍ଦା ପରି ସେ ବହୁ ପରିଶ୍ରମ କରି ରାଧାନାଥଙ୍କ କେତେକ ରଚନାର ବିଷୟବସ୍ତୁ, ଭାବ ଓ ଭାଷାର ମୂଳ ଉତ୍ସ ଆଲୋଚନାକୁ ଆଣିଛନ୍ତି । ଆକ୍ଷେପ କରି ଗୋଟିଏ ସ୍ଥାନରେ ନଟବର ବାବୁ ଲେଖିଛନ୍ତି "...ରାଧାନାଥ ନିଜ ସାହିତ୍ୟର ଯଥାର୍ଥ ସୃଷ୍ଟି ଉତ୍ସ ସମ୍ପର୍କରେ ଭ୍ରମବଶତଃ ମଧ୍ୟ କେଉଁଠି କିଛି କହି ନାହାନ୍ତି । କିନ୍ତୁ ଯେଉଁଠି ନିଜ ସାହିତ୍ୟ ଉପରେ କିଛି କହିବାକୁ ସାହାସ କରିଅଛନ୍ତି, ମନେ ହୁଏ, ସେଠାରେ ସେ ସତ୍ୟ କଥା କହିନାହାନ୍ତି ।" ନଟବର ବାବୁ ବହୁ କଷ୍ଟ ସ୍ୱୀକାର କରି ସଂସ୍କୃତ ସାହିତ୍ୟ ହେଉ, ପାଶ୍ଚାତ୍ୟ ସାହିତ୍ୟ ହେଉ- କେଉଁଠି ରାଧାନାଥ ବାବୁ ବିଷୟ ବସ୍ତୁ ଆହରଣ କରିଛନ୍ତି ତାହା ନିର୍ଣ୍ଣୟ କରିଛନ୍ତି । କେବଳ ଇଂରାଜୀ ସାହିତ୍ୟ ନୁହେଁ, ଗ୍ରୀକ୍ ସାହିତ୍ୟରୁ କେଉଁ ଅଂଶ ଗ୍ରହଣ କରି ରାଧାନାଥ ତାକୁ ନବରୂପ ଦେଇଛନ୍ତି, କେବଳ ଭାବରେ ନୁହେଁ, ଭାଷାରେ ମଧ୍ୟ କିପରି ସେ ପ୍ରଭାବିତ ହୋଇଛନ୍ତି ତାହା ପ୍ରକାଶ କରିଛନ୍ତି । ବିଶେଷତଃ 'ପାର୍ବତୀ' କାବ୍ୟର ସମୀକ୍ଷାରେ ନଟବର ବାବୁ ତାହା ପୁଙ୍ଖାନୁପୁଙ୍ଖ ରୂପରେ ଆଲୋଚନା କରିଛନ୍ତି । ସେ ସବୁ ଆଲୋଚନା ପଢ଼ି ମନେହେଲା ମୁଁ ଇଂରାଜୀ ଅଧ୍ୟାପକ ହୋଇ ମଧ୍ୟ ଏତେ କଥା ଜାଣି ନାହିଁ, ଯାହା କେତେ ବହି ଘାଣ୍ଟି ସେ ଜାଣିଛନ୍ତି । ଯେଉଁଠି ରାଧାନାଥ ଆଶିଂକ ଭାବରେ ସ୍ୱୀକାର କରିଛନ୍ତ, ତାଙ୍କର ପାଶ୍ଚାତ୍ୟ ସାହିତ୍ୟ ଠାରୁ ଋଣକୁ, ସେଠି ନଟବର ବାବୁ ଆଲୋଚନା କରିଛନ୍ତି ରାଧାନାଥ ତାହା ଅନ୍ଧ ଭାବରେ ଓଡ଼ିଆ ସାହିତ୍ୟରେ ପୁରାଇଛନ୍ତି ନା ତାହାକୁ ନିଜସ୍ୱ ରୂପ ଦେଇଛନ୍ତି କି ତାତ୍ପର୍ଯ୍ୟପୂର୍ଣ୍ଣ ରୂପେ ବଦଳାଇଛନ୍ତି ପରିବେଶର ଭିନ୍ନତାକୁ ଆଖିରେ ରଖି, ମୁଖ୍ୟ ବିଷୟବସ୍ତୁକୁ ବିଚାରକୁ ନେଇ । କିନ୍ତୁ ଯେଉଁଠି ରାଧାନାଥ ପ୍ରାୟ ସିଧାସଳଖ କିଛି ନେଇ ଆସିଛନ୍ତି ବା ତାଙ୍କର

କେଉଁ ସାହିତ୍ୟ ପାଶ୍ଚାତ୍ୟ ସାହିତ୍ୟ ପାଖରେ କିପରି ଋଣୀ, କେଉଁ ଲେଖକ ପ୍ରତି କିପରି ଋଣୀ ତାହା ସ୍ୱୀକାର କରି ନାହାନ୍ତି ବା ସ୍ପଷ୍ଟରୂପେ ଜଣାଇ ନାହାନ୍ତି ପାଠକଙ୍କୁ ମୁଖବନ୍ଧରେ, ସେଠି କୌଣସି ଦ୍ୱିଧା ନକରି ନଟବର ବାବୁ ରାଧାନାଥଙ୍କୁ ସମାଲୋଚନା କରିଛନ୍ତି ।

ଉଦାର ନଟବର ବାବୁ ବୁଝିବାକୁ ଚେଷ୍ଟା କରିଛନ୍ତି କାହିଁକି ରାଧାନାଥ ପାଶ୍ଚାତ୍ୟ ସାହିତ୍ୟ ପ୍ରତି ଋଣ ସ୍ୱୀକାର କରିବାକୁ କୁଣ୍ଠିତ ହୋଇଛନ୍ତି ଏବଂ ସାହିତ୍ୟ ସମୀକ୍ଷକ ରୂପେ କହିଛନ୍ତି, ''ରାଧାନାଥଙ୍କ ଅସରଳତା  ତାଙ୍କ କାବ୍ୟ ମନ୍ଦିର ନିର୍ମାଣ ଓ ତା'ର ସୌନ୍ଦର୍ଯ୍ୟ ସମ୍ପାଦନ ଦିଗରେ ଏକ ଅମୋଘ ଅସ୍ତ୍ର ।'' ରାଧାନାଥ ଯେପରି ତାଙ୍କର ଋଣକୁ ଘୋଡ଼ାଇବା ପାଇଁ ସମସ୍ତ ସାହିତ୍ୟିକ କଳାକୌଶଳ ପ୍ରୟୋଗ କଲେ, ରଚନା ଗୁଡ଼ିକୁ ସାର୍ଥକ ମୌଳିକ ସୃଷ୍ଟିର ବୋଲି ଧାରଣା ପାଠକଙ୍କ ମନକୁ ଜାଗରିତ କରିବାକୁ । ରାଧାନାଥଙ୍କୁ ପ୍ରଶଂସା କରି ଲେଖିଛନ୍ତି ନଟବର ବାବୁ -''ଗ୍ରୀକ୍ ବିଷୟବସ୍ତୁର କେବଳ ଆହରଣ ରାଧାନାଥ ସାହିତ୍ୟର ପରମ କୃତିତ୍ୱ ନୁହେଁ । ଏଇ ଆହରଣର ପ୍ରକୃତ ଓ ତା'ର ଯଥାର୍ଥ ବିନିଯୋଗରେ ଫୁଟିଛି ତାଙ୍କର ସାର୍ଥକ କାବ୍ୟ-ପ୍ରତିଭା ।''

ସାହିତିକ ଦୁର୍ନୀତି ବିରୁଦ୍ଧରେ ଥିଲେ ସେ ଅକ୍ଳାନ୍ତ ସଂଗ୍ରାମୀ । ଯଥାର୍ଥ ଅନୁସନ୍ଧାନ ବା ବିଶ୍ଳେଷଣ ଉପରେ ପ୍ରତିଷ୍ଠିତ ହୋଇ ନଥିବା ମତକୁ ସେ ଦୃଢ଼ତାର ସହିତ ଅଗ୍ରାହ୍ୟ କରୁଥିଲେ । Fiction ବା କାଳ୍ପନିକ କାହାଣୀକୁ ନେଇ ଇତିହାସ ରଚନା କରିବାକୁ ସେ ସମାଲୋଚନା କରୁଥିଲେ ଏବଂ ବ୍ୟକ୍ତିବିଶେଷଙ୍କ ପାଣ୍ଡିତ୍ୟ ପ୍ରତି ଯଥେଷ୍ଟ ଶ୍ରଦ୍ଧା ଥିଲେ ମଧ ସେ ପ୍ରକାର ଭ୍ରାନ୍ତ ତଥ୍ୟ ପରିବେଷଣ ପାଇଁ ସେମାନଙ୍କୁ ନିନ୍ଦା କରିବାକୁ କୁଣ୍ଠିତ ହେଉ ନଥିଲେ । 'ଓଡ଼ିଆ ସାହିତ୍ୟର ସ୍ୱର ପରିବର୍ତ୍ତନ' ପୁସ୍ତକରେ ସେ କହିଛନ୍ତି- ''ପ୍ରାଚ୍ୟ ବିଦ୍ୟାପ୍ରବୀଣ ନରେନ୍ଦ୍ରନାଥ ବସୁ, ପଣ୍ଡିତ ମୃତ୍ୟୁଞ୍ଜୟ ରଥ, ଏପରିକି ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ନିଜ ନିଜ ଅଧ୍ୟୟନର ପରିସର ଭିତରେ ଜଣେ ଜଣେ ଅଦ୍ୱିତୀୟ ପଣ୍ଡିତ ହେଲେ ହେଁ ଓଡ଼ିଶା ଧର୍ମ ସାହିତ୍ୟ ଆଲୋଚନାର ପ୍ରାଥମିକ ଯୁଗରେ ଆବିର୍ଭାବ କରିଥିବାରୁ ଏଇ 'ଫିକ୍‌ସନ୍'କୁ 'ଫ୍ୟାକ୍ଟ' ବା ତଥ୍ୟଠାରୁ ପୃଥକ କରିବା ପରିବର୍ତ୍ତେ ତାକୁ ହିଁ ଇତିହାସଗତ ତଥ୍ୟ ରୂପେ ସ୍ୱୀକାର କରିଥିଲେ ।''

ପ୍ରଗାଢ଼ ଆତ୍ମବିଶ୍ୱାସ ସହିତ ନିଜର ସମୀକ୍ଷା ପଦ୍ଧତି ବିଷୟରେ ସେ ଘୋଷଣା କରିଥିଲେ- ''ମୋ ଆଲୋଚନାର ଆଭିମୁଖ୍ୟ ବିଶ୍ଳେଷଣାତ୍ମକ ପଦ୍ଧତି ଦ୍ୱାରା ପୂର୍ଣ୍ଣତଃ ନିୟନ୍ତ୍ରିତ । ଏଥିରେ ପୂର୍ବ ପରିକଳ୍ପିତ କୌଣସି ଅର୍ଥ ବା ଅଭିମତ ନିର୍ବାଚିତ ଉପାଦାନ ଉପରେ ଆରୋପ କରାଯାଇ ନାହିଁ । ଏ ଅର୍ଥ ବା ଅଭିମତ ବିଶ୍ଳେଷଣ ମାଧ୍ୟମରେ ଉପାଦାନ ଭିତରୁ ହିଁ ସ୍ୱତଃ ଆତ୍ମପ୍ରକାଶ କରି ଉଠିଛି ।''

'ଶିଶୁବେଦ' ଉପରେ ମୌଳିକ ଆଲୋଚନା କରି ପାରମ୍ପରିକ ଓ ସାମ୍ପ୍ରତିକ ମତକୁ ଦୃଢ଼ତାର ସହିତ ଭ୍ରାନ୍ତ ବୋଲି ସେ ପ୍ରତିପାଦିତ କରିଥିଲେ- ତାହା ସପ୍ତଦଶ ଶତାବ୍ଦୀର ଏକ ଅନୁବାଦ ଗ୍ରନ୍ଥ ବୋଲି ଦର୍ଶାଇ ଥିଲେ ।

ତାଙ୍କର ବିଶ୍ଳେଷଣଭିତ୍ତିକ, ବିବେକସମ୍ମତ ମତ ଦୃଢ଼ ଭାବରେ ଉପସ୍ଥାପିତ କରିଥିବା ହେତୁ ସେ ବିରୋଧର, କଠୋର ସମାଲୋଚନାର ଶିକାର ହୋଇଥିଲେ ମଧ ହଟିଯାଇ ନଥିଲେ ।

ଜୀବନର ଶେଷ ପ୍ରାନ୍ତ ପର୍ଯ୍ୟନ୍ତ ନଟବର ବାବୁ ତାଙ୍କର ଗବେଷଣା କାର୍ଯ୍ୟ ଚଳାଇଥିଲେ ଯଦିଚ ପ୍ରାୟ ଚଳତ୍‌ଶକ୍ତି ହରାଇ ବସିଥିଲେ । ମୃତ୍ୟୁର କିଛିକାଳ ପୂର୍ବରୁ ସେ ସତ୍ୟବାଦୀ ଗୋଷ୍ଠୀ ଉପରେ କିଛି ତଥ୍ୟ ମୋଠାରୁ ପାଇବେ ବୋଲି ଆଶାକରି ଚିଠି ଲେଖିଥିଲେ । କିନ୍ତୁ ମୋର ସ୍ତ୍ରୀଙ୍କ ଗୁରୁତର ଅସୁସ୍ଥତା ହେତୁ (ସେ ଇହଧାମ ତ୍ୟାଗ କଲେଣି) ମୁଁ ବିବ୍ରତ ଥିବାରୁ ସେହି ତଥ୍ୟ ଯୋଗାଡ଼ କରି ଦେଇ ପାରିଲି ନାହିଁ । ସେଥିପାଇଁ ଦୁଃଖ ରହିଗଲା ।

ନିଜେ ତ ଗବେଷଣା କରୁଥିଲେ, ବହୁ ଗବେଷକଙ୍କୁ ମଧ୍ୟ ସେ ଦିଗ୍‌ଦର୍ଶନ ଦେଇଥିଲେ । ଯଥାସମ୍ଭବ ବୈଜ୍ଞାନିକ ପଦ୍ଧତିରେ ଗବେଷଣା କରିବାକୁ ପ୍ରେରଣା ଦେଇଥିଲେ ।

ଗବେଷଣା ପ୍ରତି ଆଗ୍ରହ ତାଙ୍କୁ ଶିକ୍ଷକ ରୂପେ କର୍ତ୍ତବ୍ୟରୁ ବିଚ୍ୟୁତ କରିନଥିଲା । ସେ ଛାତ୍ରମାନଙ୍କ ପ୍ରତି ତାଙ୍କର କର୍ତ୍ତବ୍ୟ ସମ୍ପାଦନରେ କୌଣସି ଅବହେଳା କରୁନଥିଲେ ।

ଓଡ଼ିଶା ସାହିତ୍ୟ ଏକାଡ଼େମୀ ତାଙ୍କର ସାହିତ୍ୟ ସମୀକ୍ଷା ପାଇଁ ତାଙ୍କୁ ଏକାଧିକ ବାର ପୁରସ୍କୃତ କରିଛନ୍ତି । 'ଅତିବଡ଼ି ଜଗନ୍ନାଥ ଦାସ' ପୁରସ୍କାର ଦେଇ ତାଙ୍କୁ ସମ୍ମାନିତ କରା ଯାଇଥିଲା ।

କିନ୍ତୁ ନିର୍‌ପେକ୍ଷ, ବିଶ୍ଳେଷଣାତ୍ମକ, ବୈଜ୍ଞାନିକ ପଦ୍ଧତି ସମ୍ମତ ସାହିତ୍ୟିକ ସମୀକ୍ଷାର ଯେଉଁ ପରମ୍ପରାର ଭିତ୍ତି ସେ ସ୍ଥାପନ କରିଥିଲେ ସେହି ପରମ୍ପରାକୁ ପୁଷ୍ଟ କରିବା ଓ ସେହି ସମୀକ୍ଷା କ୍ଷେତ୍ରରେ ନବ ବିଗନ୍ତକୁ ଅଗ୍ରସର ହେବା ଦ୍ୱାରା ହିଁ ତାଙ୍କର ସ୍ମୃତି ପ୍ରତି ଯଥାର୍ଥ ସମ୍ମାନ ପ୍ରଦର୍ଶନ କରିହେବ ।

ଆଜି ତାଙ୍କର ପ୍ରଥମ ଶ୍ରାଦ୍ଧ ବାର୍ଷିକୀରେ ତାଙ୍କର ଅମର ଆତ୍ମା ପ୍ରତି ବିନମ୍ର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

*୨୧୬/୧୮୬, ଏରୋଡ୍ରମ ଏରିଆ,*
*ଭୁବନେଶ୍ୱର-୯*

## ନଟବର ବାଣୀ

ପ୍ରତିଭାର ଶାଶ୍ୱତ-ଦୀପ୍ତି ସନାତନ ଓ ସର୍ବକାଳୀନ; ସେଇ ପ୍ରତିଭା ଓ ତାର କ୍ରମିକ ବିକାଶଧାରା ପର୍ଯ୍ୟାଲୋଚନା କରିବା ସମୀକ୍ଷକଙ୍କର ଏକମାତ୍ର କର୍ତ୍ତବ୍ୟ । ପ୍ରତିଭାର ସେହି ଅମଳିନ ଜ୍ୟୋତି ବିଷୟ-ବିପର୍ଯ୍ୟୟର ମାନଦଣ୍ଡରେ ନିର୍ଦ୍ଧାରିତ ହେବା କବି ପ୍ରତିଭା ତଥା ସମୀକ୍ଷା ପକ୍ଷରେ ଏକ ଘୋର କଳଙ୍କ । ଯେଉଁ ପ୍ରତିଭାର ନିଜ ଗୋଡ଼ ଉପରେ ଠିଆ ହୋଇ ପାରିବାର ସାମର୍ଥ୍ୟ ନାହିଁ, ସେ ପ୍ରତିଭା ବଞ୍ଚି ରହିବାର କୌଣସି ଅଧିକାର ନାହିଁ । ତାକୁ ଅନୁକମ୍ପା ଦେଖାଇ ବଞ୍ଚେଇ ରଖିବା ସମୀକ୍ଷା କର୍ମର ଏକ ପ୍ରବଞ୍ଚନା ମାତ୍ର ।

*ଗଙ୍ଗାଧର ସାହିତ୍ୟ ସମୀକ୍ଷା (୧୯୭୫) ପୃ୧୬-୧୭*

# ସତ୍ୟଦ୍ରଷ୍ଟା ନଟବର

*ସାତକଡ଼ି ହୋତା*

ନଟବର ସାମନ୍ତରାୟ ଓଡ଼ିଆ ସାହିତ୍ୟର ଜଣେ ଉଚ୍ଚକୋଟୀର ଗବେଷକ ଓ ସମୀକ୍ଷକ ଭାବେ ପରିଚିତ । ଗବେଷଣା କରିବା ପାଇଁ ଯେପରି ନିଷ୍ଠା, ଅଧ୍ୟବସାୟ ଓ ସୂକ୍ଷ୍ମ ଦୃଷ୍ଟିକୋଣ ଆବଶ୍ୟକ ତାହା ତାଙ୍କର ଥିଲା । ସେ ସତ୍ୟକୁ ଠାବ କରିବା ପାଇଁ ନିଷ୍ଠାର ସହିତ କାର୍ଯ୍ୟ କରୁଥିଲେ । ତେଣୁ ଯାହା ଘଟିଯାଇଛି ବା କୁହାଯାଇଛି ତାହାକୁ ସତ୍ୟ ବୋଲି ଗ୍ରହଣ କରି ନନେଇ ତା' ଭିତରେ ଥିବା ଲୁକ୍କାୟିତ ସତ୍ୟକୁ ଉଦ୍‌ଘାଟନ କରିବା ପାଇଁ ପ୍ରୟାସ କରିଛନ୍ତି । 'ଆଧୁନିକ ଓଡ଼ିଆ ସାହିତ୍ୟ ବିକାଶର ପୃଷ୍ଠଭୂମି' ପୁସ୍ତକ ୧୯୭୯ ମସିହା ଶେଷରେ ପ୍ରକାଶ ପାଇଥିଲା । ଏଥିରେ ନ' ଗୋଟି ପ୍ରବନ୍ଧ ସ୍ଥାନ ପାଇଛି । ଏହି ନ'ଟି ପ୍ରବନ୍ଧ ପାଠକଲେ ନଟବର ବାବୁଙ୍କର ମୌଳିକ ଦୃଷ୍ଟିକୋଣ ଓ ଗଭୀର ଅଭିନିବେଶ ଦୃଷ୍ଟିରେ ପଡ଼େ । ଏହା ବହିରେ ମଧୁବାବୁଙ୍କ 'ବର୍ଣ୍ଣବୋଧ' କାହାର ଏହି ପ୍ରଶ୍ନ ଉତ୍‌ଥାପନ କରି ସେ ବିଷୟରେ ଅନେକ ଦୁର୍ଲଭ ତଥ୍ୟ ଦେବା ସହିତ 'ବର୍ଣ୍ଣବୋଧ'ର ରଚୟିତାଙ୍କ ସମ୍ପର୍କରେ ନିର୍ଣ୍ଣୟାତ୍ମକ ନିଷ୍ପତ୍ତିରେ ପହଞ୍ଚିଛନ୍ତି । ତାଙ୍କ ପୂର୍ବରୁ ଆଉ କେହି ଗବେଷକ ଏ ସମ୍ପର୍କରେ ଏଭଳି ନିର୍ଭିକ ନିରପେକ୍ଷ ମତ ପ୍ରକାଶ କରି ନଥିଲେ ।

'ବର୍ଣ୍ଣବୋଧ'ର ଲେଖକ ଭାବେ ଭକ୍ତକବି ମଧୁସୁଦନ ରାଓ ଜଣାଶୁଣା । ଏହି ବହି ପ୍ରଥମେ ୧୮୯୫ ମସିହାରେ ପ୍ରକାଶ ପାଏ । କିନ୍ତୁ ୧୮୭୬ ମସିହାରେ ପଣ୍ଡିତ ଗୋବିନ୍ଦ ରଥଙ୍କର 'ବର୍ଣ୍ଣବୋଧ' ପୁସ୍ତକ ପ୍ରଥମେ ପ୍ରକାଶିତ ହୁଏ । କେତେକଙ୍କର ଧାରଣା ଥିଲା ମଧୁବାବୁ ଗୋବିନ୍ଦ ରଥଙ୍କର 'ବର୍ଣ୍ଣବୋଧ'ରୁ 'କ' ଅକ୍ଷରଟି କାଟିଦେଇ ତାହା ନିଜ ନାମରେ ଚଳାଇ ଦେଇଛନ୍ତି । କିନ୍ତୁ ତାହା ଯେ, ସଂମ୍ପୂର୍ଣ୍ଣ ମିଥ୍ୟା ତାହା ନଟବର ବାବୁ ପ୍ରମାଣ କରିଛନ୍ତି । ଓଡ଼ିଆ ବର୍ଣ୍ଣବୋଧ ପ୍ରକାଶ ପୂର୍ବରୁ ଆମସ୍ ସଟନ୍‌ଙ୍କ 'ଓଡ଼ିଆ ବର୍ଣ୍ଣବୋଧକ ବା ଓଡ଼ିଆ ପ୍ରାଇମର' ୧୮୪୦ ସାଲରେ ପ୍ରକାଶ ପାଇଥିଲା । ଏହି ପ୍ରବନ୍ଧରୁ ଆହୁରି ପ୍ରମାଣିତ ହୁଏ ଯେ, ବର୍ଣ୍ଣବୋଧର ପ୍ରଣେତାଃ ଭକ୍ତକବି ମଧୁସୁଦନ କିନ୍ତୁ ତାଙ୍କ ଆଗରୁ ବଙ୍ଗଳା ଭାଷାରେ 'ଈଶ୍ୱର ଚନ୍ଦ୍ର ବିଦ୍ୟାସାଗର ବର୍ଣ୍ଣ ପରିଚୟ' ନାମରେ ଏକ ପୁସ୍ତକ ରଚନା କରିଥିଲେ । ନଟବର ବାବୁ ପ୍ରମାଣ କରିଛନ୍ତି ଯେ, ପଣ୍ଡିତ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ପ୍ରଣୀତ 'ବର୍ଣ୍ଣ ପରିଚୟ' ହିଁ ମଧୁବାବୁଙ୍କ ବର୍ଣ୍ଣବୋଧ ସୃଷ୍ଟିର ପ୍ରଧାନ ଅବଲମ୍ବନ । ସେ ଆହୁରି ଏକ ନିବନ୍ଧରେ ଦର୍ଶାଇଛନ୍ତି ଯେ, ପରର ଉପାଦାନକୁ କିପରି ନିଜର ମୌଳିକ ସମ୍ପଦରେ ରୂପାନ୍ତରିତ କରାଯାଇ ପାରେ, 'ବର୍ଣ୍ଣବୋଧ' ହେଉଛି ତାହାର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ । ନଟବର ବାବୁଙ୍କର ଏହି ପ୍ରବନ୍ଧ ପ୍ରକାଶ ପାଇବା ପରେ ଏହାକୁ ଆଉ କେହି ଖଣ୍ଡନ କରି ନାହାନ୍ତି ।

ରାଧାନାଥଙ୍କୁ ଯୁଗ ପ୍ରବର୍ତ୍ତକ ଓ ସ୍ରଷ୍ଟା ଭାବରେ ଗ୍ରହଣ କରି ନିଆଯାଇଛି । ତାଙ୍କ ବିଷୟରେ ମନରେ ଅନେକ ଦ୍ୱନ୍ଦ୍ୱ ରହିଥିଲେ ମଧ ନଟବର ବାବୁ ରାଧାନାଥଙ୍କର ଦୁର୍ବଳତା

ଓ ଶକ୍ତି ଦୁଇଟି ବିଷୟକୁ ବିଚାର କରି ରାଧାନାଥ ରାୟ ଯେ ଓଡ଼ିଆ ସାହିତ୍ୟର ପଥ ପ୍ରବର୍ତ୍ତକ ଏହା ପ୍ରମାଣ କରିଛନ୍ତି । 'କେଦାର ଗୌରୀ' କାବ୍ୟ ୧୮୮୭ ଓ 'ତୁଳସୀ ସ୍ତବକ' ୧୮୯୪ ରେ ପ୍ରକାଶ ପାଇଥିଲା । 'କେଦାର ଗୌରୀ' ଓ 'ତୁଳସୀ ସ୍ତବକ'ର ସମୀକ୍ଷା କଲେ ଜଣାଯାଏ ଯେ, ବିଦେଶୀ ସାହିତ୍ୟରୁ କଥାବସ୍ତୁ ଆଣି ରାଧାନାଥ 'କେଦାର ଗୌରୀ' କାବ୍ୟକୁ ଏ ଦେଶର ପୌରାଣିକ କଥା ବୋଲି ଯେପରି ପ୍ରଚାର କରିଥିଲେ ସେହିପରି ତୁଳସୀ ରାମାୟଣର କେତେକାଂଶ ଅନୁବାଦ କରି ସେ ରଚନା କରିଥିବା ତୁଳସୀ ସ୍ତବକ ଯେ ନିଜସ୍ୱ ନୁହେଁ ଏହା ମଧ୍ୟ ନଟବର ବାବୁ ପ୍ରମାଣ କରିଛନ୍ତି । ରାଧାନାଥଙ୍କର ରଚନା ଗୁଡ଼ିକ ଐତିହାସିକ ଉପାଦାନରେ ଗଢ଼ି ଉଠିଥିଲେ ମଧ୍ୟ ସେଥିରେ ଥିବା ଚରିତ୍ରମାନଙ୍କ ଭିତରୁ କାହାରି ଗୋଟିଏ ଇତିହାସ ସହିତ ସମ୍ବନ୍ଧ ନାହିଁ । ଏକଥା କହିଲା ବେଳେ ନଟବର ବାବୁ ପ୍ରମାଣ କରିଛନ୍ତି ଯେ ଏହି ସାମନ୍ୟ ଦୋଷତ୍ରୁଟି ବାଦ୍ ଦେଲେ ରାଧାନାଥ ଯେ ଓଡ଼ିଆ ସାହିତ୍ୟର ଯୁଗ ପ୍ରବର୍ତ୍ତକ ଏଥିରେ ସନ୍ଦେହର ଅବକାଶ ନାହିଁ । ସତ୍ୟର ନିଷ୍ଠୁର ପ୍ରକାଶ ସହିତ, ଅସତ୍ୟକୁ ଚିହ୍ନାଇ ଦେବା ନଟବର ବାବୁଙ୍କର ବିଶେଷତ୍ୱ । କଥାରେ ଅଛି ଯେ ସତ୍ୟ କହିବ, ପ୍ରିୟକଥା କହିବ, କିନ୍ତୁ ଅପ୍ରିୟ ସତ୍ୟକଥା କହିବ ନାହିଁ । ନଟବର ବାବୁ ଏପରି ନୀତିର ଘୋର ବିରୋଧୀ । ସେ ସତ୍ୟ କଥା ହିଁ କହନ୍ତି । ଏବଂ ତାହା ଯେତେ ଅପ୍ରିୟ ହେଲେ ମଧ୍ୟ ପ୍ରକାଶ କରିବାକୁ ଭୁଲନ୍ତି ନାହିଁ । ତାଙ୍କର ମୌଳିକ ଦୃଷ୍ଟିକୋଣ ଓ ସତ୍‌ସାହସ ତାଙ୍କୁ ଓଡ଼ିଆ ସାହିତ୍ୟର ଜଣେ ପ୍ରତିଭାଧର ସମୀକ୍ଷକ ଭାବରେ ପ୍ରତିଷ୍ଠିତ କରିଛି । ବହୁ ଗ୍ରନ୍ଥ ପ୍ରଣେତା ନଟବର ବାବୁଙ୍କର ମୌଳିକ ଦୃଷ୍ଟିକୋଣ ତାଙ୍କର ଅନ୍ୟାନ୍ୟ ରଚନାରେ ମଧ୍ୟ ପ୍ରତିଫଳିତ ହୋଇଛି । କାହାରି ପ୍ରତି ଅସୂୟା ନରଖି ବା ଆଉ କାହା ପ୍ରତି ଅନୁକମ୍ପା ପ୍ରଦର୍ଶନ ନକରି ସେ ସାହିତ୍ୟର ସମୀକ୍ଷା କରଥିଲେ । ଏହି କାରଣରୁ ତାଙ୍କର ବସ୍ତୁନିଷ୍ଠ ଆଲୋଚନା ଏତେ ନିରପେକ୍ଷ ଓ ଗଭୀର ।

ମୁଁ ତାଙ୍କର ଜଣେ ଗୁଣଗ୍ରାହୀ । ଯେତେବେଳେ ଦେଖା ହୋଇଛି ସେତେବେଳେ ସେ କହିଛନ୍ତି ଓଡ଼ିଆ ସାହିତ୍ୟ ସମ୍ବନ୍ଧରେ, ସାମ୍ପ୍ରତିକ ସମୀକ୍ଷା ସାହିତ୍ୟ ବିଷୟରେ ଏବଂ ଅନେକ ସାହିତ୍ୟିକ କିପରି ଗଭୀର ଅଧ୍ୟୟନ ନକରି ପ୍ରବନ୍ଧରେ ବିଭିନ୍ନ ମତ ପ୍ରକାଶ କରନ୍ତି ସେ ବିଷୟରେ । ସେ ଯୁକ୍ତି କରିବାକୁ ଭଲ ପାଆନ୍ତି । ତାଙ୍କ ମତ କେହି ଖଣ୍ଡନ କରୁ ଏହା ସେ ସ୍ୱାଗତ କରନ୍ତି । କିନ୍ତୁ ସତ୍ୟକୁ ଚିହ୍ନଟ କରିବା ଓ ସେଥିରେ ନିରପେକ୍ଷତା ଅବଲମ୍ବନ କରିବା ଉପରେ ସେ ଗୁରୁତ୍ୱ ଆରୋପ କରିଛନ୍ତି । ଦୁର୍ଭାଗ୍ୟର ବିଷୟ ଏହି ଯେ ତାଙ୍କ ପରେ ଓଡ଼ିଆ ସାହିତ୍ୟର ପ୍ରକୃତ ସମୀକ୍ଷା ହେଉନାହିଁ । ସମୀକ୍ଷକମାନେ ପକ୍ଷଭୁକ୍ତ ହୋଇ ଯାଉଥିବାରୁ ସେମାନଙ୍କର ଦୃଷ୍ଟି ଝାପ୍‌ସା ହୋଇଯାଉଛି ।

ତାଙ୍କର ପ୍ରଥମ ଶ୍ରାଦ୍ଧ ବାର୍ଷିକରେ ଆଜି ସେ ମନେ ପଡୁଛନ୍ତି । ତାଙ୍କୁ ପ୍ରଣାମ କରୁଛି ।

*୯-ଷ୍ଟେସନ ସ୍କୋୟାର,*
*ଭୁବନେଶ୍ୱର*

# ଆଉଟର ପୁନଶ୍ଚ
# ଏକ ଅନାବଶ୍ୟକ ଆଲୋଚନା

*ଶ୍ରୀ ଭାନୁ ପ୍ରକାଶ ଯୋଷୀ*

"ଆହୁଟ ହାତ କଳେବର ଭିତର
କାହିଂ ଥାଇଂ ଦେଇଛି ଉତ୍ତର
ତଦପ୍ରାନ୍ତେ ଯଦି, ଜପା ଜପ ନାହିଁ
ମଲେ ପ୍ରାଣ ପୁଣି କାହିଂ ସମ୍ଭାଇ ।"

ଅନ୍ୟ ପାଠର ଅନୁରୂପ ଅଂଶ-
"ଆଉଠ ହାତ କଳେବର ଭିତର
କାହିଂ ଥାଇ ଜୀବ ଦେଉଛି ଉତ୍ତର
ହେତୁମତୀ ଦେଇଂ ବୁଝ ମନୁ-ରାୟେ
ମରିଗଲେ ପ୍ରାଣ କାହିଂ ସମ୍ଭାୟେ ।"
- ଡଃ ସାମନ୍ତରାୟଙ୍କ ଦ୍ୱାରା ଶିଶୁବେଦର ଶୁଦ୍ଧପାଠ

ଏବଂ
"ଆହୁଟ ଯବ ପ୍ରମାଣେ ଅଛି ଅପୋଡ଼ା ଭୂମିଖଣ୍ଡି
ବିଜୟେ ମାହେଶ୍ୱରୀ ତହିଂ ବିନ୍ଧ୍ୟଙ୍କ ନାମେ ଚଣ୍ଡୀ ।"
- ସାରଳା ମହାଭାରତ: ମଧ୍ୟପର୍ବ
(ଓଡ଼ିଶା ସାହିତ୍ୟ ଏକାଡ଼େମୀ ପ୍ରକାଶିତ)

ଡଃ ନଟବର ସାମନ୍ତରାୟ ଏକ ଅନନ୍ୟ ପ୍ରତିଭାର ଅଧିକାରୀ । ଭାଷାତାତ୍ତ୍ୱିକ ଆଲୋଚନା ଓ ପ୍ରୟୋଗ ବିଧି ଉପରେ ତାଙ୍କର ଆଲୋଚନା ଆଧାରିତ ହୋଇଥିବାରୁ ସମାଲୋଚନା ସାହିତ୍ୟ କ୍ଷେତ୍ରରେ ସେ ନୂତନ ଦିଗ୍‌ଦର୍ଶକ ରୂପେ ପରିଚିତ ହୋଇ ପାରିଛନ୍ତି । ଅଜ୍ଞାନବଶତଃ ଭୁଲ୍ ତଥ୍ୟକୁ ପାଥେୟ କରି ଆଲୋଚନା କରିବାର ଧାରାକୁ ସମ୍ପୂର୍ଣ୍ଣ ଭାବେ ପରିହାର କରି, ଅତୀତର ତ୍ରୁଟିକୁ ଦର୍ଶାଇ ବାସ୍ତବତାରେ ଉପନୀତ ହେବା ଡଃ ସାମନ୍ତରାୟଙ୍କ ସମାଲୋଚନା ସାହିତ୍ୟର ବୈଶିଷ୍ଟ୍ୟ ଅଟେ । ସେଥିପାଇଁ ଅନେକ ଇର୍ଷାଳୁଙ୍କ କୋପଭାଜନ ହୋଇଥିବା କୁହାଯାଏ ।

କେତେକ ଗବେଷକ 'ଶିଶୁବେଦ'କୁ* ପ୍ରାକ୍ ସାରଳା ସାହିତ୍ୟ ରୂପେ ନିରୂପିତ କରିବାର ଔଚିତ୍ୟ କେତେଦୂର ରହିଛି ତାହା ନିର୍ଣ୍ଣୟ କରିବାକୁ ସେଥିରେ ବ୍ୟବହୃତ 'ଆହୁଟ' ଶବ୍ଦକୁ ବାଛିଛନ୍ତି । ସେ ପ୍ରମାଣ କରି ଦେଖାଇ ଦେଇଛନ୍ତି ଯେ 'ଆହୁଟ' ଶବ୍ଦକୁ ସେମାନେ

ଠିକ୍ ଭାବରେ ବୁଝି ପାରିନାହାନ୍ତି । ଏଣୁ ସେମାନଙ୍କ 'ଶିଶୁବେଦ' ସମ୍ପର୍କୀୟ ମତାମତ ଆଧାରହୀନ ଅଟେ । 'ନବରବି' ପତ୍ରିକାର ୧୯୭୩ ମସିହା ଜାନୁଆରୀ ସଂଖ୍ୟାରେ ଡଃ ସାମନ୍ତରାୟ 'ଆହୁଟ' ଶୀର୍ଷକ ପ୍ରବନ୍ଧରେ ବଳିଷ୍ଠ ଯୁକ୍ତିବଳରେ 'ଶିଶୁବେଦ'ର ପ୍ରୋକ୍ତ ଉଦ୍ଧୃତିର ଶୁଦ୍ଧିପାଠ ଓ 'ଆହୁଟ'ର ଉପଯୁକ୍ତ ଅର୍ଥ ସାଢ଼େ ତିନି ବୋଲି ନିର୍ଣ୍ଣୟ କରିଦେଇଛନ୍ତି । 'ଆସନ୍ତାକାଲି'ର ୧୯୭୬ ମସିହା ମାର୍ଚ୍ଚ ସଂଖ୍ୟାରେ ପଣ୍ଡିତ କୋରାମଣି ପାଠୀଶର୍ମାଙ୍କ 'ଆହୁଟ' ଶୀର୍ଷକ ପ୍ରବନ୍ଧ ପ୍ରକାଶ ପାଇଲା । କହିବା ବାହୁଲ୍ୟ ଯେ, ଏଇ ପ୍ରବନ୍ଧ ଦ୍ୱାରା ଡଃ ସାମନ୍ତରାୟଙ୍କ ପୂର୍ବୋକ୍ତ ପ୍ରବନ୍ଧର ମତାମତକୁ ଖଣ୍ଡନ କରିବା ଛଡ଼ା ଏହାର ଆଉ କିଛି ଅନ୍ୟ ଉଦ୍ଦେଶ୍ୟ ନୁହେଁ । ପାଠୀଶର୍ମାଙ୍କ ଏଇ ପ୍ରତି ଆଲୋଚନା ବିତର୍କରୁ ବିବାଦ ରୂପ ନେବା ପୂର୍ବରୁ 'ଆସନ୍ତାକାଲି' ୧୯୭୬ ଜୁନ୍ ଓ ଜୁଲାଇ ସଂଖ୍ୟାରେ ପ୍ରକାଶିତ ଡଃ ସାମନ୍ତରାୟଙ୍କ 'ଆହୁଟର ପରିଶିଷ୍ଟ' ପ୍ରବନ୍ଧ ବିତର୍କ ପାଇଁ ଆଉ ସୁଯୋଗ ଦେଲା ନାହିଁ । ପାଠୀଶର୍ମା ତାଙ୍କ ମତାମତକୁ କୌଣସି ବଳିଷ୍ଠ ଯୁକ୍ତିବଳରେ ଆଉ ପ୍ରତିପାଦନ କରିଥିବା ମୋର ଦୃଷ୍ଟିକୁ ଆସିନାହିଁ ।

ସମାଜରେ ପ୍ରତିଷ୍ଠିତ ବିଶ୍ୱାସ, ଧର୍ମଧାରା ଓ ପ୍ରବନ୍ଧରେ ପ୍ରଦତ୍ତ ବିଭିନ୍ନ ଉଦ୍ଧୃତି ଗୁଡ଼ିକ (ଏମାନଙ୍କ ବ୍ୟତୀତ ଆଉ କେତେକ ଉଦ୍ଧୃତି ମୋ ଜ୍ଞାତରେ ଥିଲେ ମଧ୍ୟ ଆଲୋଚନାକୁ ସୀମିତ କରିବାକୁ ଆଉ ଦେଉନାହିଁ )ବିଚାର କଲେ ଡଃ ସାମନ୍ତରାୟଙ୍କ ଉପରୋକ୍ତ ବିଷୟ ଉପରେ ନେଇଥିବା ସିଦ୍ଧାନ୍ତ ହିଁ ଉପଯୁକ୍ତ ବୋଲି ହୃଦବୋଧ ହୁଏ । 'ଆହୁଟ' ଶବ୍ଦର ଗଠନ ଇତିହାସକୁ ଅନୁଧାନ କଲେ ଜଣାଯାଏ ଯେ ଆହୁଟ-ଆହୁଠ-ଆଉଟ ଅନୁଧାନ କଲେ ଜଣାଯାଏ ଯେ ଆହୁଟ-ଆଉଠ- ଆଉଟ-ଅଉଠ-ଅଭଟ ଏକାର୍ଥବୋଧକ ଶବ୍ଦ ଅଟେ । ଏଣୁ ଏହା ପରେ ଆହୁଟର ଶବ୍ଦାର୍ଥ ପାଇଁ ପୁନଃ ଆଲୋଚନା ବା ପୁନଃ ସମୀକ୍ଷାର ଆବଶ୍ୟକତା ଅନୁଭୂତ ହୁଏ ନାହିଁ । ଜିଲ୍ଲା-କଟକ, କି: ବାଙ୍କୀ ବୈଦେଶ୍ୱର ପ୍ରଗନାଧୀନ ବାଲିପାହାଡ଼ ଗ୍ରାମ, ହାଲ ରାୟଗଡ଼ ଷ୍ଟେଟ୍ (ଜିଲ୍ଲା) ତେତଲା ଗ୍ରାମ ନିବାସୀ ବୁକ୍ ସେଲର ରଘୁନାଥ ପୁଷ୍ଟିଙ୍କ ଦ୍ୱାରା ରାୟଗଡ଼ ଷ୍ଟେଟ୍ ଅଞ୍ଚଳରୁ ସଂଗୃହୀତ, ସଂଶୋଧିତ ଓ ୧୯୨୮ରେ ପ୍ରକାଶିତ କବି ଈଶ୍ୱର ଦାସଙ୍କ ବିରଚିତ 'ଈଶ୍ୱର ଦାସିଆ ରାମଲୀଳା'ର କିସ୍କିନ୍ଧ୍ୟା କାଣ୍ଡରେ 'ଅଉଟ' ଶବ୍ଦର ପ୍ରୟୋଗ ଏବଂ ପାଦଟିକାରେ ଏହାର ଅର୍ଥ = ୩ ୳ (ସାଢ଼େତିନି )ର ଜାଜ୍ୱଲ୍ୟମାନ ଦୃଷ୍ଟାନ୍ତ । ଡଃ ସାମନ୍ତରାୟଙ୍କ ପ୍ରତ୍ୟେକ ଅଭିମତ ପୂର୍ଣ୍ଣତଃ ତଥ୍ୟଭିତ୍ତିକ ହୋଇଥିବାର ପ୍ରମାଣ ସୂଚାଉ ଥିବାରୁ ପାଠକ ଓ ଆଲୋଚକଙ୍କ ଅବଗତି ନିମନ୍ତେ ପୁଣି ଉତ୍ଥାପନ କରିବାକୁ ମୁଁ ଉଚିତ୍ ମନେ କଲି ।

ଏଇ ତଥ୍ୟକୁ ଆଧାର କରି ୧୯୭୬ ମସିହା ଅଗଷ୍ଟ ମାସରେ ଏ ଆଲୋଚକ (ପାଠକ କହିଲେ ବି ଚଳିବ) 'ନବରବି'ରେ ପ୍ରକାଶ ପାଇଁ ଏକ ପ୍ରବନ୍ଧ ରଚନା କରି ପଠାଇଥିଲା । ନିଜ କାର୍ଯ୍ୟକ୍ଷେତ୍ରରେ ଅସ୍ଥିରତା ଓ 'ନବରବି'ର ପ୍ରକାଶନରେ ଅନିୟମିତତା ଯୋଗୁଁ ଉକ୍ତ ପ୍ରବନ୍ଧ ପ୍ରକାଶ ପାଇଲା କି ନାହିଁ ଜାଣିବାର ସୁଯୋଗ ନଥିଲା । ପୁନଶ୍ଚ ପ୍ରବନ୍ଧର ପ୍ରକାଶ ପାଇଁ ଉଦ୍ୟମ କରିନଥିଲେ ମଧ୍ୟ ବିଭିନ୍ନ ସାହିତ୍ୟ ସମାରୋହରେ ସାମନ୍ତରାୟଙ୍କ ପ୍ରତିଭା ଉପରେ ଆଲୋକପାତ କରି ସାଙ୍କେତିକ ଅର୍ଥ ବହନ କରୁଥିବା ଏକ ସାରଳା ଯୁଗୀୟ ଶବ୍ଦ ତାଙ୍କ ଦ୍ୱାରା ଭାଷା ତାତ୍ତ୍ୱିକ ଆଲୋଚନା ଓ ପ୍ରୟୋଗ ବିଧି

ଉପରେ ପର୍ଯ୍ୟାଲୋଚିତ ହୋଇ ଯେପରି ଶବ୍ଦର ପ୍ରକୃତ ଅର୍ଥକୁ ପରିସ୍ଫୁଟ କଲା; ଠିକ୍ ସେଇପରି 'ଡଃ ସାମନ୍ତରାୟ -ପଦ୍ଧତି'ରେ ପଶ୍ଚିମ ଓଡ଼ିଶା ଓ ଉପାନ୍ତ ଅଞ୍ଚଳରେ ଥିବା ଲୁପ୍ତ ଓ ଜୀର୍ଣ୍ଣ ପୋଥି ଓ ପୁସ୍ତକକୁ ଉଦ୍ଧାର କରି ତହିଁରେ ସନ୍ନିହିତ ଭାଷା, ସାହିତ୍ୟ ତଥା କେତେକ ଦୁର୍ବୋଧ ମନେ ହେଉଥିବା ସାରଳା ଯୁଗୀୟ ଶବ୍ଦକୁ (ଯହିଁର କେତେକ ଶବ୍ଦ ଏବେ ବି ଏ ଅଞ୍ଚଳର ନିପଟ ମଫସଲରେ କଥିତ ହୁଏ) ପର୍ଯ୍ୟାଲୋଚନା କଲେ ଓଡ଼ିଆ ଭାଷାର ଉନ୍ମେଷକାଳୀନ ସ୍ୱରୂପର ଆଭାସ ମିଳନ୍ତା ବୋଲି ସମବେତ ସାହିତ୍ୟିକ ଓ ସାହିତ୍ୟ ପ୍ରେମୀଙ୍କ ପାଖରେ ଆଶା ପୋଷଣ କରିଆସିଛି । ଏ ଦିଗରେ ରୁଚି ରଖୁଥିବା ସାହିତ୍ୟ ପ୍ରେମୀଙ୍କ ଉଦ୍ୟମ ସର୍ବଦା ସ୍ୱାଗତଯୋଗ୍ୟ ।

ଉପରୋକ୍ତ 'ଈଶ୍ୱର ଦାସିଆ ରାମଲୀଳା' ଆଞ୍ଚଳିକ ଭାଷା ଓ ସଂସ୍କୃତି ଦ୍ୱାରା ପରିପୁଷ୍ଟ ହୋଇଥିବାରୁ ଏ ଅଞ୍ଚଳରେ ବେଶ ଲୋକପ୍ରିୟ ହୋଇ ପାରିଥିଲା ଏବଂ ଗ୍ରାମାଞ୍ଚଳରେ ଏ ଲୀଳା ବିଶେଷ ଭାବେ ଅଭିନୀତ ହେଉଥିବାର ଖବର ଅଛି । ପ୍ରକାଶକ ରଘୁନାଥ ପୃଷ୍ଟି ଆଦ୍ୟକାଣ୍ଡ ପ୍ରକାଶନର ଭୂମିକାରେ (ତା.୧୨.୫.୧୯୨୮ ଦିନ) ଏ ଗ୍ରନ୍ଥ ବଙ୍ଗଳା ପଦ ମିଶ୍ରିତ ଓ ହିନ୍ଦି ପ୍ରଭାବିତ ବୋଲି ସନ୍ଦେହ କରିବାର ଠିକ୍ ପର ମୂହୁର୍ତ୍ତରେ 'ଅନେକ ସ୍ଥଳରେ କେବଳ ସମ୍ବଲପୁର ଜିଲ୍ଲାର ପ୍ରଚଳିତ ପଦମାନ ପାୟା ଯାଉଅଛି । ଯଥା x x x x ଇତ୍ୟାଦି । ଏ ପଦମାନଙ୍କୁ ବଙ୍ଗଳାପଦ କହିବାକୁ ହେଉନାହିଁ, କାରଣ ଏ ଦେଶରେ ଏ ଭାଷା ପ୍ରଚଳିତ ଅଛି' ବୋଲି ଉଲ୍ଲେଖ କରି ଗ୍ରନ୍ଥର ମୌଳିକତାକୁ ଅସ୍ୱୀକାର କରି ନାହାନ୍ତି ।

୧୯୨୮ରେ ମଇ ଓ ଜୁନ୍ ମାସ ମଧରେ ରଘୁନାଥ ପୃଷ୍ଟିଙ୍କ ଦ୍ୱାରା ସଂଗୃହିତ, ସଂଶୋଧିତ ଓ ପ୍ରକାଶିତ ୪ଖଣ୍ଡ ପୁସ୍ତକ ଓ ମୋ ଦ୍ୱାରା ସଂଗୃହିତ ଈଶ୍ୱର ଦାସ ଭଣିତା 'ଅରଣ୍ୟକାଣ୍ଡ'ର ଜୀର୍ଣ୍ଣ ତାଳପତ୍ର ପୋଥିର ଭାଷା ଓ ବର୍ଣ୍ଣନା ପ୍ରାୟ ସମାନ ଥିବାବେଳେ ପରବର୍ତ୍ତୀ ସମୟରେ ତାଙ୍କ ପୁତ୍ର ବନମାଳୀ ପୃଷ୍ଟିଙ୍କ ଦ୍ୱାରା ସଂଗୃହୀତ, ସଂଶୋଧିତ ଏବଂ ପ୍ରକାଶିତ ଅନ୍ୟ ଦୁଇକାଣ୍ଡର ଭାଷା ଓ ବର୍ଣ୍ଣନା ଚାତୁରୀ ସମ୍ପୂର୍ଣ୍ଣ ଭିନ୍ନ ମନେହୁଏ । ଓଡ଼ିଶା ସାହିତ୍ୟ ଏକାଡେମୀ ପ୍ରକାଶିତ 'ଓଡ଼ିଆ ରାମ ସାହିତ୍ୟ' ପୁସ୍ତକର ୩୩ ପୃଷ୍ଠାରେ ଦ୍ୱିଜ ଈଶ୍ୱର ଦାସଙ୍କ 'ରାମ ଲୀଳାମୃତ' ପ୍ରସଙ୍ଗରେ ଏକ ଆଲୋଚନା ଅଛି । ଲେଖକ ଶ୍ରୀ ନୀଳମଣି ମିଶ୍ର କବିଙ୍କୁ ପ୍ରଥମେ ବଙ୍ଗାଳୀ ବୋଲି ସନ୍ଦେହ କରି ପର ମୂହୁର୍ତ୍ତରେ ପ୍ରାଚୀନ ଓଡ଼ିଆ ଶବ୍ଦ ପ୍ରୟୋଗକୁ ଗ୍ରନ୍ଥରେ ଦେଖି କବିଙ୍କୁ ବଙ୍ଗାଳୀ ବୋଲି କଳ୍ପନା କରିବା ସମୀଚୀନ ହେବନାହିଁ ବୋଲି ଉଲ୍ଲେଖ କରିଛନ୍ତି । ପୁସ୍ତକରେ ଦିଆ ଯାଇଥିବା ଉଦ୍ଧୃତିର ଭାଷା ଗୁଡ଼ିକ- ୧୯୨୮ରେ ପ୍ରକାଶିତ 'ଈଶ୍ୱର ଦାସିଆ ରାମଲୀଳା' ଓ ଏ ଅଞ୍ଚଳରୁ ପ୍ରାପ୍ତ ପୋଥିର ଭାଷା ମଧରେ ଢେର ପାର୍ଥକ୍ୟ ଅଛି । ଶ୍ରୀ ମିଶ୍ର ଦ୍ୱିଜ ଈଶ୍ୱର ଦାସଙ୍କ ଭଣିତାର ରାମାୟଣ ଗ୍ରନ୍ଥର ନାମ କରଣ 'ରାମ ଲୀଳାମୃତ' ଯଥାର୍ଥ ମନେ ହେଉଥିଲେ ମଧ 'ରାମଲୀଳା ମୃତରସ' ନାମ କରଣ ବିଭିନ୍ନ ପଦର ସମୀକ୍ଷାରୁ ଉପଯୁକ୍ତ ହୋଇଥିବ ବୋଲି ମୁଁ ମନେକରେ । ରଘୁନାଥ ପୃଷ୍ଟି 'ଈଶ୍ୱର ଦାସିଆ ରାମଲୀଳା' ପ୍ରକାଶନର ବହୁ ପୂର୍ବରୁ ସେ ପୀତବାସ ଭଣିତାର 'ପୀତବାସିଆ ରାମଲୀଳା' ପ୍ରକାଶ କରିଥିବା ପୁସ୍ତକର କଭର ପୃଷ୍ଠାର ବିଜ୍ଞାପନରୁ ଜଣାଯାଏ ।

ଦ୍ୱିଜ ଈଶ୍ୱର ଦାସଙ୍କ ଭଣିତାର ରାମଲୀଳାର ନାମକରଣ କବିଙ୍କ ପରିଚୟ ଲେଖାର ସାହିତ୍ୟିକ ମୂଲ୍ୟାଙ୍କନ ଏ ଆଲୋଚନାର ପରିସରଭୁକ୍ତ ନୁହେଁ- ଏଥିପାଇଁ ଏକ ସ୍ୱତନ୍ତ୍ର ଆଲୋଚନା ବିସ୍ତୃତ ଭାବେ କରାଯାଇ ପାରେ । ବର୍ତ୍ତମାନ 'ଈଶ୍ୱର ଦାସିଆ ରାମଲୀଳା, କିଷ୍କିନ୍ଧ୍ୟା କାଣ୍ଡ'ର ବ୍ୟବହୃତ ଅଭଟ ବା ଆହୁଟ ଶବ୍ଦ ପ୍ରୟୋଗ ଉପରେ ଆଲୋକପାତ କରାଯାଉ । ଏହି କାଣ୍ଡର (ପ୍ରକାଶ କାଳୀନ ଭୂମିକାରେ ପ୍ରକାଶ ସମୟ ୨୨.୬.୧୯୨୮ ଦିଆ ଯାଇଥିବା ବେଳେ ମୁଦ୍ରକ ବିବରଣୀରେ ଜଗନ୍ନାଥ ପ୍ରେସ, ପୁରୀ ୧୯୩୧ ଦିଆ ଯାଇଛି) ପୃଷ୍ଠା-୨ର ୨ୟ ଛାନ୍ଦର ୫ମ ପଦରେ ଅଛି-

''ଅଜୟ ସେ ନୃପମଣି ସ୍ୱର୍ଗ ବାସବକେ ଜିଣି;
ଅଭଟ କୋଟି ତା ପାଟରାଣୀ
କୈକୟୀ କୌଶଲ୍ୟା ରାଣୀ ଆଉ ସୁମିତ୍ରା ତରୁଣୀ
ସମୟେ ଭୋଗ କଲେ ମେଦିନୀ ହେ । ।୫।''

ଏବଂ ପଦଟିକା ଅଭଟ = ୩ ୳ (ସାଢ଼େ ତିନି) ।

ଦଶରଥଙ୍କ ରାଣୀ ସଂଖ୍ୟା ସୂଚାଇବାକୁ ଅଭଟ ଶବ୍ଦର ପ୍ରୟୋଗ କରାଯାଇଛି, ଏଥିରେ ତିଳେ ହେଲେ ସନ୍ଦେହ ନାହିଁ । ଭିନ୍ନ ଭିନ୍ନ ରଚୟିତାଙ୍କ ରାମାୟଣରେ ଦଶରଥଙ୍କ ରାଣୀ ସଂଖ୍ୟା ଭିନ୍ନ ଭିନ୍ନ । ବାଲ୍ମିକୀ ରାମାୟଣର ସଂକ୍ଷିପ୍ତ ଗଦ୍ୟାନୁବାଦ ପୁସ୍ତକର ଭୂମିକାରେ (ପୃଷ୍ଠା-୧୨) ଅନୁବାଦକ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଦଶରଥଙ୍କ ତିନିଶ ପଞ୍ଚାଶ ରାଣୀ ଥିବା ଉଲ୍ଲେଖ କରିଥିବା ବେଳେ ଓଡ଼ିଶା ସାହିତ୍ୟ ଏକାଡେମୀ ପ୍ରକାଶିତ ବିଶ୍ୱନାଥ ଖୁଣ୍ଟିଆଙ୍କ 'ରାମଲୀଳା'ର ପୃଷ୍ଠା ୪୪ରେ ଅଛି-

''ସାତଶ ପଞ୍ଚାଶ କଉଶଲ୍ୟା ଆଦି ରାଜାଙ୍କ ପାଟ ମହିଷୀ
ଧିକ୍‌କାର କରନ୍ତି କୈକେୟୀଙ୍କି ଚାହିଁ ରାମ ହେଲେ ତୋର ଦୋଷୀ ।''

ଏବଂ (୬) ପଦଟିକାରେ ଅଛି-

''୬- ତିନିଶ ପଞ୍ଚାଶ ପୁସ୍ତକ ପାଠ କିନ୍ତୁ ଦଶରଥଙ୍କର ସାତଶ ପଞ୍ଚାଶ ରାଣୀ ଥିବାର ବର୍ଣ୍ଣନା ଅନ୍ୟତ୍ର ଉପଲବ୍ଧ ହୁଏ ।'' ଠିକ୍ ସେଇପରି, ସାରଳା କାଳୀନ ସିଦ୍ଧେଶ୍ୱର ଦାସଙ୍କ (ଏପରିକି କେତେକ ଆଲୋଚକ ଏହାଙ୍କୁ ସାରଳାଦାସ ରୂପେ ମଧ୍ୟ ଉପସ୍ଥାପିତ କରନ୍ତି) ଦାଣ୍ଡିବୃତ୍ତରେ ରଚିତ 'ବିଚିତ୍ର ରାମାୟଣ' (ଶ୍ରୀ ସଚ୍ଚିଦାନନ୍ଦ ମିଶ୍ରଙ୍କ ୧୯୮୦ରେ ସମ୍ପାଦିତ ଓ ପ୍ରକାଶିତ)ର ଅନେକ ସ୍ଥଳରେ ଦଶରଥଙ୍କ ଏକୋଇଶ ଶହ ରାଣୀ ଥିବା ବର୍ଣ୍ଣନା ଦେଖିବାକୁ ମିଳେ । ଦୃଷ୍ଟାନ୍ତ ସ୍ୱରୂପ ଏଠାରେ ଗୋଟାଏ ପଦ ଦିଆଗଲା-

(ଏକୋଇଶ ଶତ ଭାରିଯା ପାଟ ତିନିରାଣୀ କକୟା ସୁମିତ୍ରା)
ଏ ମୋହର ଜନନୀ ।। ୭୯ ।। ପୃଷ୍ଠା ୩୬୩ ।

ସବୁଠୁଁ ଆଶ୍ଚର୍ଯ୍ୟ ବିଷୟ 'ଈଶ୍ୱର ଦାସିଆ ରାମଲୀଳା'ର କିଷ୍କିନ୍ଧ୍ୟା କାଣ୍ଡରେ ଦଶରଥଙ୍କ ରାଣୀ ସଂଖ୍ୟା ସୂଚାଇବାକୁ ଅଭଟ ଶବ୍ଦ ପ୍ରୟୋଗ ସାଢ଼େ ତିନି ଅର୍ଥରେ (ପଦଟିକା ସହ) ହୋଇଥିବା ବେଳେ ପୂର୍ବରୁ ଅଯୋଧ୍ୟା କାଣ୍ଡର ୧୯ ପୃଷ୍ଠା ୨୩ଶ ଛାନ୍ଦର ୭ମ ପାଦରେ ଉଲ୍ଲେଖ ଅଛି-

''ସାତଶ ପଞ୍ଚାଶ ଦଶରଥ ରାଜା-ରାଣୀ
ସବାଇ ମୁଖେ ଶୁଣିଲ ନା ଯା ରଘୁମଣି '' । ୭ ।

ଦଶରଥଙ୍କ ରାଣୀ ସଂଖ୍ୟା ନିରୂପଣ କରିବା ବର୍ତ୍ତମାନ ଆମର ଉଦ୍ଦେଶ୍ୟ ନୁହେଁ । ବର୍ତ୍ତମାନ ଆମର ମୁଖ୍ୟ ଉଦ୍ଦେଶ୍ୟ ହେଉଛି ଡଃ ସାମନ୍ତରାୟଙ୍କ ନିରୂପିତ 'ଆହୁଟ'ର ଅର୍ଥ ସାଢ଼େ ତିନି; ଯାହାକି ଓଡ଼ିଆ ଭାଷାର ପ୍ରକାଶିତ ପୁସ୍ତକରେ ମଧ୍ୟ ଦୃଷ୍ଟାନ୍ତ ପାଇଁ ଉପଲବ୍ଧ ହୁଏ ।

(* ୧୯୭୩- ଜାନୁଆରୀ ସଂଖ୍ୟା 'ନବରବି'ରେ ଆହୁଟ ସମ୍ପର୍କୀୟ ପ୍ରବନ୍ଧ ପ୍ରକାଶ ପାଇଲା ପରେ ଡଃ ସାମନ୍ତରାୟଙ୍କ 'ଶିଶୁବେଦ ଓ ସୂକ୍ଷ୍ମବେଦ' ଶୀର୍ଷକ ପ୍ରବନ୍ଧ ୧୯୭୫- ଏପ୍ରିଲ ମାସ ବିଷୁବ ସଂଖ୍ୟା 'ଝଙ୍କାର'ରେ ପ୍ରକାଶିତ ହୋଇଛି ।

*ପୂର୍ବତନ ବିଧାୟକ, ନୂଆପଡ଼ା*
*ଗ୍ରାମ/ପୋ - ଭେଲା, ଜି: ନୂଆପଡ଼ା-୭୬୬୧୦୬*

## ନଟବର ବାଣୀ

ସାହିତ୍ୟିକ ଭାଷାର ଏକ ସୁମହାନ୍ ଗୌରବ ଯେ ଏ ଭାଷା ମାଧ୍ୟମରେ ଉଚ୍ଚଚିନ୍ତା ଅତି ସହଜରେ ପ୍ରକାଶ କରି ହୁଏ । ଏ ଭାଷାର ଗାମ୍ଭୀର୍ଯ୍ୟ ଓ ମାଧୁର୍ଯ୍ୟ ସାଧାରଣ ଚିତ୍ତକୁ ମୁଗ୍ଧ କରିଥାଏ ।

*ଗଳ୍ପ ନୁହେଁ ସମାଲୋଚନା (୧୯୬୩) ପୃ୨୮*

ସାହିତ୍ୟ ସମୀକ୍ଷା ଏକ ଜାତୀୟ ସମ୍ପଦ । ତା'ର ସାରାସାର ପରୀକ୍ଷା କରି ଦେଖିବା ସମସ୍ତଙ୍କର ଏକ ପରମ କର୍ତ୍ତବ୍ୟ । ସମୀକ୍ଷାର ସାରବତ୍ତା ପରୀକ୍ଷା କଲାବେଳେ ସମାଲୋଚକର ବ୍ୟକ୍ତିତ୍ୱ ପ୍ରତିବନ୍ଧକ ରୂପେ ଦେଖାଦେବା କିମ୍ବା ସେପରି ଆଲୋଚନାକୁ ଜଣକର ସମ୍ମାନହାନିକର ବୋଲି ଭାବି ନେବା ଆଦୌ ଉଚିତ ନୁହେଁ । କାରଣ, ବ୍ୟକ୍ତି ଓ ତାର ସମୀକ୍ଷା ଏ ଉଭୟଙ୍କୁ ସମାଲୋଚନା ବେଳେ ଏକ କରିଦେବା ଅତ୍ୟନ୍ତ ଅସୁନ୍ଦର । ବ୍ୟକ୍ତି ସର୍ବାଦୌ ନମସ୍ୟ ଓ ପୂଜ୍ୟ; କିନ୍ତୁ ତାର ସମୀକ୍ଷା ଅନ୍ୟର ସମାଲୋଚନାର ସମ୍ମୁଖୀନ ହେବାକୁ ବାଧ୍ୟ । ସମାଲୋଚନାରେ ମତାନୈକ୍ୟ ଅସମୀଚୀନ ନୁହେଁ; ସମାଲୋଚନା ଓ ପ୍ରତିସମାଲୋଚନା ନ ହେଲେ ସାହିତ୍ୟ ସମୀକ୍ଷାର ଅଗ୍ରଗତି ଅସମ୍ଭବ ।

*ଓଡ଼ିଆ ବୈଷ୍ଣବ ସାହିତ୍ୟ (୧୯୫୯) ନିଜକଥା*

# ସାହିତ୍ୟ ଇତିହାସକାର ଡଃ ସାମନ୍ତରାୟ

ଡଃ ନିଶାମଣି ମିଶ୍ର

'ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩-୧୯୨୦)', ଡଃ ନଟବର ସାମନ୍ତରାୟଙ୍କର ଏକ ଉପାଦେୟ ଗ୍ରନ୍ଥ । ଏହା ଏକ ଗବେଷଣାମୂଳକ ପ୍ରବନ୍ଧ । ଏହି ପ୍ରବନ୍ଧଟିକୁ ପ୍ରସ୍ତୁତ କରିବା ପାଇଁ ତାଙ୍କୁ ଦୀର୍ଘ ବାରବର୍ଷ ସମୟ ଲାଗିଥିଲା । ଗ୍ରନ୍ଥଟିର ପ୍ରଥମ ପ୍ରକାଶନ କାଳ ହେଉଛି ୧୯୬୪ ମସିହା । ନିଜକଥାରେ ସେ ଲେଖିଛନ୍ତି - ''ଆଧୁନିକ ଓଡ଼ିଆ ସାହିତ୍ୟର ଇତିହାସ ପ୍ରଣୟନ ପାଇଁ ୧୯୫୧ ସାଲରୁ ମୁଁ ଉପାଦାନ ସଂଗ୍ରହ କରିଥିଲି ।'' ବାରିପଦାରେ ଅବସ୍ଥାନ କାଳରେ ସେ ଐତିହାସିକ ପରମାନନ୍ଦ ଆଚାର୍ଯ୍ୟଙ୍କ ସଂସ୍ପର୍ଶରେ ଆସିଥିଲେ । ଐତିହାସିକ ଆଚାର୍ଯ୍ୟ ଥିଲେ ତାଙ୍କ ଗବେଷଣାର ପଥ ପ୍ରଦର୍ଶକ । ସେ ନିଜେ ଏହା ସ୍ୱୀକାର କରିଅଛନ୍ତି । ତାଙ୍କ ମତରେ-''ତା'ଙ୍କ ବାସଭବନର ଲାଇବ୍ରେରୀରେ ସଂଗୃହିତ ବହୁ ପୁରୁଣା ପୁସ୍ତକ, ବିଶେଷତଃ ଦୀର୍ଘ ୪୦ ବର୍ଷର 'ଉତ୍କଳ ସାହିତ୍ୟ' ଓ ବିଭିନ୍ନ ବର୍ଷର 'ଉତ୍କଳ ପ୍ରଭା' 'ମୁକୁର' 'ସହକାର' 'ନବଭାରତ' ପ୍ରଭୃତି ବିଭିନ୍ନ ପତ୍ରିକା ଅଧ୍ୟୟନ କରିବାର ସୁଯୋଗ ପାଇଥିଲି । '' ଐତିହାସିକ ଆଚାର୍ଯ୍ୟ ସାହିତ୍ୟ ଉପରେ ଗବେଷଣା କରିବାର ଯଥାର୍ଥ ମାର୍ଗ ତାଙ୍କ ନିକଟରେ ଉନ୍ମୋଚନ କରିଦେଇଥିଲେ । ଜଣେ ଯଥାର୍ଥ ଗବେଷକଙ୍କ ଦୃଷ୍ଟିକୋଣ କିପରି ହେବା ଉଚିତ୍ ତାହା ସେ ପରମାନନ୍ଦ ଆଚାର୍ଯ୍ୟଙ୍କ ଠାରୁ ଶିଖିଥିଲେ । ଡଃ ସାମନ୍ତରାୟ ଗବେଷଣାରେ ଐତିହାସିକ ପଦ୍ଧତିକୁ ଅନୁକରଣ କରିଅଛନ୍ତି । ଏ କ୍ଷେତ୍ରରେ ସେ ଶ୍ୟାମସୁନ୍ଦର ରାଜଗୁରୁଙ୍କର ସୁଯୋଗ୍ୟ ଉତ୍ତରାଧିକାରୀ ପରି ମନେହୁଏ । ସାହିତ୍ୟର ଇତିହାସ ଜାଣିବାକୁ ହେଲେ ଦେଶ ଓ ସମାଜର ଇତିହାସକୁ ମଧ୍ୟ ଅନୁଶୀଳନ କରିବାକୁ ହେବ । କାରଣ ସମାଜ ଓ ସାହିତ୍ୟ ପରସ୍ପର ପରିପୂରକ । ସେଥିପାଇଁ ଡଃ ସାମନ୍ତରାୟ ଆଧୁନିକ ଇତିହାସର ପୃଷ୍ଠଭୂମିକୁ ତନ୍ନ ତନ୍ନ କରି ଆଲୋଚନା କରିଛନ୍ତି । 'ପ୍ରାଗ୍‌ଭାଷ'ରେ ସେ ଲେଖିଛନ୍ତି- ''ସାହିତ୍ୟ ମାନବ ଜୀବନର କଳାଗତ ପ୍ରତିଲିପି ମାତ୍ର । ସାହିତ୍ୟ ସ୍ରଷ୍ଟା ସମାଜ ତଥା ନିଜ ବ୍ୟକ୍ତିଗତ ଜୀବନଧାରାରୁ ରସ ସଂଗ୍ରହ କରି ସାର୍ଥକ କଳା ଭିତରେ ତାକୁ ଫୁଟାଇ ଉଠାଇଥାଏ । ସମାଜ ଓ ବ୍ୟକ୍ତିଗତ ଜୀବନ ମଧ୍ୟ ରାଜନୈତିକ, ଧର୍ମଗତ, ଅର୍ଥନୈତିକ ଓ ଅନ୍ୟାନ୍ୟ ବହୁବିଧ ପାରିପାର୍ଶ୍ୱିକ ଅବସ୍ଥା ଦ୍ୱାରା ନିୟନ୍ତ୍ରିତ ହୁଏ । ତେଣୁ ଆଧୁନିକ ଓଡ଼ିଆ ସାହିତ୍ୟର ବିକାଶଧାରା ପର୍ଯ୍ୟାଲୋଚନା କରିବା ବେଳେ ତା'ର ପୃଷ୍ଠଭୂମିର ବିଶ୍ଳେଷଣ ଏକାନ୍ତ ଅପରିହାର୍ଯ୍ୟ ବୋଲି ମନେହୁଏ ।'' ଇଂରେଜମାନଙ୍କର ଓଡ଼ିଶା ଅଧିକାର ସାଧାରଣ ଭାବେ ଏକ ରାଜନୈତିକ ଘଟ ପରିବର୍ତ୍ତନର ଦ୍ୟୋତକ ନୁହେଁ, ତାହା ଓଡ଼ିଶାର ଏକ ନୂତନ ସାମାଜିକ, ଅର୍ଥନୈତିକ, ଧର୍ମଗତ ଜୀବନ ଓ ଚିନ୍ତାଧାରାର ପ୍ରବର୍ତ୍ତକ, ପ୍ରତିଷ୍ଠାପକ ମଧ୍ୟ । xxxx ଓଡ଼ିଆ ଜାତିର ଏହି ନୂତନ ସୃଷ୍ଟ ଚିତ୍ତବୃତ୍ତି ଉପରେ ଆଧୁନିକ ସାହିତ୍ୟ ପ୍ରତିଷ୍ଠିତ । ଲେଖକ ଏଇ ଦୃଷ୍ଟିଭଙ୍ଗୀ ନେଇ ସାହିତ୍ୟର ଇତିହାସ ଆଲୋଚନା କରିଛନ୍ତି । ଆଧୁନିକ

ସାହିତ୍ୟ ସୃଷ୍ଟି କରିବା ପାଇଁ ଆଧୁନିକ ରୁଚି ସମ୍ପନ୍ନ ହେବା ଉଚିତ । ଏଥିପାଇଁ ଆଧୁନିକ ଶିକ୍ଷା ଏକାନ୍ତ ଆବଶ୍ୟକ । ଇଂରେଜମାନଙ୍କର ଶାସନ ସମୟରେ ଓଡ଼ିଶାରେ ସ୍କୁଲ, କଲେଜ ପ୍ରତିଷ୍ଠା ଓ ଶିକ୍ଷାର ପ୍ରସାର ଦ୍ୱାରା ଦେଶରେ ଆଧୁନିକ ରୁଚିସମ୍ପନ୍ନ ଲୋକ ଦେଖାଦେଲେ । ଏଇ ଆଧୁନିକ ରୁଚିସମ୍ପନ୍ନ ଶିକ୍ଷିତ ଶ୍ରେଣୀ ଉନ୍ନତ ସାହିତ୍ୟ ଅନୁକରଣରେ ଯେଉଁ ସାହିତ୍ୟ ସୃଷ୍ଟି କଲେ, ତାକୁ ଗ୍ରହଣ କରିବା ପାଇଁ ସେହିପରି ଶିକ୍ଷିତ ଗୋଷ୍ଠି ଆବଶ୍ୟକ । ଶିକ୍ଷାର ପ୍ରସାର ଦ୍ୱାରା ପାଠଶାଳାରୁ କଲେଜ ପର୍ଯ୍ୟନ୍ତ ନୂତନ ଭାବଧାରା ଓ ଆଧୁନିକ ଦୃଷ୍ଟିକୋଣ ସମ୍ପ୍ରସାରିତ ହେଲା । ଫଳରେ ଆଧୁନିକ ସାହିତ୍ୟର ସ୍ରଷ୍ଟା, ସୃଷ୍ଟି ଓ ଗ୍ରହୀତା ଏକ ସୂତ୍ରରେ ଗ୍ରନ୍ଥିତ ହେଲେ । ଲେଖକଙ୍କ ମତରେ- ''ଆଧୁନିକ ସାହିତ୍ୟ ବୋଲି ଆମେ ଆଜି ଯେଉଁ ସାହିତ୍ୟକୁ ବୁଝୁ ତାହା ପ୍ରାଚ୍ୟ-ପାଶ୍ଚାତ୍ୟ ଶିକ୍ଷା-ସଭ୍ୟତା-ସଂଘର୍ଷର ଏକ ଅମୃତମୟ ଫଳ ବ୍ୟତୀତ ଅନ୍ୟ କିଛି ନୁହେଁ ।'' କେତେକାଂଶରେ ଏହା ସତ୍ୟ । ଲୋକେ ଶିକ୍ଷିତ ହେବାରୁ ଦୃଷ୍ଟିକୋଣ ବଦଳିଗଲା । ଇଂରାଜୀ ଭାଷା ଶିଖି ଆମେ ପାଶ୍ଚାତ୍ୟ ସାହିତ୍ୟକୁ ଅନୁଧ୍ୟାନ କଲୁ । ପାଶ୍ଚାତ୍ୟ ସଭ୍ୟତା ସ୍ପର୍ଶ କରିବାରୁ ଆମେ ପ୍ରଚଳିତ ସଭ୍ୟତା ଓ ସଂସ୍କୃତିର ସଂସ୍କାର ଚାହିଁଲୁ । ଫଳରେ ଗୋପାଳ ବାବୁଙ୍କ ପରି କେତେକ ଶିକ୍ଷିତ ଯୁବକ ନିଜ ବାପାଙ୍କୁ କିଆ ବୁଦାକୁ ପକାଇ ଦେବାକୁ ଆଦେଶ ଦେଲେ (ଫକୀର ମୋହନଙ୍କର 'ଡାକମୁନିସି' ଗଳ୍ପ ଦ୍ରଷ୍ଟବ୍ୟ) । ପ୍ରାଚ୍ୟ ସଂସ୍କୃତି ଓ ସଭ୍ୟତା ତ୍ୟାଗ ଉପରେ ପ୍ରତିଷ୍ଠିତ ଥିଲା । କିନ୍ତୁ ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତା ଆମକୁ ଭୋଗ ଆଡ଼କୁ ମୁହାଁଇଲା । ଆଧୁନିକ ସାହିତ୍ୟରେ ମଧ୍ୟ ଏହାର ପ୍ରତିଫଳନ ଦେଖିବାକୁ ମିଳିଲା । ଆଧୁନିକ ଶିକ୍ଷା ଦ୍ୱାରା ଆମେ ପାଶ୍ଚାତ୍ୟ ଜ୍ଞାନ ବିଜ୍ଞାନ ଓ ସାହିତ୍ୟ ସମ୍ପର୍କରେ ବହୁକଥା ଜାଣିଲୁ । ସମୟ କ୍ରମେ ଏହା ଏକ ସ୍ୱତନ୍ତ୍ର ଶିକ୍ଷିତ ସମ୍ପ୍ରଦାୟ ସୃଷ୍ଟି କଲା ଏବଂ ଏହି ଶିକ୍ଷିତ ସମ୍ପ୍ରଦାୟ ଦେଶର ଭାଗ୍ୟ ନିୟନ୍ତ୍ରଣ ଦିଗରେ ସକ୍ରିୟ ଅଂଶ ଗ୍ରହଣ କଲେ । ଏ ସମ୍ପର୍କରେ ଲେଖକ କହି ଅଛନ୍ତି ଯେ ଆଧୁନିକ ସାହିତ୍ୟ ସୃଷ୍ଟିରେ ରେଭେନ୍ସା କଲେଜର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏହି କଲେଜରୁ ସତ୍ୟବାଦୀ ଦଳ, ସବୁଜ ଦଳ, ମାୟାଧର ମାନସିଂ, ସଚ୍ଚିଦାନନ୍ଦ ରାଉତରାୟ, ଗୋପିନାଥ ମହାନ୍ତି, କାହ୍ନୁ ଚରଣ ମହାନ୍ତି ପ୍ରଭୃତି ସାହିତ୍ୟ ସୃଷ୍ଟି କରି ଆଧୁନିକ ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କଲେ । ପୁରାତନ ପ୍ରତି ବିତୃଷ୍ଣା, ଆଧୁନିକତା ସୃଷ୍ଟିର ସହାୟକ ହୁଏ । ଠିକ୍ ସେହିପରି ଘଟିଲା ଓଡ଼ିଆ ସାହିତ୍ୟ କ୍ଷେତ୍ରରେ । ଆଧୁନିକ ରୁଚିସମ୍ପନ୍ନ ଶିକ୍ଷିତ ଯୁବକମାନଙ୍କୁ ପୁରାତନ ସାହିତ୍ୟ ଆଉ ଆନନ୍ଦ ଦେଇ ପାରିଲା ନାହିଁ । ସେମାନେ ଚାହିଁଲେ ସାହିତ୍ୟରେ ପରିବର୍ତ୍ତନ । ଫଳରେ ରାଧାନାଥ ପୁରାତନ ଭିତ୍ତି ଉପରେ ନୂତନ ସାହିତ୍ୟ-ସୌଧ ନିର୍ମାଣ କରିବାକୁ ଲାଗିଲେ । ପ୍ରାଚୀନ ପନ୍ଥୀମାନେ କିନ୍ତୁ ହଠାତ୍ ଏ ପରିବର୍ତ୍ତନକୁ ଗ୍ରହଣ କରିପାରିଲେ ନାହିଁ । ୧୯୯୩-୯୪ରେ ପ୍ରକାଶିତ ଇନ୍ଦ୍ରଧନୁ-ବିଜୁଳୀ ପତ୍ରିକା ଦୁଇଟି ପ୍ରାଚୀନ ପନ୍ଥୀ ଓ ନବୀନ ପନ୍ଥୀଙ୍କର ପ୍ରତିକ୍ରିୟା-ବହ୍ନି ପ୍ରଜ୍ୱଳନର ନଗ୍ନ ପରିପ୍ରକାଶ । ଲେଖକଙ୍କ ମତରେ-''ଇନ୍ଦ୍ରଧନୁ ବିଜୁଳି ବିବାଦ ଦୁଇଟି ପତ୍ରିକାର କେବଳ ବିବାଦ ନୁହେଁ । ଏହା ଆଧୁନିକ ଓ ପୁରାତନ ରୁଚି ସଂଘର୍ଷର ଦ୍ୟୋତକ ମଧ୍ୟ ।'' ଏହା ପରଠାରୁ ଓଡ଼ିଆ ସାହିତ୍ୟ କାବ୍ୟ, ଗୀତି କବିତା, ଉପନ୍ୟାସ, ଗଳ୍ପ, ପ୍ରବନ୍ଧ, ରମ୍ୟରଚନା ପ୍ରଭୃତି ଦିଗରେ ଆଧୁନିକତାର ବାର୍ତ୍ତା ବହନ କରି ଆଗେଇ ଚାଲିଲା । ରାଧାନାଥ, ମଧୁସୂଦନ, ଫକୀର ମୋହନ, ଗଙ୍ଗାଧର, ନନ୍ଦକିଶୋର, ବିଶ୍ୱନାଥ କର, ରତ୍ନାକର ପତି ପ୍ରଭୃତି ସାହିତ୍ୟିକ ଓଡ଼ିଆ ସାହିତ୍ୟକୁ ବଳିଷ୍ଠ କରି ଗଢ଼ିଲେ ।

ଆସ୍ତେ ଆସ୍ତେ ସାହିତ୍ୟ ବିଭିନ୍ନ ଦିଗରେ ସମ୍ପ୍ରସାରିତ ହେଲା । ବର୍ତ୍ତମାନର ସାହିତ୍ୟ ସେମାନଙ୍କର କଠୋର ସାଧନାର ପରିଣାମ ।

ସାହିତ୍ୟ ଇତିହାସ ଲେଖିବାକୁ ଯାଇ ଲେଖକ ଇତିହାସରୁ ସାହିତ୍ୟର ଉନ୍ମେଷ କିପରି ହେଲା ତାହା ଦେଖାଇ ଅଛନ୍ତି । ଏହା ପୂର୍ବରୁ ତାରିଣୀ ଚରଣ ରଥ, ବିନାୟକ ମିଶ୍ର, ସୂର୍ଯ୍ୟନାରାୟଣ ଦାସ ପ୍ରଭୃତି ସାହିତ୍ୟର ଇତିହାସ ଲେଖିଥିଲେ । ଜଗବନ୍ଧୁ ସିଂ ମଧ୍ୟ ତାଙ୍କ 'ପ୍ରାଚୀନ ଉତ୍କଳ' ଗ୍ରନ୍ଥରେ ସାହିତ୍ୟର ଇତିହାସ ସମ୍ପର୍କରେ ସମ୍ୟକ ସୂଚନା ଦେଇଥିଲେ । ସେଗୁଡ଼ିକ ସବୁ କିନ୍ତୁ ଥିଲା ସ୍ରଷ୍ଟା ଓ ସୃଷ୍ଟିର ବିବରଣୀ । ଐତିହାସିକ, ସାମାଜିକ, ଓ ରାଜନୈତିକ ଦୃଷ୍ଟିକୋଣରୁ ସେଗୁଡ଼ିକ ବିଚାର କରାଯାଇ ନଥିଲା । ଡଃ ସାମନ୍ତରାୟ ସେ ସମସ୍ତ ଦୃଷ୍ଟିକୋଣରୁ ଆଲୋଚନା କରି ସାହିତ୍ୟର ଇତିହାସକୁ ବିଜ୍ଞାନସିଦ୍ଧ କରିପାରି ଅଛନ୍ତି । ଏ ପ୍ରସଙ୍ଗରେ ଉପସଂହାରରେ ଥିବା ତାଙ୍କର ମତଟି ନିତାନ୍ତ ପ୍ରଣିଧାନଯୋଗ୍ୟ । ସେ ଲେଖିଛନ୍ତି -"ସ୍ରଷ୍ଟା କିମ୍ବା ସୃଷ୍ଟିର ନାମ ତାଲିକା ହିଁ ସାହିତ୍ୟର ଇତିହାସ ନୁହେଁ । ସୃଷ୍ଟିର ଲଳିତ ସୌନ୍ଦର୍ଯ୍ୟ ଅବବୋଧ ଦିଗରେ ସୃଷ୍ଟି ଭିତ୍ତିଭୂମିର ସାର୍ଥକ ପରିଚୟ ପ୍ରଦାନ ପ୍ରତ୍ୟେକ ସାହିତ୍ୟ ଇତିହାସକାରର ଏକ ପରମ କର୍ତ୍ତବ୍ୟ ।" ଏଇ ମତର ବଶବର୍ତ୍ତୀ ହୋଇ ଲେଖକ ନିବନ୍ଧଟିର ପ୍ରଥମ ପାଞ୍ଚଟି ପରିଚ୍ଛେଦ କେବଳ ଇତିହାସ ଅନୁସନ୍ଧାନରେ ପ୍ରବୃତ୍ତ ହୋଇ ଅଛନ୍ତି । ଆରମ୍ଭରେ ଓଡ଼ିଶାର ରାଜନୈତିକ, ସାମାଜିକ ଓ ଧର୍ମଗତ ଓ ଜୀବନଧାରା । ଏହାପରେ ଆଧୁନିକ ଶିକ୍ଷାର ପ୍ରସାର ଓ ପରିଣତି, ଆଧୁନିକ ପାଠ୍ୟପୁସ୍ତକ ଆଦି ପରିଚୟ, ନବ ଜାଗରଣ ଓ ନୂତନ ଯୁବଶକ୍ତିର ଅଭ୍ୟୁଦୟ, ଓଡ଼ିଆ ଭାଷା ବିଲୋପ ଆନ୍ଦୋଳନ ଏଇ ପାଞ୍ଚଟି ପରିଚ୍ଛେଦ ହେଲା ତାଙ୍କର ଆଧୁନିକ ଓଡ଼ିଆ ସାହିତ୍ୟ ଓ ଆଲୋଚନାର ଭିତ୍ତି । ଏହା କେବଳ ଘଟଣା ଓ ତାରିଖରେ ପରିପୂର୍ଣ୍ଣ । ସେଥିପାଇଁ ବେଳେ ବେଳେ ପାଠକମାନଙ୍କୁ ବିରକ୍ତିକର ବୋଧ ହୁଏ । ଲେଖକ ମଧ୍ୟ ଏହା ଅନୁମାନ କରିପାରି ଅଛନ୍ତି । ସେଥିପାଇଁ ସେ ସ୍ୱୀକାର କରିଅଛନ୍ତି -"ଏପରି ଆଲୋଚନାର ଆଭିମୁଖ୍ୟ ବହୁ ସମୟରେ ହୁଏ ବିରକ୍ତିକର ଓ ସାଲ-ତାରିଖ-ଇତିହାସରେ ଭାରାକ୍ରାନ୍ତ । ରମ୍ୟରଚନା ପରି ଏହା ପଠନ ସୁଖକର ନ ହେବାର ଆଶ୍ଚର୍ଯ୍ୟ କିଛି ନାହିଁ । ଏ ପୁସ୍ତକର ପ୍ରଥମ ଭାଗଟି କାହାରି କାହାରି ଦୃଷ୍ଟିରେ ସେଇ ରୂପରେ ଯେ ପରିଦୃଷ୍ଟ ହେବ, ଏଥିରେ ଆମର ସମ୍ପୂର୍ଣ୍ଣ ବିଶ୍ୱାସ ଅଛି । ତଥାପି ସାହିତ୍ୟର ଇତିହାସ ରଚନା କ୍ଷେତ୍ରରେ ଯାହା ଏକାନ୍ତ ବାସ୍ତବ ସତ୍ୟ, ତା'ରି ଅନୁରୋଧରେ ଆମେ ସେହି ଆପାତତଃ ବିରକ୍ତିକର ବିଷୟ ଉପସ୍ଥାପନା କରିବାକୁ ବାଧ୍ୟ ହୋଇଛୁ । ଯେଉଁ ଜାତୀୟ କର୍ତ୍ତବ୍ୟବୋଧରେ ଅନୁପ୍ରାଣୀତ ହୋଇ ଆମେ ସାହିତ୍ୟର ଇତିହାସ ରଚନାରେ ପ୍ରବୃତ୍ତ ହୋଇଥିଲୁ, ସେ କର୍ତ୍ତବ୍ୟ କେତେଦୂର ସମ୍ପାଦିତ ହୋଇଛି ତାହା ଭବିଷ୍ୟତ ବଂଶଧର ବିଚାର କରିବ ବୋଲି ଆଶା ।"

ମୋ ମତରେ ଲେଖକଙ୍କର ସେ ଆଶା ସଫଳ ହୋଇଛି । ଭବିଷ୍ୟତ ବଂଶଧରଙ୍କ ଦ୍ୱାରା ଏହି ଗ୍ରନ୍ଥଟି ବେଶ୍ ଆଦୃତ ହୋଇଛି । ସାହିତ୍ୟର ଇତିହାସ ଆଲୋଚନା କ୍ଷେତ୍ରରେ ଯେଉଁ ଦିଗଟି ଅଭାବ ଥିଲା ଲେଖକ ତାହା ପୂରଣ କରିଅଛନ୍ତି । ଏହି ଗ୍ରନ୍ଥଟି ଆଜି ଅଧିକାଂଶ ଅଧ୍ୟାପକ, ଗବେଷକ ଓ ସାହିତ୍ୟ-ଆଲୋଚକମାନଙ୍କ ଦ୍ୱାରା ଅମୂଲ୍ୟ ସମ୍ପଦ ରୂପେ ଗୃହୀତ ହୋଇଅଛି ଏବଂ ଏହା ଏକ କାଳଜୟୀ ରଚନା ।

*୪୮୫/୨, ଶହୀଦ ନଗର, ଭୁବନେଶ୍ୱର*

# ସାର୍‌ଙ୍କ ପାଠପଢ଼ା ପ୍ରସଙ୍ଗ

*ଡଃ ଶରତ ଚନ୍ଦ୍ର ପ୍ରଧାନ*

ମୋ ଲିଖିତ 'ଶିକ୍ଷକ' କବିତା ପଢ଼ିଲା ବେଳେ ସାର୍ ମନେ ପଡ଼ନ୍ତି । ମୋ ଆଖିରେ ସେ କେତେବେଳେ ଧରା ଆଉ କେତେବେଳେ ଆକାଶ ପାଇଟି ଯାଆନ୍ତି । ଦିବଂଗତ ଅଧ୍ୟାପକ ନଟବର ସାମନ୍ତରାୟଙ୍କ ପାଠ ପଢ଼ାଇବା ଢଙ୍ଗ, କଥାବାର୍ତ୍ତା, ହସ ହସ ମୁହଁ ନାଚି ଯାଏ । ଧରା ଓ ଆକାଶ ମୋ ଆଖିରେ ଏକାକାର ହୋଇଯାଏ । ସେ "ମୋ ଆଖିର କେତେ ତୀର୍ଥ କେତେ ବସୁନ୍ଧରା" ପାଇଟି ଯାଆନ୍ତି । ମୋ କବିତାରେ ସାର୍ ଅଲକ୍ଷିତ ଭାବରେ ରୂପ ପରିଗ୍ରହଣ କରିଛନ୍ତି । ଏ କବିତା ଲେଖିଲା ବେଳେ ସାର୍ ଅବଶ୍ୟ ଜୀବିତ ଥିଲେ । କବିତାଟି 'ଝଙ୍କାର'ରେ ବାହାରିଥିଲା । କବିତାରେ ଶିକ୍ଷକଙ୍କୁ ଫୁଲ ବଗିଚାର ମାଳି ଓ ଡାକ୍ତରଖାନାର ଆପ୍ରୋନ ପିନ୍ଧା ନର୍ସ ସହ ତୁଳନା କରିଥିଲି । ଏ କବିତାରେ ଆତ୍ମକଥନ ଶେଷରେ ଶିକ୍ଷକଙ୍କ ସ୍ୱଗତଃ ଭାଷଣ ରହିଛି -

"ସର୍ବତ୍ର ଫୁଲଙ୍କ ରାସ ଫୁଲଙ୍କ ସହର
ଅନାସକ୍ତେ ମାଳା ଗୁନ୍ଥେ ମୁହିଁ ମାଳାକାର
x x x x x
ମୁଁ ସତେକି ନିର୍ବିକାର ଡାକ୍ତରଖାନାର
ଆପ୍ରୋନ ପିନ୍ଧା ନର୍ସ ଅବା ଗୋପ ପାଟଣାର ।"

ଏହି ଚିତ୍ରକଳା ମଧ୍ୟରେ ସେ ସମୟର ସାଧନାରତ ଅନାସକ୍ତ ଅଧ୍ୟାପକମାନଙ୍କ ଚେହେରା ଫୁଟି ଉଠେ । ସେହି ତପସ୍ୱୀ ସୁଲଭ ଅଧ୍ୟାପକଙ୍କ ସ୍ମୃତିରେ ଚକ୍ଷୁବାଷ୍ପ ସଜଳ ହୋଇଯାଏ । ମନ ଆକାଶରେ ଖଣ୍ଡ ଖଣ୍ଡ ଧଳା ମେଘ ପରି ଖେଳି ବୁଲୁଥିବା ସ୍ମୃତିଗୁଡ଼ାକ ହଠାତ୍ କଳା ଘୁମୁର ହୋଇ ଯାଆନ୍ତି ଓ ଚେତନାର ନାଭିରନ୍ଧ୍ରକୁ ଥରାଇ ଦିଅନ୍ତି ।

ଅଧ୍ୟାପକ ଡକ୍ଟର ନଟବର ସାମନ୍ତରାୟ ଥିଲେ ଏ ଜାତିର ଭାଷା ଓ ସାହିତ୍ୟ ପାଇଁ ଏକ ସମର୍ପିତ ଆତ୍ମା । ତାଙ୍କ ପାଖରେ ବସିଲେ ଗ୍ରୀକ୍ ମନୀଷୀ ପ୍ଲାଟୋ ମନେ ପଡ଼ନ୍ତି । ପ୍ଲାଟୋ ତାଙ୍କ 'ଡାଇଲଗ୍'ରେ ଯେପରି ଅନ୍ତେବାସୀମାନଙ୍କୁ ଶିକ୍ଷା ଦେଉଥିଲେ; ଅଧ୍ୟାପକ ସାମନ୍ତରାୟଙ୍କ ଅଧ୍ୟାପନା ରୀତି ଥିଲା ତାଦୃଶ୍ୟ ସଂଳାପଧର୍ମୀ । ତାଙ୍କୁ ପଚାରିଲେ ଢେଙ୍କିଶାଳରୁ ଢେଙ୍କାନାଳ ପର୍ଯ୍ୟନ୍ତ କଥା ଲମ୍ବି ଯାଉଥିଲା । ସେ କିପରି ଗବେଷକ ହେଲେ, ସେ କିପରି ବହୁ କୁଟୁମ୍ବୀ ପରିବାର ଭିତରେ ସମୟ ବାହାର କରି ଅଧ୍ୟୟନ ନିର୍ଘଣ୍ଟ ପ୍ରସ୍ତୁତ କରୁଥିଲେ, ତା'ର ବିବରଣୀ ଦେଉଥିଲେ । ସାର୍ ରେଲ୍ ଲାଇନ୍ ଆରପାଖ ଚାଉଳିଆଗଞ୍ଜରେ ଭଡ଼ାଘରଟିଏ ନେଇ ରହୁଥିଲେ । ସନ୍ଧ୍ୟା ଆଠଟା ବେଳକୁ ଗଲେ ସାର୍‌ଙ୍କ ଦେଖା ମିଳୁନଥିଲା । ମାଉସୀ କହୁଥିଲେ- ତୁମ ସାର୍ ଶୋଇଛନ୍ତି, ତୁମେ ପରେ ଆସ । ପ୍ରଥମେ ପ୍ରଥମେ ଆମେ ସବୁ ଆଶ୍ଚର୍ଯ୍ୟ ହେଉଥିଲୁ, ଆଉ ଭାବୁଥିଲୁ ସାର୍ ବୋଧେ ଛାତ୍ରଙ୍କୁ ଦେଖା ନ ଦେବା

ପାଇଁ ଏ କୌଶଳଟି ଅବଲମ୍ବନ କରିଛନ୍ତି । ନହେଲେ ସଞ୍ଜବେଳୁ କିଏ ଶୁଏ ? ଦିନେ ଗୁଳୁରାଟୀ ଶାନ୍ତିଭାଇ ଦୋକାନରେ ସାର୍ ଚା' ଖାଉଥିଲା ବେଳେ ମୃତ୍ୟୁଞ୍ଜୟ ଓ ମୁଁ ପଶିଗଲୁ । ସାର୍ ଆମକୁ ଚା' ଗାଣ୍ଡିଆ ଖାଇବାକୁ ଦେଇ ହସ ହସ ମୁହଁରେ କହିଲେ- 'ଆରେ ତୁମେ ଦୁଇଟା କୁଆଡ଼େ ମାଡ଼ି ଆସିଲ ?' ବନ୍ଧୁ ମୃତ୍ୟୁଞ୍ଜୟ ନାୟକ ମୁଣ୍ଡ ଆଉଁସି ଆଉଁସି କହିଲା - ସାର୍ ଆମେ ଦୁଇଜଣ ରାଧାନାଥୋତ୍ତର ଆଧୁନିକ ଓଡ଼ିଆ ସାହିତ୍ୟକୁ ସ୍ୱତନ୍ତ୍ରପତ୍ର ରୂପେ ନେବାକୁ ଚାହୁଁ । ସାର୍ ଗମ୍ଭୀର ହୋଇଗଲେ ଓ କହିଲେ ତୁମେ ଦୁଇଟା କେରିଆର ଗଢ଼ିବାକୁ ହେଲେ ବୈଷ୍ଣବ ଦର୍ଶନ ଓ ସାହିତ୍ୟକୁ ସ୍ୱତନ୍ତ୍ରପତ୍ର ରୂପେ ନିଅ । ମୁଁ ତ ଆଧୁନିକ ସାହିତ୍ୟ ଚର୍ଚ୍ଚା କରି ସମସ୍ତଙ୍କ ଶରବ୍ୟ ହୋଇଛି । ତୁମେ ସବୁ ଭଲ କ୍ଲାସ ପାଇବ ନାହିଁ । ସେତେବେଳେ ଆମେ ଦେଖୁଥିଲୁଁ ସାର୍‌ଙ୍କ ମୁଖମଣ୍ଡଳ କୁଣ୍ଠିତ ହୋଇ ଉଠୁଥିଲା । ସେ କହୁଥିଲେ- ଦୁଇ ବର୍ଷ ଧରି ଆଧୁନିକ ସାହିତ୍ୟ ପଢ଼ାଇଲିଣି । କେହି ଗୋଟିଏ ହେଲେ ପ୍ରଥମ ଶ୍ରେଣୀ ପାଉ ନାହାନ୍ତି । ଦେବେନ୍ଦ୍ର ଓ ଅସିତ ବିଡ଼ମ୍ବିତ ହୋଇଛନ୍ତି । ତୁମେ ଦୁଇଜଣ ପୁଣି କାହିଁକି ଆଧୁନିକ ସାହିତ୍ୟ ପଢ଼ି କ୍ଲାସ ହରାଇବ । ମୃତ୍ୟୁଞ୍ଜୟ କହିଲା- ଶରତ ତ ଏମ୍. ଏ. ପ୍ରଥମ ଭାଗ ଦେଇ ପ୍ରଥମ ଶ୍ରେଣୀ ପାଇଛି । ମୋ କଥା ନିଆରା । ମୁଁ ତା' ସହିତ ତଙ୍ଗାରେ ବସି ପରୀକ୍ଷା ନଈଟି ପାର ହୋଇଯିବି, ନାହିଁ ? ସାର୍ କହିଲେ, ତଥାପି ତୁମେ ଦୁହେଁ ଚିନ୍ତା କରି ସ୍ଥିର କର- 'ଦୁର୍ଗମ ପଥ ଏ ଭଜନ, ଭାବେ ଭଜିଲେ ମୁନିଜନ ।' ଦୁଇଦିନ ପରେ ରେଭେନ୍ସା କଲେଜର ସାତନମ୍ବର ପ୍ରକୋଷ୍ଠ ସାମ୍ନା ବାରଣ୍ଡାରେ ଅଧାପକ ସାମନ୍ତରାୟଙ୍କୁ ଭେଟି ଆମେ ଦୁଇଜଣ ରାଧାନାଥୋତ୍ତର ଆଧୁନିକ ଓଡ଼ିଆ ସାହିତ୍ୟକୁ ସ୍ୱତନ୍ତ୍ର ପତ୍ର ରୂପେ ନେବାର ସଂକଳ୍ପ ଜଣାଇ ଦେଲୁ । ଏ ସମ୍ପର୍କରେ ଆମେ ପ୍ରଫେସର ଓ ବିଭାଗୀୟ ମୁଖ୍ୟ ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀଙ୍କୁ ଆବେଦନ କରିଥିବା କଥା ମଧ୍ୟ କହିଲୁ । ସାର୍‌ଙ୍କ ମୁହଁକୁ ଆମେ ଅନାଇଥିଲୁ । ତାଙ୍କ ମୁଖମଣ୍ଡଳରେ ଦଲକାଏ ବିଜୁଳି ଖେଳି ଯାଇଥିଲା । ଅଧରରେ ଟେନାଏ ହସ ବି ଝରି ପଡ଼ିଥିଲା । ଏ ଥିଲା ୧୯୫୮ ମସିହାର ଜୁଲାଇ ମାସର କଥା । ସେତେବେଳେ ଆକାଶରେ ଖଣ୍ଡ ଖଣ୍ଡ ବର୍ଷଣ ମୁଖର ବଉଦ ଘୋଟି ଯାଇଥିଲା- ଚକ୍‌ଚକ୍ ବିଜୁଳିରେ ଆକାଶଟା ବେଶ୍ ଉଦ୍ଭାସିତ ହୋଇ ଉଠୁଥିଲା ।

ଆଗରୁ କହିଛି- ସାର୍ ପାଠ ପଢ଼ାଇଲା ବେଳେ ଆପ୍ରୋନ ପିନ୍ଧା ନର୍ସର ଭୂମିକା ନିର୍ବାହ କରୁଥିଲେ । ପ୍ଲାଟୋ ତାଙ୍କର 'ଡ଼ାଇଲଗ୍'ରେ ଶିକ୍ଷକଟିଏ କିପରି ହେବ, ତା'ର ବିବରଣୀ ପ୍ରଦାନ କରିଛନ୍ତି- 'ତାଙ୍କ ମତରେ ଶିକ୍ଷକ ହେବ ବନ୍ଧ୍ୟା ଧାତ୍ରୀଟିଏ । ନର୍ସଟିଏ ସନ୍ତାନ ସନ୍ତତି ଶୂନ୍ୟ ନ ହେଲେ ରୋଗୀର ସେବାରେ ହେଳା କରିବାର ସମ୍ଭାବନା । ସନ୍ତାନବତୀ ହେଲେ ତା'ର ସେବାରୁ ତା' ପିଲାଏ ଭାଗନେବେ ।' ପ୍ଲାଟୋଙ୍କ ଯୁକ୍ତିରେ ଏଠି ନର୍ସର ଉତ୍ସର୍ଗୀକୃତ ଜୀବନର ଇଙ୍ଗିତ ଦିଆଯାଇଛି । ସେହିପରି ଶିକ୍ଷକଟିଏ ହେଲେ ହେବ ବନ୍ଧ୍ୟା ନର୍ସ ପରି ସ୍ନେହପ୍ରବଣ ଏବଂ ସନ୍ତାନ ବିବର୍ଜିତ । ଏଥିପାଇଁ ତ ପୁରାଣକାର ଶ୍ରୀକୃଷ୍ଣଙ୍କର ଗୁରୁ ସାନ୍ଦୀପନିଙ୍କୁ କୃଷ୍ଣ ବଳରାମଙ୍କ ଶିକ୍ଷାଦାନ କାଳରେ ସନ୍ତାନହରା ରୂପେ ଅବସ୍ଥାପିତ କରାଇଥିଲେ । ବ୍ୟାସଙ୍କ ମହାଭାରତରେ କର୍ଣ୍ଣଙ୍କ ଅସ୍ତ୍ରଗୁରୁ ପର୍ଶୁରାମ ତ ବୈରାଗୀ । ପାଣ୍ଡବ କୌରବଙ୍କ ଅସ୍ତ୍ରଗୁରୁ କୃପାଚାର୍ଯ୍ୟ ନିଷ୍ଠାବାନ୍, ତାଙ୍କର ସନ୍ତାନ ମୋହ ନଥିଲା । ଅନ୍ୟତମ ଅସ୍ତ୍ରଗୁରୁ ଦ୍ରୋଣାଚାର୍ଯ୍ୟ ପତ୍ନୀହରା ତଥାପି ସନ୍ତାନ ଅଶ୍ୱଥମା ପ୍ରତି

ସ୍ୱତନ୍ତ୍ର ଧ୍ୟାନ ଦେଉଥିଲେ ବୋଲି କବିଗୁରୁ ବ୍ୟାସ ଉଲ୍ଲେଖ କରିଛନ୍ତି । ସାରଳା ମହାଭାରତରେ ମଧ୍ୟ ସେହି କଥା ବର୍ଣ୍ଣିତ ଓ ଅଶ୍ୱଥମା ପ୍ରତି ସ୍ୱତନ୍ତ୍ର ମୋହ ଦ୍ରୋଣାଚାର୍ଯ୍ୟଙ୍କ ଥିଲା ବୋଲି ଉଲ୍ଲେଖ ଅଛି । ଆମେ ପଢ଼ିଲା ବେଳେ ଅଧ୍ୟାପକ ସାମନ୍ତରାୟଙ୍କ କେତୋଟି ଟିକି ଟିକି ସନ୍ତାନ ସନ୍ତତି ହୋଇଥିଲେ । ସେ ଅବଶ୍ୟ ତପସ୍ୱୀର 'କା' ନେଇ ଗବେଷଣା ଓ ପାଠପଢ଼ା ଆରମ୍ଭ କରି ଦେଇଥିଲେ । ପିଲାଏ କୋଳାହଳ କରନ୍ତି ବୋଲି ସାର୍ ସଞ୍ଜବେଳେ ଶୋଇପଡ଼ି ରାତି ୮ଟା/୯ଟା ବେଳେ ଉଠି ନିଜର ପାଠପଢ଼ା ଆରମ୍ଭ କରି ଦିଅନ୍ତି । ରାତିଟା ପାଲଟେ ସାର୍‌ଙ୍କ କର୍ମମୁଖର ଦିବସ । ସେ ନିରଳସ ହେବା ଓ ବିଜ୍ଞାନସମ୍ମତ ଭାବେ ଗବେଷଣା କରିବା ଧର୍ମଟି ପ୍ରତ୍ନତତ୍ତ୍ୱବିତ୍ ପରମାନନ୍ଦ ଆଚାର୍ଯ୍ୟଙ୍କ ଠାରୁ ଶିଖିଥିଲେ । ବାରିପଦା ମହାରାଜା ପୂର୍ଣ୍ଣଚନ୍ଦ୍ର କଲେଜରେ ଅଧ୍ୟାପନା କଲାବେଳେ ଆଚାର୍ଯ୍ୟଙ୍କର ସ୍ୱକୀୟ ଲାଇବ୍ରେରୀ ଓ ବାରିପଦାର ଜୁବୁଲି ଲାଇବ୍ରେରୀର ସୁବିନିଯୋଗ ସେ କରିଥିଲେ । ସେତେବେଳେ ତାଙ୍କର ବୈଷ୍ଣବ ସାହିତ୍ୟ ଓ ଆଧୁନିକ ସାହିତ୍ୟ ବିଶେଷତଃ ରାଧାନାଥ ସମ୍ପର୍କିତ ବିଭିନ୍ନ ଲେଖା 'ଝଙ୍କାର'ର ପୃଷ୍ଠା ମଣ୍ଡନ କରୁଥିଲା । ୧୯୫୬ ମସିହା ବେଳକୁ ଶ୍ରୀ ସାମନ୍ତରାୟ ରେଭେନ୍ସା କଲେଜକୁ ସ୍ଥାନାନ୍ତରିତ ହୋଇ ଆସି କାର୍ଯ୍ୟରେ ଯୋଗ ଦିଅନ୍ତି । ତାଙ୍କର ଆଧୁନିକ ଓଡ଼ିଆ ସାହିତ୍ୟ ସମ୍ପର୍କିତ ବିଭିନ୍ନ ଆଲୋଚନା ଓଡ଼ିଶାର ସାହିତ୍ୟ ପତ୍ରପତ୍ରିକା ମାନଙ୍କରେ ସ୍ଥାନିତ ହେଉଥାଏ । କାଳ ଆଧାରିତ, ଇତିହାସ ଭିତ୍ତିକ ଆଲୋଚନାମାନ ଚହଳ ପକାଇ ଦେଇଥାଏ । ଓଡ଼ିଶା ସୁଧୀମଣ୍ଡଳୀ ଓ ପାଠକ ମହଲରେ କୁଶଳୀ ସାରସ୍ୱତ ସମୀକ୍ଷକ ରୂପେ ସେ ପ୍ରତିଷ୍ଠା ଲଭିବାକୁ ଆରମ୍ଭ କରିଥାଆନ୍ତି । ବିଦ୍ୱାନମାନେ ଗୋପୀନାଥ ନନ୍ଦଶର୍ମା, ନୀଳକଣ୍ଠ ଦାସ ଓ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ପରମ୍ପରାର ଏକନିଷ୍ଠ ସାରସ୍ୱତ ସମୀକ୍ଷକ ଭାବେ ନଟବର ବାବୁ ପ୍ରତିଷ୍ଠା ଲାଭ କରିଛନ୍ତି ବୋଲି କୁହାକୁହି ହେଉଥା'ନ୍ତି । ଫଳରେ ଆମର ତରୁଣ ମନରେ ଶ୍ରୀ ସାମନ୍ତରାୟ ଆସନ ଜମାଇ ବସନ୍ତି ।

୧୯୫୮-୫୯ ସାଲ ବେଳକୁ 'ଓଡ଼ିଆ ସାହିତ୍ୟର ଇତିହାସ' କହିଲେ ବିନାୟକ ମିଶ୍ରଙ୍କ 'ଓଡ଼ିଆ ସାହିତ୍ୟର ଇତିହାସ', ତାରିଣୀ ରଥଙ୍କ 'ଉତ୍କଳ ସାହିତ୍ୟର ଇତିହାସ', ନୀଳକଣ୍ଠଙ୍କ 'ଓଡ଼ିଆ ସାହିତ୍ୟର କ୍ରମ ପରିଣାମ' ୧ମ ଭାଗ, ଜଗବନ୍ଧୁ ସିଂହଙ୍କ 'ପ୍ରାଚୀନ ଉତ୍କଳ', ପଣ୍ଡିତ ସୂର୍ଯ୍ୟ ନାରାୟଣ ଦାସଙ୍କ 'ଓଡ଼ିଆ ସାହିତ୍ୟର ପରିଚୟ', ପ୍ରିୟ ରଞ୍ଜନ ସେନଙ୍କ ' Morden Oriya Literature', J.B. Mohanty (A)ଙ୍କ' History of Oriya Literature',ଏବଂ ବିଜୟ ଚନ୍ଦ୍ର ମଜୁମଦାରଙ୍କ ' Typical Selections from Oriya Literature'ର ମୁଖବନ୍ଧ, ପ୍ରାଚୀ ସମିତି ପ୍ରକାଶିତ ବିଭିନ୍ନ ଗ୍ରନ୍ଥର ମୁଖବନ୍ଧ ବ୍ୟତୀତ ଅନ୍ୟ କୌଣସି ସାରସ୍ୱତ କୃତି ନଥିଲା ।

ଓଡ଼ିଆ ଭାଷାତତ୍ତ୍ୱ ଚର୍ଚ୍ଚା କହିଲେ ଗୋପୀନାଥ ନନ୍ଦଶର୍ମାଙ୍କ ଓଡ଼ିଆ ଭାଷାତତ୍ତ୍ୱ ; ନୀଳକଣ୍ଠ ଦାସଙ୍କ କେତୋଟି ପ୍ରବନ୍ଧ ଓ ବିନାୟକ ମିଶ୍ରଙ୍କ କେତୋଟି ଲେଖା ହିଁ ଉପଲବ୍ଧ ହେଉଥିଲା । ବସ୍ତୁତଃ ଆମେ ଓଡ଼ିଆ ଛାତ୍ର ଏମ୍. ଏ. କ୍ଲାସ୍‌ରେ ସୁକୁମାର ସେନଙ୍କ ରଚିତ 'ବାଙ୍ଗଲା ଭାଷାର ଇତିବୃତ୍ତି' ପରି ବହି ପଢୁଥିଲୁ । ଫଳରେ ଏମ୍. ଏ. ଦ୍ୱିତୀୟ ଭାଗ ପରୀକ୍ଷାର୍ଥୀଙ୍କ ପାଇଁ ଭାଷାତତ୍ତ୍ୱ ପତ୍ର ପ୍ରସ୍ତୁତି କାଠିକର ପାଠ ହୋଇ ପଡୁଥିଲା । ଆମର ସପ୍ତମ ପତ୍ରଟି ଥିଲା ପ୍ରାଚୀନ କାବ୍ୟ କବିତା ଏବଂ ଅଷ୍ଟମ ପତ୍ରଟି ବିଶେଷ ଅଧ୍ୟୟନ ନିମିତ୍ତ

ଉଦ୍ଦିଷ୍ଟ ସ୍ୱତନ୍ତ୍ର ପତ୍ର । ଅଧ୍ୟାପକ ସାମନ୍ତରାୟ ଆମର ସ୍ୱତନ୍ତ୍ର ପତ୍ର ପଢ଼ାଇବାକୁ ପ୍ରଥମେ ଯେଉଁଦିନ ଆସିଲେ ଆମେ ଦୁହେଁ ଆମର ପାଠ ପଢ଼ାର ସୀମାବଦ୍ଧତା ଏବଂ ପୁସ୍ତକ ପ୍ରାପ୍ତିର ଅଭାବ ସମ୍ପର୍କରେ ସାରଙ୍କୁ ଜଣାଇଲୁ । ଆମ କଥା ଶୁଣି ସାର୍ ହସିଲେ-ଆଉ କହିଲେ ବୈଷ୍ଣବ କବି ଓ ସନ୍ଥମାନେ କହୁଛନ୍ତି - ଖୋଜିଲେ ଈଶ୍ୱର ମିଳନ୍ତି, ସଦେହେ ସେ ସ୍ୱର୍ଗରୁ ଓହ୍ଲାଇ ଆସନ୍ତି । ତୁମେ ଦୁଇଟା ଅଲାଜୁକ, କହୁଛ ବହି ମିଳୁନାହିଁ । ଖୋଜିଲେ ମିଳିବ । ଏଥିପାଇଁ ତୁମକୁ ସାଧନା କରିବାକୁ ହେବ, ତପସ୍ୟା କରିବାକୁ ପଡ଼ିବ । ସେହିଦିନୁ ଆମେ ଜାଣିଲୁ ଗବେଷଣାର ଅନ୍ୟନାମ ତପସ୍ୟା । ଅଧ୍ୟୟନର ନାମାନ୍ତର ପୁସ୍ତକକୁ ଦୋସର ଭାବେ ବରିନେବା ଓ ତା' ସହ ଆନ୍ତରିକତା ସ୍ଥାପନ କରି ଜୀବନର ଯାତ୍ରା ପଥରେ ଆଗେଇ ଯିବା । ଶ୍ରୀ ସାମନ୍ତରାୟ କହୁଥିଲେ- ତୁମେ ତପସ୍ୟା କର କିନ୍ତୁ ତୁମ ତପସ୍ୟା ହେଉ ନିଷ୍ଠାଧାରିତ । ତହିଁରେ ଛଳନା ନ ରହୁ । ଗୁଡ଼ାଏ ନପଢ଼ି ଆଗେ ତୁମେ ଅଳ୍ପ ପଢ଼, କିନ୍ତୁ ତାକୁ ଭଲ ଭାବରେ ଆୟତ୍ତ କରିନିଅ । ମୂଳଦୁଆ ଦୃଢ଼ ହେଉ । ଆଧାରର ଗ୍ରନ୍ଥଟି ଭଲ ଭାବରେ ଆୟତ୍ତ କଲାପରେ ଆନୁସଙ୍ଗିକ ଅଧ୍ୟୟନ କଲେ ତୁମର ପାଠ୍ୟ ଅଧିକ ଫଳପ୍ରସୂ ହେବ । ମୋର ସତୀର୍ଥ ମୃତ୍ୟୁଞ୍ଜୟ ଓ ମୁଁ ସାର୍‌ଙ୍କ କଥାକୁ ଯଥାସାଧ ପାଳିବାକୁ ଚେଷ୍ଟାକଲୁ । ମୃତ୍ୟୁଞ୍ଜୟ ହନୁମାନ ପରି ଧାଇଁ ଧପଡ଼ି ବହି ଯୋଗାଡ଼ରେ ଲାଗିଯାଏ । ଆମେ କନିକା ଲାଇବ୍ରେରୀର ଆଧୁନିକ ଓଡ଼ିଆ ସାହିତ୍ୟର କବିତା, ନାଟକ, ଗଦ୍ୟ, ଉପନ୍ୟାସ, ଭ୍ରମଣ ବୃତ୍ତାନ୍ତ ଆଦି ସୃଜନଧର୍ମୀ ଯାବତୀୟ ବହି କାର୍ଡରେ ଆଣି ପଢ଼ିବା ଆରମ୍ଭ କଲୁ । ମୃତ୍ୟୁଞ୍ଜୟ ତା' କାର୍ଡରେ ନେଇଥିବା ବହିରୁ ଖଣ୍ଡେ ଅଧେ ପଢ଼ି ଅନ୍ୟଗୁଡ଼ିକ ଆଣି ମୋ ପାଖେ ଥୋଇଦିଏ ଆଉ କହେ ନୋଟ କରିଦେ । ମୋତେ କହିବୁ । ଆମେ ବନ୍ଧୁ ସମୟରେ କଲେଜ ସାମ୍ନାରେ ଥିବା ଶାନ୍ତିଭାଇ ଗୁଜୁରାଟୀ ଦୋକାନରେ ଚା ଗାଣ୍ଡିଆ ଖାଉ । ବେଳେ ବେଳେ ସାର୍‌ଙ୍କୁ ମଧ ଯିବାକୁ ଅଳିକରି ବସୁ । ସାର୍ ଆମ କଥା କାଟି ପାରନ୍ତି ନାହିଁ । ପର୍ଯ୍ୟାୟକ୍ରମେ ସାର୍ ଆମର ଦିଗଦ୍ରଷ୍ଟା, ଯୌବନର ଶିକ୍ଷାଗୁରୁ ହେବା ସହିତ ବନ୍ଧୁ ବନି ଯାଆନ୍ତି । ସେତେବେଳେ ମୃତ୍ୟୁଞ୍ଜୟକୁ ମୁଁ କହେ- ଆରେ ମୃତ୍ୟୁଞ୍ଜୟ, ଆମେ ଯେମିତି ସାର୍‌ଙ୍କୁ ଜ୍ଞାନଦାତା, ସଖା ସହୋଦର ପରି ମଣୁଛେ, ଏହିପରି ପରିସ୍ଥିତି ହୁଏତ ରାଧାନାଥ ଓ ମଧୁସୂଦନ ରାଓଙ୍କର ଥିଲା । ତେଣୁ 'ରାଧାନାଥ ବିୟୋଗ' କବିତାରେ ରାଓ କବି ଲେଖିଛନ୍ତି-

''କବି ମାତ୍ର ରାଧାନାଥ ସାଧାରଣଙ୍କର
କିନ୍ତୁ ଦେବି, ଜାଣୁ ତୁହି କି ଥିଲେ ମୋହର ।
କୈଶୋରର ଶିକ୍ଷାଗୁରୁ ସଦା ସୁବତ୍ସଳ
ଯୌବନର ପ୍ରାଣବନ୍ଧୁ ଏକାନ୍ତ ସରଳ;
ସାହିତ୍ୟ ସାଧନା-କ୍ଷେତ୍ରେ ଶିକ୍ଷାଦାତା ସଖା
ଯାବତ ନଥିଲା ବାଜି ଆଦର୍ଶର ଧକା ।''

ମୋ ପାଇଁ ନଟବର ସାମନ୍ତରାୟ ଥିଲେ ଶିକ୍ଷାଗୁରୁ, ଗବେଷଣା କର୍ମର ପ୍ରେରଣାଦାତା ଓ ସ୍ନେହୀ ମଣିଷ । ଏବେ ଅଧିକାଂଶ ବିଦ୍ୱାନ ଅଭିଯୋଗ କରନ୍ତି ଯେ ଅଧ୍ୟାପକ ସାମନ୍ତରାୟ ତାଙ୍କର ଅନୁଗାମୀ ଗବେଷକ ଗୋଷ୍ଠୀ ତିଆରି କରି ନାହାନ୍ତି । ଗବେଷଣା କର୍ମରେ ସହାୟତା

କରିବାରେ ସେ ଥିଲେ ବଡ଼ କୁଣ୍ଠିତ । ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟଙ୍କୁ ଛାଡ଼ିଦେଲେ ଆଉ କାହାରିକୁ ସେ ସ୍ୱକୀୟ ଗବେଷଣା ସୂତ୍ର ଧରାଇ ନାହାନ୍ତି । ଅଧ୍ୟାପକ ସାମନ୍ତରାୟ ଅବଶ୍ୟ ଥିଲେ ସ୍ୱାଭିମାନୀ ବ୍ୟକ୍ତି ସତ୍ତା । ତାଙ୍କ ସହ ଆଳାପ ଆଲୋଚନା କଲେ ସେ ଜହ୍ନ ଆଳୁଅ ପରି ବିଛୁଡ଼ି ହୋଇ ପଡୁଥିଲେ । ସେ ଛାତ୍ର ବିଶେଷର ନ ହୋଇ ପାଠକ ସମାଜ ପାଇଁ ନିଜର ବକ୍ତବ୍ୟକୁ ପ୍ରବନ୍ଧାକାରରେ ରୂପ ଦେଉଥିଲେ । ତାହା ପ୍ରସ୍ତୁତ କଲାପରେ ଶ୍ରେଣୀ ପ୍ରକୋଷ୍ଠରେ ଆଲୋଚନା ଛଳରେ ନିଜର ସାହିତ୍ୟ ସମ୍ପର୍କିତ ମତାମତ ଉପସ୍ଥାପନ କରୁଥିଲେ ।

ଦିନେ ଆମେ ସାର୍‌ଙ୍କୁ ପଚାରିଲୁ- ଆପଣ ସନ, ତାରିଖ ଓ ସମୟର ପ୍ରାଣସ୍ପନ୍ଦନ ଉପରେ ଏତେ ଜୋର ଦିଅନ୍ତି କାହିଁକି ? ଆପଣ ଗଣିତ ଶିକ୍ଷକ ପରି ହିସାବ ନିକାଶ କରି କାଳ ନିରୂପଣ କରିବାର ହେତୁ କଣ ? ସେ ଆମ ଦୁହିଁକୁ ମୁଣ୍ଡଟେକି ଚାହିଁଲେ ଏବଂ କହିବାକୁ ଲାଗିଲେ- ତୁମେ ଦୁହେଁ ଗଡ଼ନାୟକଙ୍କ 'ସ୍ମରଣିକା' କବିତା ପଢ଼ିଥିବ । ସେଥିରେ ସେଦିନ ଗାୟାନ୍ତି ବାଳକ କପିଳା ଆଜିର ମହିମାମୟ ସମ୍ରାଟ କପିଳେନ୍ଦ୍ର ଦେବ । କିନ୍ତୁ ସେ ଅତୀତ ଜୀବନର ସ୍ମାରକୀ ବାଉଁଶର ବଇଁଶୀଟିକୁ ତ ଭୁଲି ନଥିଲେ । ମୁଁ ବି ଅତୀତର ଅନୁଗୁଳ ସ୍କୁଲର ଗଣିତ ଶିକ୍ଷକ ଆଜିର ଓଡ଼ିଆ ଅଧ୍ୟାପକ । ମୋର ଗଣିତ ଶିକ୍ଷକ ସୁଲଭ ମନ ନେଇ ମୁଁ ସାହିତ୍ୟରେ ସନ ତାରିଖ ଖୋଜୁଛି । ସମୟର ପ୍ରାଣସ୍ପନ୍ଦନ ଉପରେ ଲେଖାଟି କିପରି ପ୍ରତିଷ୍ଠିତ, ତାହା ନିର୍ଦ୍ଧାରଣ କରି ଚାଲିଛି । ଅନୁଗୁଳ ହାଇସ୍କୁଲରେ ସହକାରୀ ଶିକ୍ଷକ ଥିଲା ବେଳେ କବି ଗଡ଼ନାୟକଙ୍କୁ ଗଣିତ ପଢ଼ାଇ ତାଙ୍କର ମାଟ୍ରିକ ପାଶ୍. ପାଇଁ ସହାୟତା କରି ପାରିଥିଲି । ତାଙ୍କରି ପ୍ରେରଣାରେ ଓଡ଼ିଆ ଏମ୍.ଏ. ପରୀକ୍ଷା ଦେବାରେ ସମର୍ଥ ମଧ୍ୟ ହୋଇଥିଲି । ସେତେବେଳେ ବୈକୁଣ୍ଠନାଥ ପଟ୍ଟନାୟକ ଥିଲେ ଅନୁଗୁଳ ହାଇସ୍କୁଲର ପ୍ରଧାନ ଶିକ୍ଷକ । ଶ୍ରୀ ପଟ୍ଟନାୟକ ଅବଶ୍ୟ ନଟବର ବାବୁଙ୍କ ଏମ୍. ଏ.ପରୀକ୍ଷା ଦେଲା ବେଳକୁ କେତେକ ପ୍ରତିବନ୍ଧକ ସୃଷ୍ଟି କରିଥିଲେ । ଏଣୁ ଅଧ୍ୟାପକ ସାମନ୍ତରାୟ ତାଙ୍କର ଅଧ୍ୟାପନା କାଳରେ ବୈକୁଣ୍ଠନାଥ ପଟ୍ଟନାୟକଙ୍କ କବିତାର ମୂଲ୍ୟାୟନ କରିବାକୁ କୁଣ୍ଠା ପ୍ରକାଶ କରୁଥିଲେ । ତାଙ୍କର କାବ୍ୟ କବିତାର ସମୀକ୍ଷା କଲାବେଳେ କାଳେ ଅଲକ୍ଷିତ ଭାବରେ ତାଙ୍କ ପ୍ରତି କଠୋର ହୋଇଯିବେ, ଏଣୁ ତାଙ୍କ ବିଷୟରେ ମନ୍ତବ୍ୟ ନ ଦେବା ହିଁ ଶ୍ରେୟ ବୋଲି ହୁଏତ ସେ ମନେ କରୁଥିଲେ ।

ସ୍ନାତକୋତ୍ତର ଅଧ୍ୟୟନ କାଳରେ ଶ୍ରୀ ସାମନ୍ତରାୟ ଆମର ଅଧ୍ୟାପକ ଥିଲେ । ଆମ କ୍ଲାସରେ ସର୍ବମୋଟ ସାତଜଣ ଛାତ୍ର ଥିଲୁ । ଆମକୁ ପଢ଼ାଇଲା ବେଳେ ସାର୍‌ଙ୍କୁ ପ୍ରଗଳ୍ଭ ଭାଷଣ ଦେବାକୁ ପଡୁନଥିଲା । ଆଧୁନିକ ସାହିତ୍ୟର ଇତିହାସ ପଢ଼ାଇଲା ବେଳେ ବ୍ରିଟିଶ ଆଗମନ, ତତ୍କାଳୀନ ସାମାଜିକ ପରିସ୍ଥିତି, ଐତିହାସିକ ଘଟଣା ପ୍ରବାହ, ସାଂସ୍କୃତିକ ବିଘଟନ, ପାଶ୍ଚାତ୍ୟ ଶିକ୍ଷାଧାରାର ଅନୁପ୍ରବେଶ ପରି ବିଭିନ୍ନ କାରକର ଅବତାରଣା କରି, ତାହା କିପରି ସମୟ ଖଣ୍ଡରେ ଆଧାରିତ ତା'ର ରୂପ ଚିତ୍ର ବାଢୁଥିଲେ । ତାଙ୍କର ସମସ୍ତ ତଥ୍ୟ ଇତିହାସ ଆଧାରିତ ଥିଲା । ସେ ଓଡ଼ିଶାରେ ଐତିହାସିକ ସମୀକ୍ଷା ପଦ୍ଧତିର କର୍ଣ୍ଣଧାର ଥିଲେ । ତାଙ୍କର 'ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩-୧୯୨୦)', ବ୍ୟାସକବି ଫକୀରମୋହନ, ଯୁଗସ୍ରଷ୍ଟା କବିବର ରାଧାନାଥ, ଆଧୁନିକ ସାହିତ୍ୟ ପରି ଅଧିକାଂଶ

ଗ୍ରନ୍ଥରେ ଐତିହାସିକ ବିଚାରଧାରା ଅନୁସୃତ ହୋଇଛି । ଶ୍ରୀ ସାମନ୍ତରାୟ ଏସବୁ ଗ୍ରନ୍ଥରେ ସ୍ଥାନିତ ତଥ୍ୟାବଳୀ ଅଧ୍ୟାପନା କାଳରେ ପ୍ରଥମେ କ୍ଲାସରେ ସଂକ୍ଷେପରେ ଅବତାରଣା କରୁଥିଲେ । ତାଙ୍କର ତଥ୍ୟାବଳୀ କିପରି ବିଭିନ୍ନ ଦଲିଲ, ସମକାଳୀନ ପତ୍ରପତ୍ରିକା ଓ ବିଭିନ୍ନ ପ୍ରାମାଣିକ ସୂତ୍ରରୁ ପାଇଛନ୍ତି, ତା'ର ଚାକ୍ଷୁଷ ବିବରଣୀ ଦେଉଥିଲେ । ଆମେ ତାଙ୍କର ପରିଶ୍ରମ, ପ୍ରଚେଷ୍ଟା ଓ ଧୀଶକ୍ତିର ଦିଗନ୍ତ ଦେଖି ଚକିତ ହେଉଥିଲୁ । ସେ ଆଧୁନିକ ଓଡ଼ିଆ ସାହିତ୍ୟ ଆଲୋଚନାର ମୂଳଭିତ୍ତି ପକାଇ ଦେଇଥିଲେ ଏବଂ ଭବିଷ୍ୟତ ଗବେଷକମାନଙ୍କ ପାଇଁ ରାଜପଥ ନିର୍ମାଣ କରି ଦେଇଗଲେ । ଆମେ ମୁଷ୍ଟିମେୟ କେତେଜଣ ଛାତ୍ରଛାତ୍ରୀ ତାଙ୍କ ପ୍ରଦର୍ଶିତ ମାର୍ଗରେ ଚାଲିବା ପାଇଁ ମାନସିକ ସ୍ତରରେ ପ୍ରସ୍ତୁତ ହେଉଥିଲୁ । ପରେ ମୁଁ ଅଧ୍ୟାପକ ବୃତ୍ତି ଗ୍ରହଣ କଲାପରେ ବୁଝିଲି ଯେ ଶ୍ରୀ ସାମନ୍ତରାୟ ଆଧୁନିକ ସାହିତ୍ୟ ଗବେଷଣା ପାଇଁ ଯେଉଁ ପଥ ପ୍ରସ୍ତୁତ କରିଗଲେ, ବର୍ତ୍ତମାନର ଅଧିକାଂଶ ଗବେଷକ ସେହି ମାର୍ଗକୁ ବରଣ କରି ଚାଲିଛନ୍ତି ।

ଅଧ୍ୟାପକ ସାମନ୍ତରାୟ ଆଧୁନିକ ଓଡ଼ିଆ ସାହିତ୍ୟ ଚର୍ଚ୍ଚା ବିଶେଷତଃ ଐତିହାସିକ ସମୀକ୍ଷା ପଦ୍ଧତିର ଦିଗଦ୍ରଷ୍ଟା ମାନ୍ତ୍ରିକ ପୁରୁଷ । କ୍ଲାସରେ ଅଧ୍ୟାପନା କାଳରେ ସେ ଏ ଧାରା ପ୍ରତି ଗୁରୁତ୍ୱ ଦେଉଥିଲେ । 'ପାର୍ବତୀ' କିମ୍ବା 'ତପସ୍ୱିନୀ'ର କଥାବସ୍ତୁର ଆଲୋଚନା କାଳରେ ସେଗୁଡ଼ିକରେ ସମୟ ଚେତନାର ସ୍ୱରୂପ ଖୋଜି ବାହାର କରୁଥିଲେ । 'ପାର୍ବତୀ'ର ଗଙ୍ଗେଶ୍ୱର ଦେବ ରତ୍ନପୁରରୁ ପୁରୀ ଆସିବାକୁ କେତେ ସମୟ ନେଲେ, 'ତପସ୍ୱିନୀ'ରେ ସୀତା ନିର୍ବାସନର ସମୟ ଓ ବାଲ୍ମୀକି ଆଶ୍ରମରେ ତାଙ୍କର ରହଣି କାଳ ଆଦି ନିରୂପଣ କରି ତହିଁରେ କାଳର ଭୂମିକା ନିରୂପଣ କରୁଥିଲେ । ଏଣୁ ସମକାଳୀନ ଅଧ୍ୟାପକମାନେ ତାଙ୍କୁ ସନ ତାରିଖର ଅଧ୍ୟାପକ ବୋଲି ବି ଥଟ୍ଟା କରୁଥିଲେ । କିନ୍ତୁ ସେ ନିର୍ବିକାର ଭାବେ କାମ କରି ଚାଲିଥିଲେ, କେବେ ହେଁ ନିଜର ପଥରୁ ବିଚ୍ୟୁତ ହେଉ ନଥିଲେ ।

ଏବେ ଜଣେ ବୈଜ୍ଞାନିକ ପ୍ରଫେସର ଗ୍ୟୋର୍ଗୀ କେପସଙ୍କ 'ଚର୍ଚ୍ଚା' ପ୍ରବନ୍ଧ ପାଠ କରିବାର ସୁଯୋଗ ପାଇଲି । ତହିଁରେ ବୈଜ୍ଞାନିକ ଜଣକ ସୁକବି ବା ସୁଲେଖକ କିପରି ହେବା ଉଚିତ୍, ତା'ର ଆଲୋଚନା କରିଛନ୍ତି । ତାଙ୍କ ମତରେ ସୁଲେଖକର ମନ ହେବ ବିଜ୍ଞାନୀର ମନ, ହୃଦୟ ହେବ କବିର ହୃଦୟ ଏବଂ ଆଖି ହେବ ଚିତ୍ରକରର ଆଖି । ଏହି ପରିପ୍ରେକ୍ଷୀରେ ବିଚାର କଲେ ଶ୍ରୀ ସାମନ୍ତରାୟଙ୍କ ଠାରେ ଉପରୋକ୍ତ ଗୁଣମାନ ଥିଲା । ସେ ତ ବିଜ୍ଞାନୀର ମନ ନେଇ ସାହିତ୍ୟକୁ ବିଭିନ୍ନ ଦିଗରୁ ଆଲୋଚନା କରିଛନ୍ତି । ସମୟ କଷଟିରେ ତା'ର ସ୍ୱରୂପ ନିର୍ଦ୍ଧାରଣ କରିଛନ୍ତି । 'ଗଳ୍ପ ନୁହେଁ ସମାଲୋଚନା' ପରି କୃତିରେ 'ମାଟିର ମଣିଷ'ର ନେତ୍ରମଣି ପରି ବିଡ଼ମ୍ବିତ ଚରିତ୍ର ନିଜର ଡ଼ାଏରୀ ଲେଖି ପାଠକ ଆଖିକୁ ଲୋତକାପ୍ଳୁତ କରିଦିଏ । 'ଧରଣୀଧର ଓ ଚଷାପୁଅ' ପ୍ରବନ୍ଧର ମେଳିଆ ଧରଣୀଧରଙ୍କ ପ୍ରତି କବି ଗୋଦାବରୀଶ ମିଶ୍ରଙ୍କର ଦରଦ ଏବଂ ଚଷାପୁଅ ଚଢ଼େଇ ଆଧାରିତ ଲୋକ କଥାର ଉପସ୍ଥାପନାରେ କବିର ସମ୍ବେଦନଶୀଳ ମନର ଆଲୋଚନା ପ୍ରସଙ୍ଗରେ ଶ୍ରୀ ସାମନ୍ତରାୟ କବି ସୁଲଭ ହୃଦୟର ପରିଚୟ ଦିଅନ୍ତି । ଏଣେ ଚମ୍ପୂର ଲଳିତା ଚରିତ୍ର କିପରି ଆଧୁନିକ ମନ ଓ ମନନର ପ୍ରତିନିଧିତ୍ୱ କରେ, ତାହା ପ୍ରକାଶ କରି ଯାଇଛନ୍ତି । ଚମ୍ପୂରେ ବ୍ୟଞ୍ଜିତ ଶବ୍ଦଚିତ୍ର ମଧ୍ୟରେ ଲଳିତା କିପରି ଅନନ୍ୟା, ତାହା ଦର୍ଶାଯାଇଛି । ଅଧ୍ୟାପକ

ସାମନ୍ତରାୟ ଅଧ୍ୟାପନା କାଳରେ ଏସବୁ ବିଷୟ ଆମ ଆଗରେ ଉପସ୍ଥାପନ କରୁଥିଲେ, ଫଳରେ ଅଲକ୍ଷିତ ଭାବରେ ଆମେ ଯେତେ ଛାତ୍ର ତାଙ୍କର ଚର୍ଚ୍ଚା ପଦ୍ଧତି ଦ୍ୱାରା ଅନୁପ୍ରାଣିତ ହୋଇ ପଡୁଥିଲୁ ।

ପୂର୍ବରୁ କହିଛି ଆମେ ଦୁଇଜଣ ସ୍ୱତନ୍ତ୍ର ପତ୍ର ଅଧ୍ୟୟନ ବେଳେ ଅଧ୍ୟାପକ ସାମନ୍ତରାୟଙ୍କ ନିକଟତର ହୋଇ ପାରିଥିଲୁ । ସେ ଆମକୁ ସାତ ଆଠ ମାସ ଭିତରେ ଆଧୁନିକ ଓଡ଼ିଆ ସାହିତ୍ୟକୁ କିପରି ଅଧ୍ୟୟନ କରାଯିବ ଓ ସେ ସମ୍ପର୍କରେ ଯାହା କିଛି ପ୍ରଶ୍ନ ଆସିବ, ତା'ର ଉତ୍ତର କିପରି ପ୍ରସ୍ତୁତ କରିହେବ, ଆଲୋଚନା ଛଳରେ ତାହା ଦର୍ଶାଇ ଦେଉଥିଲେ । ତା ପରେ ମୃତ୍ୟୁଞ୍ଜୟ ଓ ମୁଁ ଭାଷାତତ୍ତ୍ୱ, ସାହିତ୍ୟର ଇତିହାସ ପ୍ରାଚୀନ ଓ ମଧ୍ୟଯୁଗୀୟ କାବ୍ୟ କବିତାକୁ କିପରି ସୀମିତ ସମୟ ଭିତରେ ଆୟତ୍ତ କରିହେବ ତା'ର ସୂତ୍ର ସମ୍ପର୍କରେ ପ୍ରଶ୍ନ କରିଥିଲୁ । ଆମ ପ୍ରଶ୍ନ ଶୁଣି ସେ ଆମକୁ କହିଥିଲେ- 'ନାନ୍ୟେ ସୁଖମସ୍ତି' । ଆମକୁ ଭାଷାତତ୍ତ୍ୱ ପାଇଁ ସୁନୀତ କୁମାର ଚାଟାର୍ଜ୍ଜୀଙ୍କ 'Origin and Development of Bengali Language' ବହି ପଢ଼ିବାକୁ କହିଲେ । କେନ୍ଦୁଝର ଧନୁର୍ଜୟ ନାରାୟଣ ହାଇସ୍କୁଲରୁ ଉକ୍ତ ଗ୍ରନ୍ଥର ୨ଟି ଯାକ ଭାଗ ଯୋଗାଡ଼ କରିଆଣି ପଢ଼ି ନୋଟ କରିନେଲୁ । ଓଡ଼ିଆ ସାହିତ୍ୟର ଇତିହାସ କିପରି ପଢ଼ିବାକୁ ହେବ, ଆଲୋଚନାର ସୌକାର୍ଯ୍ୟକଳ୍ପେ ସାହିତ୍ୟର ଇତିହାସକୁ କାଳ ଭେଦରେ କିପରି ବିଭାଜନ କରାଯିବ ଏବଂ ପ୍ରତି ଯୁଗର ମୁଖ୍ୟ ପ୍ରବୃତ୍ତି, ତା'ର ପ୍ରମୁଖ ସ୍ରଷ୍ଟାଙ୍କ ବିଷୟରେ କିପରି ଆଲୋଚନା କରାଯିବା ଦରକାର ସେ ସମ୍ପର୍କରେ ଧାରଣା ଦେଲେ । ଫଳରେ ଏମ୍.ଏ ଦ୍ୱିତୀୟଭାଗ ପରୀକ୍ଷାରେ ସର୍ବୋତ୍ତମ ଫଳ ଦେଖାଇବାରେ ସମର୍ଥ ହୋଇଥିଲି । ମୁଁ ଦିନେ କଥା ପ୍ରସଙ୍ଗରେ କ୍ଲାସରେ ପଚାରିଲି- ପଞ୍ଚସଖା, ପଞ୍ଚଶାଖା ପରି ଶବ୍ଦ ସବୁ କିପରି ଇତିହାସରେ ସ୍ଥାନ ପାଇଲେ । ଗୋପବନ୍ଧୁ ଦାସଙ୍କ ଜଗନ୍ନାଥ ଦାସ କବିତାରୁ କିପରି ପଞ୍ଚସଖା କଥାଟି ପ୍ରସରି ଯାଇ ସାହିତ୍ୟରେ ବ୍ୟବହୃତ ହୋଇଛି, ତାହା ସେ ବୁଝାଇ ଦେଇଥିଲେ । ପରେ ସମ୍ଭବତଃ ଅଧ୍ୟାପକ ସାମନ୍ତରାୟ ଏ ପ୍ରଶ୍ନର ସମୁଚିତ ଉତ୍ତର ଦେବାକୁ ଯାଇ 'ସଖାହୀନ ପଞ୍ଚସଖା' ଗ୍ରନ୍ଥ ରଚନା କରିଥିଲେ ।

ଆମେ ପଢ଼ିଲା ବେଳେ କଳସା ଚଉତିଶାର ନାମକରଣ, କାଳ ନିରୂପଣ, ଦୀନକୃଷ୍ଣ ଜଣେ ନା ଦୁଇଜଣ, ବଜାର ବୋଲି କାହାର ଓ ଶିଶୁବେଦ ସମ୍ପର୍କରେ ବିତର୍କ ଆରମ୍ଭ ହୋଇଥିଲା । ଅଧ୍ୟାପକ ସାମନ୍ତରାୟ ଶିଶୁବେଦର କାଳ ଓ ତା'ର ସାରସ୍ୱତ ଅବଦାନ ବିଷୟରେ ଅଧ୍ୟାପକ ବଂଶୀଧର ମହାନ୍ତିଙ୍କ ଆଲୋଚନାର ପ୍ରତି ଆଲୋଚନାରେ ଭାଗ ନେଇ ନିଜର ନିର୍ଭୀକ ମତ ପ୍ରଦାନ କରିଥିଲେ । ସେହିଦିନୁ ଅଧ୍ୟାପକ ଦ୍ୱୟଙ୍କ ମଧ୍ୟରେ ମତାନ୍ତର ପରବର୍ତ୍ତୀ କାଳରେ ମନାନ୍ତରରେ ରୂପ ନେଲା । ଅଧ୍ୟାପକ ସାମନ୍ତରାୟ ଉତ୍କଳ ବିଶ୍ୱ ବିଦ୍ୟାଳୟରେ ଅଧ୍ୟାପକ ହେବା ସମ୍ଭବ ହେଲାନାହିଁ । ଉତ୍ତର କାଳର ଛାତ୍ର ଗୋଷ୍ଠୀ ତାଙ୍କର ପ୍ରତ୍ୟକ୍ଷ ଦିଗଦର୍ଶନ ପାଇବାରୁ ବଞ୍ଚିତ ହେଲେ । ଡକ୍ଟର ସାମନ୍ତରାୟ ବକ୍ସି ଜଗବନ୍ଧୁ ମହାବିଦ୍ୟାଳୟରୁ ହିଁ ଅବସର ନେଲେ ।

ଆଉ ଏକ କଥା । ଡକ୍ଟର ସାମନ୍ତରାୟ ଥିଲେ ଅନମନୀୟ ବ୍ୟକ୍ତିସତ୍ତା । ସେ କାଉଁରିଆ କାଠି ପରି । ଭାଙ୍ଗିବେ ପଛେ ନଇଁବେ ନାହିଁ । ତାଙ୍କୁ ଯେତେବେଳେ ବିଶ୍ୱବିଦ୍ୟାଳୟ

ଅନୁଦାନ ଆୟୋଗ ଆନୁକୂଲ୍ୟରେ ଅବସର ଗ୍ରହଣ ପରେ ପରିଦର୍ଶୀ ଅଧ୍ୟାପକ ଭାବେ ନିଯୁକ୍ତି ମିଳିଲା, ସେ ରେଭେନ୍ସା କଲେଜର ସ୍ନାତକୋତ୍ତର ବିଭାଗକୁ ନିଜର କର୍ମସ୍ଥଳୀ ରୂପେ ବାଛିନେଲେ । ଯଦିଓ ଭୁବନେଶ୍ୱରର ସାମନ୍ତରାପୁରରେ ଘର କରି ରହୁଥିଲେ ତଥାପି ବାଣୀବିହାରକୁ ନିଜର ଶିକ୍ଷାଦାନ କ୍ଷେତ୍ର ରୂପେ ଗ୍ରହଣ କରି ନଥିଲେ । ୧୯୭୫-୭୬ ସାଲର କଥା । ସେତେବେଳେ ସମୟକ୍ରମେ ମୁଁ ମଧ୍ୟ ରେଭେନ୍ସା କଲେଜରେ ଅବସ୍ଥାପିତ ହୋଇଥିଲି । ସାର୍ ସପ୍ତାହକୁ ଦୁଇଦିନ ଆସି କ୍ଲାସ ନେଉଥିଲେ । ତାଙ୍କୁ ଓଡ଼ିଆ ସାହିତ୍ୟର ଇତିହାସ ଆଧୁନିକ ପର୍ଯ୍ୟାୟର ଅଧ୍ୟାପନା ଦାୟିତ୍ୱ ଦିଆଯାଇଥିଲା । ସେ ନିରୂପିତ ସମୟରେ ପାଠ୍ୟ ନିର୍ଘଣ୍ଟ ଶେଷ କରିଥିଲେ । ଏହି ସମୟରେ ମୁଁ ଡି.ଲିଟ୍ ଡିଗ୍ରୀ ପାଇଲି । ଡକ୍ଟର ମହାନ୍ତି କି ପରିସ୍ଥିତିରେ ମୋର ଦିଗଦର୍ଶକ ହେଲେ, ତା'ର ବିବରଣୀ ଦେଲି । ତାହା ଶୁଣିବାକୁ ସେ ପ୍ରସ୍ତୁତ ନଥିଲେ । ଏଥିପାଇଁ ତାଙ୍କର ଓ ମୋ ଭିତରେ ଭୁଲ ବୁଝାମଣା ହେଲା । ବହୁଦିନ ପରେ ଡକ୍ଟର ଶ୍ରୀନିବାସ ସାହୁ ଯେ କି ସେ ସମୟରେ ରେଜିଷ୍ଟ୍ରାର ଥିଲେ ଓ ପୁଣି ଯେ କି ମୋର ଭୁବନେଶ୍ୱରରେ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥାରେ ଭାଷା ବିଶେଷଜ୍ଞ ରୂପେ ଅବସ୍ଥାନ କାଳରେ ସଂସ୍ଥାର ନିର୍ଦ୍ଦେଶକ ଥିଲେ, ତାଙ୍କ ସହ ଡକ୍ଟର ସାମନ୍ତରାୟଙ୍କ ଦିନେ ସାକ୍ଷାତ ହେଲା । କଥା ପ୍ରସଙ୍ଗରେ ଅଧ୍ୟାପକ ସାମନ୍ତରାୟ ମୋର ଡକ୍ଟରେଟ୍ ଲାଭ ବିଷୟ ଉଠାଇଲେ, ଡକ୍ଟର ସାହୁ ଆମୂଳଚୂଳ ସବୁ ବିବରଣୀ ଦେଲେ । ସେତେବେଳେ ସାର୍‌ଙ୍କ ଦୁର୍ବାସା ରୂପ ହଠାତ୍ ସ୍ନେହ ଦରଦର ହୋଇ ଯାଇଥିଲା । କିନ୍ତୁ ଏତିକି ବେଳକୁ ମୁଁ ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ପ୍ରଫେସର ରୂପେ ଯୋଗ ଦେଇଥାଏ । ଥରେ ଭୟ ଚକିତ ଭାବେ ତାଙ୍କର ସାମନ୍ତରାପୁର ବାସଭବନରେ ସାକ୍ଷାତ କରିବାକୁ ଗଲି । ମୁଁ ଭାବୁଥିଲି ସାର୍ ପାଟିତୁଣ୍ଡ କରିବେ; କିନ୍ତୁ ଦେଖିଲି ଆଖିରେ ଝଡ଼ ନାହିଁ; ଥିଲା ବିନ୍ଦୁ ବିନ୍ଦୁ ଲୁହଧାର ଓ ସ୍ନେହ ସଜଳ ଦୃଷ୍ଟି ।

ପୁଣି କିଛି ଦିନପରେ ଉତ୍କଳ ବିଶ୍ୱବିଦ୍ୟାଳୟକୁ ପାଠ୍ୟ ପରିଷଦର ସଦସ୍ୟ ରୂପେ ଆସିଥାଏ, ଶୁଣିଲି- ସାର୍ ଖଟରୁ ପଡ଼ି ଯାଇଛନ୍ତି । ତାଙ୍କର ଗୋଡ଼ ଭାଙ୍ଗିଯାଇଛି । ସେ ଡାକ୍ତର ଜଗନ୍ନାଥ ମହାପାତ୍ରଙ୍କ ସହିଦନଗର କ୍ଲିନିକ୍‌ରେ ଚିକିତ୍ସିତ ହେଉଛନ୍ତି । ବାଣୀ ବିହାରରେ କାମସାରି ତାଙ୍କୁ ଦେଖିବାକୁ ଗଲି । ସେ ମୋତେ ଦେଖି କାନ୍ଦିବାକୁ ଆରମ୍ଭ କଲେ । ତାଙ୍କୁ ଦେଖିଲା ମାତ୍ରେ ମୋ ଆଖିରୁ ବି ଶ୍ରାବଣଧାରା ପରି ଲୁହ ଝରିଲା । ସାର୍‌ଙ୍କ ଦ୍ୱିତୀୟପୁତ୍ର ଶମ୍ଭୁପ୍ରସାଦ ଉପସ୍ଥିତ ଥିଲେ । ଲୁହରେ ଲୁହରେ ହିଁ ଗୁରୁଛାତ୍ରଙ୍କ ଭାବ ବିନିମୟ ହୋଇଥିଲା । ପରେ ଶମ୍ଭୁପ୍ରସାଦ ତାଙ୍କ ପିତାଙ୍କ ଦୁର୍ଘଟଣା ଘଟିବାର ବିବରଣୀ ଦେଇଥିଲେ ।

ଏହା ପରେ ଅଧ୍ୟାପକ ସାମନ୍ତରାୟ ଆଶାବାଡ଼ି ଧରି ଚଲାବୁଲା କରୁଥାନ୍ତି । ତାଙ୍କ ବାସଭବନକୁ ଅନେକ ଥର ସାକ୍ଷାତ କରିବାକୁ ଯାଇଛି । ସବୁବେଳେ ସାର୍‌ଙ୍କ ଅଭିଯୋଗ ମୋର ସମୀକ୍ଷା ଧାରାର ଉତ୍ତରାଧିକାରୀ ତୁ ହେବୁ ବୋଲି ଆଶା କରୁଥିଲି । କିନ୍ତୁ ହେଲା କଣ ? ମୁଁ କହିଥିଲି- ଯୁଗେ ଯୁଗେ ଦ୍ରୋଣାଚାର୍ଯ୍ୟମାନେ ଗୋଟେ ଗୋଟେ ଅର୍ଜୁନ ସୃଷ୍ଟି କରିବାକୁ ଚାହାନ୍ତି । ମୋ କଥାଶୁଣି ସେ ଗମ୍ଭୀର ହୋଇ ଉଠୁଥିଲେ । ତାଙ୍କର ଆଖିରେ ଲୁହ ଚକେଇ ଉଠୁଥିଲା ।

ଆଉ ଦିନକର କଥା । ମୋର ଛାତ୍ର ସତ୍ୟ ପଟ୍ଟନାୟକଙ୍କ ସଙ୍ଗେ ତାଙ୍କର ସାକ୍ଷାତ

ହେଲା, ଯେ କି ତାଙ୍କର ମଧ୍ୟ ଛାତ୍ର ଥିଲେ । ସେ ପୁଷ୍ପ ସଂପ୍ରୀତି, କବିଦୃଷ୍ଟି ସମ୍ପର୍କରେ ଗବେଷଣା କରୁଥିବା କଥା କହିଲେ । ଶ୍ରୀ ସାମନ୍ତରାୟ ହଠାତ୍ କହି ଉଠିଲେ ଏ ବିଷୟ଼ ଶରତ ନିଶ୍ଚୟ ଦେଇଥିବ । ଏଥିରୁ ପ୍ରତିପାଦିତ ହୁଏ ଯେ ଶ୍ରୀ ସାମନ୍ତରାୟ ଆମର ମାନସିକତାକୁ ଧରି ନେଇ ପାରୁଥିଲେ । ଆମର ଅଲକ୍ଷିତରେ ଆମ ସମ୍ପର୍କରେ ନିଜର ଅଧ୍ୟାପକୀୟ ଟିପ୍ପଣୀମାନ ଦେଉଥିଲେ । ଭୀମ ବଳ କଇନ୍ତାଙ୍କ ଜଣା ନ୍ୟାୟରେ ସେ ଆମ୍ଭମାନଙ୍କର ଶକ୍ତି ସାମର୍ଥ୍ୟ ସମ୍ପର୍କରେ ମୂଲ୍ୟାୟନ କରୁଥିଲେ । ସେ ଆମର ଅନ୍ତର୍ନିହିତ ଭାବବୋଧକୁ କଳନା କରି ପାରୁଥିଲେ ।

ଅଧ୍ୟାପକ ବାବାଜୀ ଚରଣ ପଟ୍ଟନାୟକଙ୍କର ସାର୍‌ଙ୍କ ସହ ଆନ୍ତରିକତା ଗଢ଼ି ଉଠିଥିଲା । ସେ ତ ତାଙ୍କର ସ୍ନାତକ ଶ୍ରେଣୀର ଛାତ୍ରଥିଲେ । ଶ୍ରୀ ପଟ୍ଟନାୟକଙ୍କର ଗବେଷଣା ବିଷୟ଼ 'ଓଡ଼ିଆ କାବ୍ୟ କବିତାରେ ଚନ୍ଦ୍ର ପ୍ରସଙ୍ଗ' ଶୁଣିଲା ମାତ୍ରେ ଏ ନିବନ୍ଧର୍ ଦିଗଦର୍ଶକ ଶରତ ନିଶ୍ଚୟ କହି ଆନନ୍ଦରେ ଉତ୍‌ଫୁଲ୍ଲିତ ହୋଇ ବାବାଜୀଙ୍କୁ ଆଶୀର୍ବାଦ କରିଥିଲେ । ବାବାଜୀର ପଠନ ସ୍ପୃହାକୁ ତାରିଫ କରି ଆଉ କେତେକ ଦିଗଦର୍ଶନ ଦେଇଥିଲେ । ଏ ରୂପେ ବଖାଣି ବସିଲେ ସାର୍‌ଙ୍କ ପାଠପଢ଼ା ପ୍ରସଙ୍ଗର କାହାଣୀ ଲମ୍ବି ଲମ୍ବି ଯାଏ । ସେ କ୍ଲାନ୍ତ ଆଖିପତା ଓ ପାଣ୍ଡୁର ସ୍ନାୟୁରେ ନୂଆ ଆକାଶ, ନୂଆ ଧରାକୁ ଖୋଜି ବୁଲୁଥିଲେ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ । ତିରୋଧାନର କିଛିଦିନ ପୂର୍ବରୁ ବି ଫକୀର ମୋହନ ଗ୍ରନ୍ଥାବଳୀର ପ୍ରଥମ ସଂସ୍କରଣ ଖୋଜୁଥିଲେ, କିଛି ଅସମାହିତ ପ୍ରଶ୍ନର ସମାଧାନ ହୁଏତ କରିବାକୁ । ସେତେବେଳେ ସାରଙ୍କ ଫୋନ ଧରିଥିଲେ ମୋର ପତ୍ନୀ । ମୁଁ ଥିଲି ଅହମ୍ମଦାବାଦରେ । ମୋ ପତ୍ନୀ ଖବର ଦେଇଥିଲେ । ତା'ର କିଛିଦିନ ପରେ ଅହମ୍ମଦାବାଦରୁ ସାନପୁଅ ପାଖରୁ ସୁରଟକୁ ଯାଇ ବଡ ପୁଅ ପାଖରେ ପହଞ୍ଚିଲା ବେଳକୁ ଖବର ପାଇଲି ସାର୍ ନାହାନ୍ତି । ଆଖିରୁ ଲୁହ ଝରି ଆସିଲା । ସାର୍‌ଙ୍କ ସହ ଆଉ ସାକ୍ଷାତ ହୋଇ ପାରିଲା ନାହିଁ । ମହାପ୍ରୟାଣ ବେଳେ ଶେଷ ଦର୍ଶନରୁ ବଞ୍ଚିତ ହେଲା ଏଇ ଅବାଧ୍ୟ ଛାତ୍ରଟି ।

*ମଠ ସାହି, ଯୋବ୍ରା, କଟକ -୩*

## ନଟବର ବାଣୀ

ସୃଷ୍ଟିର ଆଦର୍ଶ ଯେତେବେଳେ ହୁଏ ଉଚ୍ଚ ଓ ବିରାଟ ସେତେବେଳେ ସ୍ରଷ୍ଟାର ଅଭିନିବିଷ୍ଟତା ତଥା ସୃଷ୍ଟି ତନ୍ମୟତା ହୁଏ ଗଭୀର ଓ ବ୍ୟାପକ । କିନ୍ତୁ ସୃଷ୍ଟି ଧ୍ୟାନରେ ଏ ଅଭିନିବିଷ୍ଟତା ଥରେ ବ୍ୟାଘାତ ପାଇଲେ ଧ୍ୟାନ ହୁଏ ବିଭ୍ରଷ୍ଟ; ଫଳରେ ସୃଷ୍ଟି ହୁଏ ବିକଳାଙ୍ଗ ।

*ରାଧାନାଥ ଓ ଚିଲିକା କାବ୍ୟ (୧୯୬୦) ପୃ୧୦*

# ଆଦର୍ଶ ଶିକ୍ଷକ
# ନିର୍ଭୀକ ସାହିତ୍ୟ- ସମାଲୋଚକ

ଡଃ ବିଭୂତି ପଟ୍ଟନାୟକ

ନଟବାବୁଙ୍କ ସହିତ ପ୍ରଥମେ ଦେଖା ହୋଇଥିଲା ପ୍ରାୟ ଛବିଶ ବର୍ଷତଳେ । ଜଗନ୍ନାଥ ରଥଙ୍କ ଦୋକାନରେ, କଟକର ବିନୋଦ ବିହାରୀରେ । ସେତେବେଳେ ଜଗନ୍ନାଥ ରଥ ତାଙ୍କର 'ଆଧୁନିକ ଓଡ଼ିଆ ସାହିତ୍ୟର ଭିତ୍ତିଭୂମି' ବହିଟି ଛାପୁଥିଲେ । ମୁଁ ସେତେବେଳେ ତାଙ୍କର ଗବେଷଣା ନିବନ୍ଧ 'ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩-୧୯୨୦)' ଗ୍ରନ୍ଥ ପଢ଼ି ତାଙ୍କର ଜଣେ ଅନୁରାଗୀ ପାଠକ ହୋଇ ଯାଇଥିଲି ।

କିନ୍ତୁ ତାଙ୍କ ସମାଲୋଚନାତ୍ମକ ପ୍ରବନ୍ଧ ପଢ଼ି ତାଙ୍କର ଚେହେରା ସମ୍ପର୍କରେ ମୋର ଯେଉଁ କାଳ୍ପନିକ ଧାରଣା ଥିଲା, ପ୍ରଥମ ଦେଖାରେ ସେ ଧାରଣା ସହିତ ତାଙ୍କ ବ୍ୟକ୍ତିତ୍ୱର ମେଳ ଖାଉ ନଥିଲା । ମଧ୍ୟମ ଆକାରର ଉଚ୍ଚତା, ସାଧାରଣ ସ୍ୱାସ୍ଥ୍ୟ, ଧୋତି ଓ ପୁରା ହାତର ଜାମା, ସବୁଠାରୁ ଲକ୍ଷଣୀୟ ବୈଶିଷ୍ଟ୍ୟ ଥିଲା ତାଙ୍କର ଆକର୍ଷଣୀୟ ବୁଦ୍ଧିଦୀପ୍ତ ଦୁଇଟି ଆଖି । କଣ୍ଠ ସ୍ୱର ଥିଲା ଧୀର ଏବଂ ପ୍ରାଞ୍ଜଳ । ତାଙ୍କର ସେ ଉଜ୍ଜ୍ୱଳ ତୀକ୍ଷ୍ଣ ଆଖିର ଚାହାଣୀରେ ଉତ୍କୀର୍ଣ୍ଣ ହୋଇ ରହିଥିଲା ତାଙ୍କର ଗଭୀର ଅନ୍ତର୍ଦୃଷ୍ଟି, ଅନୁସନ୍ଧିତ୍ସା ଏବଂ ଜ୍ଞାନ ପିପାସା ।

୧୯୭୦ ମସିହାରେ ଭୁବନେଶ୍ୱର ବକ୍ସି ଜଗବନ୍ଧୁ ମହାବିଦ୍ୟାଳୟରେ ଓଡ଼ିଆ ଭାଷା ସାହିତ୍ୟର କନିଷ୍ଠ ଅଧ୍ୟାପକ ଭାବରେ ଯୋଗଦେଲା ପରେ ମୁଁ ନଟ ବାବୁଙ୍କର ସହକର୍ମୀ ହୋଇଗଲି । ତା' ପରେ ତାଙ୍କର ଅନେକ ବହି ପଢ଼ିଛି । ସେତେବେଳେ କଲିକତାରୁ ପ୍ରକାଶ ପାଉଥିବା 'ନବରବି' ପାଇଁ ତାଙ୍କ ପଛେ ପଛେ ଲାଗି କେତେ ଗୁଡ଼ିଏ ପ୍ରବନ୍ଧ ଲେଖାଇ ନେଇଛି । ଯେତେ ଯେତେ ତାଙ୍କର ସମୀପବର୍ତ୍ତୀ ହୋଇଛି ସେତେ ଅଧିକ ତାଙ୍କର ପଠେନୁସନ୍ଧିତ୍ସା ଏବଂ ଜ୍ଞାନର ଗଭୀରତାର ପରିଚୟ ପାଇଛି । ଗଳ୍ପ, ଉପନ୍ୟାସ କିମ୍ବା କାବ୍ୟ, ନାଟକ ଭଳି ସାହିତ୍ୟ- ସମାଲୋଚନା ଯେ ଏକ ମୌଳିକ ସୃଷ୍ଟିକର୍ମ ତାଙ୍କର 'ଧରଣୀଧର ଓ ମୁଁ ଚଷାପୁଅ', 'ନେତ୍ରମଣିର ଡାଇରୀ', 'ପାଗଳା ଭଗିଆର ଜମାନବନ୍ଦି'; ଏପରି କି 'ଲଳିତା' ଭଳି ଲଳିତ ନିବନ୍ଧ ପଢ଼ି ଯେ କୌଣସି ପାଠକ ଅନୁଭବ କରିପାରିବ । ସାହିତ୍ୟର ଜଟିଳ ତତ୍ତ୍ୱ ଓ ମୂଳ ସୂତ୍ର ଉଦ୍‌ଘାଟନ କରିବା ପାଇଁ ସେ ଯେପରି ଭାବରେ ସମାଲୋଚନାତ୍ମକ ପ୍ରବନ୍ଧରେ ମଧ୍ୟ ଅଭିନବ ଆତ୍ମିକ ପ୍ରୟୋଗ କରି ସାହିତ୍ୟ- ରସିକ ପାଠକମାନଙ୍କ ହୃଦୟ ଜୟ କରିଛନ୍ତି, ତାହା ତାଙ୍କ ସୃଜନଶୀଳ ମାନସିକତାର ସୁସ୍ପଷ୍ଟ ନିଦର୍ଶନ ।

ଏକଦା ଡେଲାଙ୍ଗ ଅଞ୍ଚଳର ଲେମ୍ବାଇ ପ୍ରଗଣା ଥିଲା ପୁରୀ ରାଜାଙ୍କ ଜମିଦାରୀ । କର୍ଣ୍ଣୱାଲିସଙ୍କ ପ୍ରବର୍ତ୍ତିତ ସୂର୍ଯ୍ୟାସ୍ତ ଆଇନ ବଳରେ ସେ ଜମିଦାରୀ ନିଲାମ ଧରି ନେଇଥିଲେ

ପାରଳା ମହାରାଜା । ସେଇ ଇେମ୍ବାଇ ପ୍ରଗଣାରେ ଡେଲାଙ୍ଗର ତହସିଲଦାର ଭାବରେ କାର୍ଯ୍ୟ କରୁଥିଲେ, ନଟବର ବାବୁଙ୍କ ପିତା ରାସବିହାରୀ ସାମନ୍ତରାୟ । ଡେଲାଙ୍ଗ ମାଇନର ସ୍କୁଲରୁ ସେ ମାଇନର ପାସ୍ କଲାପରେ ପରିବାରର ପୂର୍ବ ଆର୍ଥିକ ସ୍ୱଚ୍ଛଳତା ନଥିଲା । କିଶୋର ନଟବରଙ୍କୁ ପୁରୀ ଜିଲ୍ଲା ସ୍କୁଲରେ ମାଟ୍ରିକ ପାସ୍ କରିବା ପାଇଁ ବିଭିନ୍ନ ଜାଗାରେ ଆଶ୍ରୟ ନେବାକୁ ପଡ଼ିଥିଲା । ନବମ ଶ୍ରେଣୀରେ ପଢ଼ିଲା ବେଳେ ପୁରୀ ଦଇତାପତି ସାହିରେ ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ ନାମକ ଜଣେ ସହପାଠୀ ଘରେ, ତା'ପରେ ଜିଲ୍ଲା ସ୍କୁଲ ପ୍ରଧାନ ଶିକ୍ଷକ ହରିହର ମିଶ୍ରଙ୍କ ଉଦ୍ୟମରେ ମଙ୍ଗୁମଠ ଓ ପରେ ବ୍ରାହ୍ମଣ ସମିତି ବୋର୍ଡିଂରେ ରହି ସେ ଦ୍ୱିତୀୟ ଶ୍ରେଣୀରେ ମାଟ୍ରିକ ପାସ୍ କରିଥିଲେ । ଏ ହେଉଛି ୧୯୩୬ ମସିହା କଥା । ସେତେବେଳେ ଉଚ୍ଚ ଶିକ୍ଷାପାଇଁ ଏକମାତ୍ର କଲେଜ ଥିଲା ରେଭେନ୍ସା କଲେଜ । ଏହି କଲେଜରେ ପଢ଼ିବା ଲାଗି ମେସ୍ କିମ୍ବା ହଷ୍ଟେଲରେ ରହି ତାଙ୍କୁ ପଢ଼ାଇବା ପାଇଁ ଘରେ ସମ୍ବଳ ନଥିଲା । କଲେଜରେ ପଢ଼ି ପାରିବେ ନାହିଁ - ଏ ଦୁଃଖରେ ଭାଙ୍ଗି ପଡ଼ିବା ଭଳି ପିଲା ନଥିଲେ ନଟବର । ଏମାର ମଠର ରଘୁନନ୍ଦନ ପାଠାଗାରକୁ ସେ ନିୟମିତ ବହି ପଢ଼ିବାକୁ ଯାଉଥିଲେ । ସେଠାରେ ସେ 'ହିମାଳୟ ପଥେ' ନାମକ ଏକ ବହି ପଢ଼ି ଜାଣିଲେ ଯେ ବନାରସ, ହେଉଛି ଜ୍ଞାନତୀର୍ଥ, ସେଠାରେ ଅନେକ ମେଧାବୀ ଛାତ୍ର ଅନ୍ୟମାନଙ୍କ ସହାୟତାରେ ଉଚ୍ଚଶିକ୍ଷା ଲାଭ କରନ୍ତି । ବାସ୍, କିଶୋର ନଟବର ରେଲଷ୍ଟେସନରୁ ଗୋଟିଏ ଭାରତ ବର୍ଷର ମାନଚିତ୍ର କିଣି ବାହାରି ପଡ଼ିଲେ ଉଚ୍ଚ ଶିକ୍ଷାର ଅନ୍ୱେଷଣରେ ବନାରସ ।

ପ୍ରଥମେ ଜାମସେଦପୁର ଏବଂ ସେଠାରୁ ଆରମ୍ଭ ହେଲା ବନାରସ ଯାତ୍ରା । ସେଠାରେ ୩୪ ନମ୍ବର କାମାକ୍ଷା ଲେନ୍‌ରେ ଦୁର୍ଗାଚରଣ ଚଟ୍ଟୋପାଧ୍ୟାୟଙ୍କ ଆଶ୍ରମରେ ରହି ଘରୋଇ ଭାବରେ ଆରମ୍ଭ କଲେ ଆଇ.ଏ ପରୀକ୍ଷା ଲାଗି ପ୍ରସ୍ତୁତି । ପାଠ୍ୟବସ୍ତୁ ଥିଲା ଇଂରେଜୀ, ସଂସ୍କୃତ, ଗଣିତ, ଗ୍ରୀକ୍ ଇତିହାସ ଏବଂ ଭୂଗୋଳ । ସେତେବେଳେ ଯୁକ୍ତ ପ୍ରଦେଶର ବିଶ୍ୱବିଦ୍ୟାଳୟ ମାଧ୍ୟମିକ ଏବଂ ଉଚ୍ଚ ମାଧ୍ୟମିକ, ଆଇ.ଏ ପରୀକ୍ଷା ପରିଚାଳନା କରୁଥିଲେ । ସେଠାରୁ ୧୯୩୯ ମସିହାରେ ୨ୟ ଶ୍ରେଣୀରେ ଆଇ.ଏ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ନଟବର ପୁଣି ଓଡ଼ିଶା ଫେରି ଆସିଲେ ।

ଦାଦାପୁଅ ଭାଇ ସୁଧାନିଧି ସାମନ୍ତରାୟଙ୍କ ସହାୟତାରେ ରେଭେନ୍ସା କଲେଜରେ ବି.ଏ ଶ୍ରେଣୀରେ ତାଙ୍କ ନାମ ଲେଖା ହେଲା । ସେତେବେଳେ ମାସିକ ମେସ୍ ଖର୍ଚ୍ଚ ଥିଲା ନଅ ଟଙ୍କା । ଭାଇ ପଠାଉ ଥିଲେ ଛ'ଟଙ୍କା, ଗରିବ ପିଲାଙ୍କୁ କଲେଜ ତରଫରୁ ଦିଆଯାଉ ଥିବା ସାହାଯ୍ୟ ପାଣ୍ଠିରୁ ସେ ପାଉଥିଲେ ତିନି ଟଙ୍କା । ବି.ଏ ରେ ତାଙ୍କର ପାଠ୍ୟ ବସ୍ତୁ ଥିଲା ସଂସ୍କୃତରେ ଅନର୍ସ ଏବଂ ଗଣିତରେ ପାସ୍ । ସେତେବେଳେ ତାଙ୍କର ସଂସ୍କୃତ ଅଧ୍ୟାପକ ଥିଲେ ଆର୍ତ୍ତବଲ୍ଲଭ ମହାନ୍ତି ଏବଂ ଗଣିତ ଅଧ୍ୟାପକ ଥିଲେ ବାମା ଚରଣ ଦାସ, ରମାନାଥ ମହାନ୍ତି ଏବଂ ଇନ୍ଦୁ ଭୂଷଣ ଦାଶଗୁପ୍ତ । ୧୯୪୧ ମସିହାରେ ସେ ଦ୍ୱିତୀୟ ଶ୍ରେଣୀରେ ବି.ଏ ପାସ୍ କରି କଟକ ରାଧାନାଥ ଟ୍ରେନିଂ କଲେଜରେ ଡି.ଇଡ଼ି ପଢ଼ିଥିଲେ ।

ତା'ପରେ ଆରମ୍ଭ ହୋଇଥିଲା ତାଙ୍କର କର୍ମମୟ ଜୀବନ । ୧୯୪୩ ମସିହାରେ ଭୁବନେଶ୍ୱର ଭକ୍ତ ମଧୁ ବିଦ୍ୟାପୀଠରେ ଗଣିତ ଶିକ୍ଷକ, ଫୁଲବାଣୀର ଦାରିଙ୍ଗବାଡ଼ି ଏବଂ

ପରେ ମୋହନାରେ ସ୍କୁଲ ବିଭାଗର ଜୁନିୟର ଡେପୁଟି ଇନ୍ସପେକ୍ଟର ଭାବରେ ଗୋଟିଏ ବର୍ଷ କାମ କଲା ପରେ ୧୯୪୪-୪୫ ମସିହାରେ ଅନୁଗୁଳ ହାଇସ୍କୁଲକୁ ଗଣିତ ଶିକ୍ଷକ ଭାବରେ ବଦଳି ହୋଇ ଆସିଥିଲେ ।

୧୯୪୬ ରେ ବିବାହ ।

୧୯୪୮ ମସିହାରେ ଗୋପାଳ ଚନ୍ଦ୍ର ମିଶ୍ର, ଶାନ୍ତିଦେବୀ ଓ ସର୍ବେଶ୍ୱର ଦାସ ପ୍ରମୁଖଙ୍କ ସହ ଘରୋଇ ଭାବରେ ଓଡ଼ିଆରେ ଏମ.ଏ ପରୀକ୍ଷା ଦେଇ ସେ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ ।

୧୯୩୨ ରୁ ୧୯୪୨-ଏର ଦଶ ବର୍ଷଥିଲା ନଟବର ବାବୁଙ୍କ ଜୀବନରେ ସବୁଠାରୁ ସଂଘର୍ଷମୟ ସମୟ । ଦାରିଦ୍ର୍ୟ, ଅନାହାର, ଘରଛାଡ଼ି ବାହାରେ ଇତଃସ୍ତତ ଭ୍ରମଣ- ଏହି ସବୁ ଭିତରେ ସର୍ବୋଚ୍ଚ ଡିଗ୍ରୀ ହାସଲ କରିବାର ଇଚ୍ଛା ଏବଂ ଅଧ୍ୟାପକ ହେବାର ସ୍ୱପ୍ନ ତାଙ୍କୁ ନିମଜ୍ଜିତ କରି ରଖିଥିଲା । ୧୯୪୮ ମସିହାରେ ଓଡ଼ିଆରେ ଏମ.ଏ ପାସ୍ କରି ୧୯୪୯ ମସିହାରେ ବାରିପଦାରେ ଅଧ୍ୟାପକ ଭାବରେ ନିଯୁକ୍ତି ପାଇଲା ପରେ ତାଙ୍କର ସେ ସ୍ୱପ୍ନ ସଫଳ ହୋଇଥିଲା ।

ସେ ବାରିପଦାରେ ଅବସ୍ଥାନ ଓ ଅଧ୍ୟାପନା କଲେ । ସମୟକ୍ରମେ ପ୍ରତ୍ନତତ୍ତ୍ୱବିତ୍ ପରମାନନ୍ଦ ଆଚାର୍ଯ୍ୟଙ୍କ ସହ ତାଙ୍କର ଘନିଷ୍ଠତା ତାଙ୍କ ଆଖି ଆଗରେ ଆଉ ଗୋଟିଏ ନୂତନ ଜଗତର ଦ୍ୱାର ଉନ୍ମୋଚନ କରି ଦେଇଥିଲା । ପରମାନନ୍ଦ ଆଚାର୍ଯ୍ୟଙ୍କର ଥିଲା ଏକ ପରମାଶ୍ଚର୍ଯ୍ୟ ବ୍ୟକ୍ତିଗତ ପାଠାଗାର- ଯେଉଁଠି ସଂରକ୍ଷିତ ହୋଇ ରହିଥିଲା ଚାଳିଶି ବର୍ଷର ପୁରୁଣା 'ଉତ୍କଳ ସାହିତ୍ୟ', 'ମୁକୁର' ଏବଂ 'ନବଭାରତ' ପତ୍ରିକାର ବହୁ ଦୁଷ୍ପ୍ରାପ୍ୟ ସଂଖ୍ୟା ଏବଂ ତା' ସହିତ ଅଜସ୍ର ଦୁର୍ଲ୍ଲଭ ଗ୍ରନ୍ଥ । ଦୀର୍ଘ ଛ'ବର୍ଷ କାଳ ପରମାନନ୍ଦ ବାବୁ କେବଳ ନଟବର ବାବୁଙ୍କ ପାଇଁ ନିଜ ପାଠାଗାରର ଦ୍ୱାର ଉନ୍ମୁକ୍ତ କରି ଦେଇ ନଥିଲେ, ପାଠାଗାରରେ ବହି ପଢ଼ିବା ଏବଂ ନୋଟ କରିବା ସମୟରେ ତା'ଙ୍କୁ ଚା', ଜଳଖିଆ ମଧ୍ୟ ନିୟମିତ ଯୋଗାଇ ଦେଉଥିଲେ । ଏହି ପାଠାଗାରରେ ଅଧ୍ୟୟନ ଓ ଅନୁଶୀଳନ ଫଳରେ ଅଧ୍ୟାପକ ନଟବର ଗବେଷକ ନଟବର ସାମନ୍ତରାୟରେ ରୂପାନ୍ତରିତ ହେଲେ । ଆଇ.ଏ କିମ୍ବା ବି.ଏ ପଢ଼ିଲା ବେଳେ ଓଡ଼ିଆ ତାଙ୍କର ଏକ ସ୍ୱତନ୍ତ୍ର ପାଠ୍ୟ ବିଷୟ ନଥିଲା । ପ୍ରକୃତରେ ଏହି ପାଠାଗାରରେ ପ୍ରାଚୀନ ପତ୍ର ପତ୍ରିକା, ଦଲିଲ ଦସ୍ତାବିଜ୍ ଏବଂ ଦୁର୍ଲ୍ଲଭ ପ୍ରାଚୀନ ଗ୍ରନ୍ଥ ଅଧ୍ୟୟନ କରି ସେ ଓଡ଼ିଆ ସାହିତ୍ୟରେ ତଥ୍ୟ ଓ ତତ୍ତ୍ୱ ସମ୍ପର୍କରେ ଯଥାର୍ଥ ଜ୍ଞାନ ଆହରଣ କଲେ । ତାଙ୍କର ଗବେଷକ ଓ ସାହିତ୍ୟ ସମାଲୋଚକ ଜୀବନରେ ଏହି ପ୍ରସ୍ତୁତିପର୍ବ ତପସ୍ୱୀ-ସୁଲଭ ଏକନିଷ୍ଠ ସାଧନାରେ ମହିମାନ୍ୱିତ । ଫଳରେ 'ଓଡ଼ିଆ ସାହିତ୍ୟର ଇତିହାସ (୧୮୩୦-୧୯୨୦)', 'ଫକୀର ମୋହନ ସାହିତ୍ୟ ସମୀକ୍ଷା', 'ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ', 'ସଖାହୀନ ପଞ୍ଚସଖା', 'ଓଡ଼ିଆ ସାହିତ୍ୟର ସ୍ୱର ପରିବର୍ତ୍ତନ' ପ୍ରଭୃତି ଉଚ୍ଚକୋଟୀର ସମାଲୋଚନା ଗ୍ରନ୍ଥ ରଚନା କରି ସେ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରି ଯାଇଛନ୍ତି । ଓଡ଼ିଆ ସମାଲୋଚନା ସାହିତ୍ୟରେ ନୂତନ ଦିଗନ୍ତ ଉନ୍ମୋଚନ କରି ପାରିଛନ୍ତି । ଓଡ଼ିଆ ସାହିତ୍ୟରେ ପଣ୍ଡିତ ଗୋପୀନାଥ ନନ୍ଦଶର୍ମା, ଆର୍ତ୍ତବଲ୍ଲଭ ମହାନ୍ତି ଓ ପଣ୍ଡିତ ନୀଳକଣ୍ଠ ଦାସ ଯେଉଁ ନୂତନ ବଳିଷ୍ଠ ପରମ୍ପରା ସୃଷ୍ଟି କରି ଯାଇଥିଲେ, ଡଃ ନଟବର ସାମନ୍ତରାୟ ସେହି ପରମ୍ପରାର

ଯୋଗ୍ୟ ଉତ୍ତର-ଦାୟାଦ । ତଥ୍ୟ ଓ ତତ୍ତ୍ୱ ସହିତ ମୌଳିକ ଚିନ୍ତାଧାରାର ସମନ୍ୱୟ ତାଙ୍କ ସାହିତ୍ୟ ସମାଲୋଚନାର ଲକ୍ଷଣୀୟ ବୈଶିଷ୍ଟ୍ୟ ।

ବାରିପଦାରେ ସାତ ବର୍ଷ ଅଧ୍ୟାପନା କଲାପରେ ୧୯୫୬ ମସିହାରେ ରେଭେନ୍ସା କଲେଜକୁ ବଦଳି ହୋଇ ଆସିଥିଲେ । ତା'ପରେ ୧୯୫୯ ମସିହାରୁ ଚାକିରୀରୁ ଅବସର ନେବା ପର୍ଯ୍ୟନ୍ତ ସେ ଥିଲେ ବି.ଜେ.ବି. କଲେଜରେ ପ୍ରାଧ୍ୟାପକ ଏବଂ ମୋର ସହକର୍ମୀ । ସାଧାରଣତଃ ଅଠାବନ ବର୍ଷ ବୟସରେ ସରକାରୀ ଚାକିରୀରୁ ଅବସର ଗ୍ରହଣ କରିବା କଥା । କିନ୍ତୁ ତତ୍‌କାଳୀନ ଓଡ଼ିଶା ଶାସନ ଦାୟିତ୍ୱରେ ଥିବା ରାଜନୈତିକ ନେତାମାନଙ୍କ ଖାମଖିଆଲି, ଅବିବେକୀ ନୀତି ଯୋଗୁଁ ସେହି ବର୍ଷ ଅବସର ଗ୍ରହଣ ବୟସ ଅଠାବନରୁ ପଞ୍ଚାବନକୁ କମାଇ ଦିଆ ଯାଇଥିଲା । ତେଣୁ ପଞ୍ଚାବନ ବର୍ଷ ବୟସରେ ଡଃ ସାମନ୍ତରାୟ ୧୯୭୩ ମସିହା ଡିସେମ୍ବର ମାସରେ ପ୍ରାଧ୍ୟାପକ ଭାବରେ ବି.ଜେ.ବି କଲେଜରୁ ଅବସର ଗ୍ରହଣ କରିଥିଲେ ।

ବି.ଜେ.ବି କଲେଜରେ ମୁଁ ଥିଲି କନିଷ୍ଠ ଓଡ଼ିଆ ଅଧ୍ୟାପକ । ନଟବାବୁ ଥିଲେ ମୋ'ଠାରୁ ଅନେକ ସିନିୟର । କିନ୍ତୁ ତାଙ୍କ ସହିତ ମୋର ଜଣେ ସାହିତ୍ୟିକ ଭାବରେ ଅପୂର୍ବ ଘନିଷ୍ଠତା ଗଢ଼ି ଉଠିଥିଲା । ସାଧାରଣତଃ ସିନିୟର ପ୍ରାଧ୍ୟାପକମାନେ ଏମ୍.ଆଇ.ଏଲ. ସାଧାରଣ କ୍ଲାସ ନିଅନ୍ତି ନାହିଁ । ସେ ସବୁ ଶହେ ଅଠେଇଶି ଜଣିଆ ଛାତ୍ର ଛାତ୍ରୀଙ୍କ ଜେନେରାଲ୍ କ୍ଲାସ ମୋ ଭଳି କନିଷ୍ଠ ଅଧ୍ୟାପକମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ହୋଇଥାଏ । କିନ୍ତୁ ନଟବାବୁ ଥିଲେ ତା'ର ଏକ ବ୍ୟତିକ୍ରମ । ସ୍ୱେଚ୍ଛାରେ ସେ ବି.ଏ ଏମ.ଆଇ.ଏଲ୍ କ୍ଲାସ ନେଉଥିଲେ । ମୁଁ ସେକ୍ସନ 'ଏ'ର କ୍ଲାସ ନେଉଥିଲି ହଲ୍‌ରେ, ସେକ୍ସନ 'ବି'ର କ୍ଲାସ ଡଃ ସାମନ୍ତରାୟ ନେଉଥିଲେ, ଆର୍ଟସ୍ ବ୍ଲକ ରୁମ୍ ନମ୍ବର ତେଇଶିରେ । ହଲର୍ ଦୈର୍ଘ୍ୟ ପ୍ରସ୍ଥ କେବଳ ୨୩ ନମ୍ବର ରୁମ ଠାରୁ ବଡ଼ ନଥିଲା, ଚାରିଆଡ଼ ଖୋଲା ଥିବା ହେତୁ ବଡ଼ ପାଟିରେ ନ ପଢ଼ାଇଲେ ଶେଷ ଧାଡ଼ିର ପିଲାଙ୍କୁ ଶୁଣାଯାଉ ନଥିଲା । ମୁଁ ବଡ଼ ପାଟିରେ ଭାଷଣ ଦେଇପାରେ ବୋଲି ମୋର ଏକ ଅହଂକାର ମଧ୍ୟ ଥିଲା । ମୋର ଦୃଢ଼ ବିଶ୍ୱାସ ଥିଲା କ୍ଲାସରେ ଛାତ୍ରମାନେ ମୋ ଭାଷଣ ନିଶ୍ଚୟ ମନଧ୍ୟାନ ଦେଇ ଶୁଣୁଥିବେ । କିନ୍ତୁ ଦୁଇ ମାସ ପରେ ଲକ୍ଷ୍ୟ କଲି ମୁଁ ଏମ.ଆଇ.ଏଲ. କ୍ଲାସରେ କାବ୍ୟମୟ ଭାଷାରେ କବିତା ବୁଝାଉ ଥିବାବେଳେ କେତେଜଣ ଛାତ୍ର ଉପସ୍ଥାନ ନିଆଯିବା ପରେ ପରେ ପଛରୁ କ୍ଲାସ ଛାଡ଼ି ଉଠି ଯାଉଛନ୍ତି । ମୋ ନିଜ ଅଭିଜ୍ଞତାରୁ ଜାଣିଥିଲି କେତେଜଣ ଛାତ୍ର ଓଡ଼ିଆ ପାଠ ପଢ଼ିବା ଅପେକ୍ଷା ବାହାରେ ବୁଲିବା ଅଧିକ ପସନ୍ଦ କରନ୍ତି । ଓଡ଼ିଆ ଏମ.ଆଇ.ଏଲ କ୍ଲାସ ଦିନ ଶେଷ ଆଡ଼କୁ ଥାଏ । ତେଣୁ ଯଦି ସକାଳୁ ଆସିଥିବା କୌଣସି ଛାତ୍ର ପିରିୟଡ଼ ଶେଷ ପର୍ଯ୍ୟନ୍ତ କ୍ଲାସରେ ବସି ରହିବାକୁ ଚାହୁଁ ନଥାଏ, ତା'ହେଲେ ତାକୁ ଦୋଷ ଦିଆଯାଇ ପାରେ ନାହିଁ ।

କିନ୍ତୁ ଦିନେ କ୍ଲାସ ସାରି କମନରୁମ୍‌କୁ ଫେରୁଛି, ଲକ୍ଷ୍ୟ କଲି ମୋ କ୍ଲାସରୁ ଯେଉଁ ତିନି ଚାରିଜଣ ପିଲା ଉଠି ଆସିଥିଲେ, ସେମାନେ ୨୩ ନମ୍ବର ରୁମ୍‌ରେ ନଟବାବୁଙ୍କ କ୍ଲାସ୍‌ରେ ବସି ନୋଟ କରୁଛନ୍ତି ।

ଏକଥା କମନରୁମ୍‌ରେ ନଟବାବୁଙ୍କୁ କହିବା ମାତ୍ରେ ସେ ହସି ଦେଇ କହିଲେ-

ସେମାନେ ମାଥ୍ ଅନର୍ସ ପିଲା । ମୋ ଅନୁମତି ନେଇ ମୋ କ୍ଲାସକୁ ଆସୁଛନ୍ତି । ସେମାନଙ୍କୁ ଏଥିପାଇଁ ତମ ଅନୁମତି ନେବା ପାଇଁ କହିଥିଲି । ସମ୍ଭବତଃ ଭୟରେ ତମକୁ ଅନୁମତି ମାଗିବା ପାଇଁ ସାହାସ କରିପାରି ନାହାନ୍ତି । ତମ କ୍ଲାସ ଖୁବ୍ ଇଣ୍ଟେରେଷ୍ଟିଂ ହେଉଛି, କିନ୍ତୁ ଯେପରି କବିତାକୁ ବୁଝାଇଲେ ସେମାନେ ସବୁ ପଏଣ୍ଟ୍ ମନେ ରଖି ପରୀକ୍ଷାରେ ଲେଖି ପାରିବେ, ସେଭଳି କୁଆଡ଼େ ତମେ ପଢ଼ାଉ ନାହଁ ।

ଆମେ ସେତେବେଳେ ଦୁହେଁ ମଧୁସୂଦନ ରାଓଙ୍କ 'ଜୀବନ ଚିନ୍ତା' କବିତା ପଢ଼ାଉଥିଲୁ । ସେ କିପରି କ୍ଲାସରେ ତା'ର ବ୍ୟାଖ୍ୟା କରୁଛନ୍ତି ବୋଲି ପଚାରିବାରୁ ସେ ଉତ୍ତର ଦେଇଥିଲେ- 'ଜୀବନ ଚିନ୍ତା'ର ତିନୋଟି ପର୍ଯ୍ୟାୟ ଅଛି । ଜୀବନ ଚିନ୍ତା ହେଉଛି ପ୍ରକୃତରେ ମୃତ୍ୟୁ ଚିନ୍ତା । ସେହି ମୃତ୍ୟୁ ଭାବନାରୁ ମଣିଷ କିପରି ଅମୃତମୟ ଜୀବନର ଅନ୍ୱେଷଣ କରିବ ଏବଂ ଏଥିପାଇଁ କିଭଳି ମରଣଶୀଳ ମଣିଷର ଈଶ୍ୱର-ପ୍ରାପ୍ତି ଏକାନ୍ତ ପ୍ରୟୋଜନ- ଏ ତିନୋଟି ପଏଣ୍ଟ ପିଲାମାନଙ୍କୁ ବୁଝାଇ ଦେଲେ ସେମାନେ ସହଜରେ ମନେ ରଖିପାରିବେ । ।

ତାଙ୍କର ସେ ବିଶ୍ଳେଷଣ ପଦ୍ଧତି ମୋ ମନକୁ ମଧ ପାଇ ଯାଇଥିଲା । ତା' ପରେ କ୍ଲାସକୁ ଯିବା ପୂର୍ବରୁ ମୁଁ ତାଙ୍କ ସହିତ ପାଠ୍ୟ-ବିଷୟ ସମ୍ପର୍କରେ ଆଲେଚନା କରି ନେଉଥିଲି । ଓଡ଼ିଆ କବିତା ଓ ପ୍ରବନ୍ଧ ପଢ଼ାଇବାରେ ସେ ଯେଉଁ ବୈଜ୍ଞାନିକ ପଦ୍ଧତି ଅନୁସରଣ କରୁଥିଲେ ତାହା ବୁଝି ହୋଇଗଲା ପରେ ମୋର କ୍ଲାସ ରୁମ୍ ପଢ଼ାରେ ମଧ ଅନେକ ଉନ୍ନତି ହୋଇଥିଲା ।

କେବଳ କ୍ଲାସ ରୁମ୍ ପାଠ ପଢ଼ାରେ ନୁହେଁ, ଗବେଷଣା କ୍ଷେତ୍ରରେ ମଧ ସେ ବୈଜ୍ଞାନିକ ପଦ୍ଧତି ଅନୁସରଣ କରୁଥିଲେ । ତଥ୍ୟ ସଂଗ୍ରହ, ତା'ର ଯଥାଯଥ ପ୍ରୟୋଗ ଓ ବିଶ୍ଳେଷଣ ଏବଂ ଗବେଷକର ନିଜସ୍ୱ-ମାନସିକ ପ୍ରତିଫଳନ-ଏ ତିନୋଟି ଦିଗ ପ୍ରତି ସେ ସଚେତନ ଥିଲେ ବୋଲି ତାଙ୍କର ଆଧୁନିକ 'ଓଡ଼ିଆ ସାହିତ୍ୟର ଇତିହାସ' ଗ୍ରନ୍ଥ ଓଡ଼ିଆ ଗବେଷଣା କ୍ଷେତ୍ରରେ ଦିଗବାରେଣି ଖୁଣ୍ଟ ଭଳି ଗବେଷକମାନଙ୍କୁ ବାଟ ଦେଖାଉଛି ।

ଜଣେ ଲେଖକ ଭାବରେ ତାଙ୍କର ସ୍ୱାଭିମାନ ଆମ ସମସ୍ତଙ୍କର ଈର୍ଷାର କାରଣ ଥିଲା । ପ୍ରବନ୍ଧ ବହିର ବଜାର ନାହିଁ; ସାହିତ୍ୟ ସମାଲୋଚନା ବହିର ଭଲ ବିକ୍ରି ହୁଏ ନାହିଁ, ଓଡ଼ିଆ ପ୍ରକାଶକମାନଙ୍କର ଏହି ଅପବାଦ ସେ ସହ୍ୟ କରିପାରୁ ନଥିଲେ । ସେଥିପାଇଁ ସେ ନିଜ ବହି ନିଜେ ଛାପି ପ୍ରକାଶ କରୁଥିଲେ ଏବଂ ଗୁଣମୁଗ୍ଧ ପାଠକମାନେ ସେ ସବୁ ବହି ସଂଗ୍ରହ କରିବା ପାଇଁ ତାଙ୍କ ବାସ ଭବନରେ ପହଞ୍ଚୁଥିଲେ ।

ସେ ଥିଲେ ଜଣେ ଆଦର୍ଶ ଶିକ୍ଷକ, ଦିଗଦ୍ରଷ୍ଟା, ସାହିତ୍ୟ-ସମାଲୋଚକ । ତାଙ୍କର ମୃତ୍ୟୁ ଫଳରେ ଓଡ଼ିଆ ଆଲୋଚନା ସାହିତ୍ୟର ଅପୂରଣୀୟ କ୍ଷତି ଘଟିଲା ।

*୩. ଏଚ, ଲୁଇସ୍ ରୋଡ୍,*
*ଭୁବନେଶ୍ୱର-୧୪*

# ଡକ୍ଟର ନଟବର ସାମନ୍ତରାୟ- ଗୁରୁ ଓ ଗବେଷକ

*ଡଃ ଅରବିନ୍ଦ ପଟ୍ଟନାୟକ*

ଆଦି ଶଙ୍କର ଥରେ ତାଙ୍କ ଶିଷ୍ୟମାନଙ୍କର ଗୋଟିଏ ପ୍ରଶ୍ନର ଉତ୍ତର ଦେଇ କହିଥିଲେ- "ଯିଏ ଅଧିଗତ ତତ୍ତ୍ୱ ଓ ସତତ ଶିଷ୍ୟ ହିତ ପାଇଁ ଉଦ୍ୟତ, ସିଏ ଗୁରୁ।" ସେହିପରି ଗୁରୁ ହିଁ ଛାତ୍ରର ଆଖି ଖୋଲି ଦେଇ ପାରନ୍ତି। କେବଳ ପାଠ ପଢ଼ି ପଢ଼ାଇ ଦେଲେ ଜଣେ ଶିକ୍ଷକ ହୋଇପାରେ। ପୁଣି ଭଲ ଭାବେ ପଢ଼ି, ଭଲ କରି ପଢ଼ାଇ ଦେଲେ ଭଲ ଶିକ୍ଷକ ହୋଇପାରେ କିନ୍ତୁ ଶିଷ୍ୟର ଆଖି ଖୋଲିବାର ଦକ୍ଷତା ଓ ସତତ ଶିଷ୍ୟ ହିତ ପାଇଁ ଚେଷ୍ଟା ନକଲା ଯାଏ ଜଣେ ଶିକ୍ଷକ ଗୁରୁ ପଦବାଚ୍ୟ ହୋଇପାରିବେ ନାହିଁ। ଲେକ୍ଚରର, ରିଡର, ପ୍ରଫେସର, କୁଳପତି ଆଦି ତ ଜଣକର ବ୍ୟକ୍ତିଗତ ପଦୋନ୍ନତି, ସେଥିରେ କାହାର କ'ଣ ଅଛି ? ଏଇ ମାନଦଣ୍ଡରେ ମାପିଲେ ଡକ୍ଟର ନଟବର ସାମନ୍ତରାୟ ଜଣେ ଉଚ୍ଚକୋଟୀର ଗୁରୁ। ବ୍ୟକ୍ତିଗତ ଭାବରେ ସରଳ, ନିରଳସ ଓ ସ୍ନେହପ୍ରବଣ। ଗଭୀର ଅଧ୍ୟୟନ, ଅନୁଶୀଳନ ଓ ବ୍ୟାଖ୍ୟା କରିବାର ଦକ୍ଷତା ତାଙ୍କ ଲେଖା ଓ ଅଧ୍ୟାପନାକୁ ଗୁରୁତ୍ୱପୂର୍ଣ୍ଣ କରୁଥିଲା।

ଡକ୍ଟର ନଟବର ସାମନ୍ତରାୟଙ୍କ ଜନ୍ମ ୧୯୧୮ ମସିହାରେ। ସେ ଅଧ୍ୟାପକ ହେବା ପୂର୍ବରୁ କିଛି କାଳ ଭୁବନେଶ୍ୱରର ଭକ୍ତମଧୁ ଉଚ୍ଚ ବିଦ୍ୟାଳୟରେ ଶିକ୍ଷକତା କରିଥିଲେ। ଭଲ ଗଣିତ ଶିକ୍ଷକ ଭାବେ ତାଙ୍କର ଖ୍ୟାତି ଥିଲା। କିନ୍ତୁ ପରବର୍ତ୍ତୀ କାଳରେ ଓଡ଼ିଆ ଅଧ୍ୟାପକ ହେଲେ ଏବଂ ଦକ୍ଷ ଅଧ୍ୟାପକ ଭାବେ ଖ୍ୟାତି ଲାଭକଲେ। ମୁଁ ପୁରୀ ସାମନ୍ତ ଚନ୍ଦ୍ରଶେଖର କଲେଜରୁ ଆଇ.ଏ. ପାଶ୍ କରି ୧୯୬୦ ମସିହାରେ ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାବିଦ୍ୟାଳୟର ତୃତୀୟ ବାର୍ଷିକ ଶ୍ରେଣୀରେ ନାମ ଲେଖାଇଲି। ପୁରୀରେ ଆମର ଓଡ଼ିଆ ଅଧ୍ୟାପକ ଥିଲେ ଜୟକୃଷ୍ଣ ମିଶ୍ର, ଗୋଲକ ବିହାରୀ ଧଳ, ରାଜ କିଶୋର ରାୟ ପ୍ରମୁଖ। ବକ୍ସି ଜଗବନ୍ଧୁ ବିଦ୍ୟାଧର କଲେଜକୁ ଆସିବା ପରେ ଆମର ଓଡ଼ିଆ ଅଧ୍ୟାପକ ହେଲେ ବଂଶୀଧର ମହାନ୍ତି ଓ ନଟବର ସାମନ୍ତରାୟ। ନଟବର ବାବୁଙ୍କ ବୟସ ସେତେବେଳେ ବୋଧହୁଏ ୪୧ ବା ୪୨। ପିଏଚ୍.ଡି. ପାଇଁ ଗବେଷଣା କରୁଥାନ୍ତି। ବଂଶୀବାବୁ ମଧ ଗବେଷଣା କରୁଥାଆନ୍ତି। ପୁରୀ କଲେଜରେ ଆମର ଅଧ୍ୟାପକମାନେ ଏପରି ଗବେଷଣା କରୁ ନଥିଲେ। କିନ୍ତୁ ଅତ୍ୟନ୍ତ ଦକ୍ଷ ଅଧ୍ୟାପକ ଓ ଜଣାଶୁଣା ଲେଖକ ଥିଲେ। ଏମାନଙ୍କର ଅଧ୍ୟାପନାର ଶୈଳୀରେ କି ପ୍ରକାର ପାର୍ଥକ୍ୟ ରହୁଛି ଜାଣିବାରେ ମୋର ଆଗ୍ରହ ଥିଲା। ସେତେବେଳେ କ୍ଲାସ୍‌ରେ ଆମେ ଅଳ୍ପ ଛାତ୍ର ଥିଲୁ। ପ୍ରଥମ କ୍ଲାସରେ ଆମର ପରିଚୟ ହେବା ପରେ ସାର୍ କହିଲେ- "ସାହିତ୍ୟ ପଢ଼ିବାକୁ ହେଲେ ଗୋଟିଏ ଆଟିଚ୍ୟୁଡ୍ ଦରକାର।"

ଦୃଷ୍ଟାନ୍ତ ଦେଇ କହିଲେ-"ପାରିଲେଣି ଏବେ ଦେବ ବିକର୍ତ୍ତନ, ଭାଲେରୀ ଶିଖରେ ସ୍ୱର୍ଣ୍ଣ ସିଂହାସନ " ପଦଟିରେ ବିକର୍ତ୍ତନ ଶବ୍ଦଟିର ଅର୍ଥ ଅଭିଧାନ ଦେଖି ଜାଣିଯିବ । କିନ୍ତୁ ଏବେ ମାନେ କେବେ ? ଉପର ଓଳି ପାଞ୍ଚଟା ନା ସାଢ଼େ ପାଞ୍ଚଟା । ନା କେତେଟା ବେଳେ ? ଏକଥା ଜାଣିବାକୁ ହେଲେ ଖୁବ୍ ଗୋଟାଏ ବୁଦ୍ଧି ଖେଳାଇବା ବା ଅଭିଧାନ ଦେଖିବା ଦରକାର ନାହିଁ । ଦରକାର କେବଳ ମନୋବୃତ୍ତି, ଦୃଷ୍ଟିକୋଣ । ଉପର ଠାଉରିଆ ଭାବରେ ପଢ଼ିଗଲେ କିଛି ଜାଣି ପାରିବ ନାହିଁ । ଚିଲିକା କୂଳରେ ସୂର୍ଯ୍ୟଙ୍କ ତେଜ କମି ଅସ୍ତାଚଳକୁ ଆସିବା ବେଳକୁ ବା ଭାଲେରୀ ମୁଣ୍ଡିଆ ପାଖରେ ଅସ୍ତ ହେବା ବେଳକୁ ଏତିକି ସମୟ ହୋଇଥିବ । ରାଧାନାଥ ବଡ଼କୂଳ ତାଙ୍କ ବଙ୍ଗଳାର ଏଇ ନିର୍ଦ୍ଦିଷ୍ଟ ଜାଗାରେ ବସିଥିବେ, ଏସବୁ ଅନୁମାନ କରି ଜାଣିଯିବ । ଅସ୍ତ ହୋଇ ଆସୁଥିବା ସୂର୍ଯ୍ୟଙ୍କୁ ବିକର୍ତ୍ତନ କାହିଁକି କୁହାଯାଏ, ତାଙ୍କ ତେଜ କର୍ତ୍ତନ ପଛରେ କି ମିଥ୍ ଅଛି ଜାଣିବା ଯେତିକି ଦରକାର, ଦୃଶ୍ୟଟିର ବର୍ଣ୍ଣନା ସମୟ ଓ ଲେଖକଙ୍କର ପରିବେଶ ଜାଣିବା ମଧ୍ୟ ସେତିକି ଦରକାର । ତା' ହେଲେ ଲେଖାଟିକୁ ବୁଝିବ ଓ ଉପଭୋଗ କରିପାରିବ ।"

'ଝଙ୍କାର' ପତ୍ରିକାରେ ନଟବର ବାବୁଙ୍କ ଅନେକ ସମାଲୋଚନା ପଢ଼ିଥିଲି । ତାଙ୍କର କେତେଖଣ୍ଡ ବହି ମଧ୍ୟ ପଢ଼ିଥିଲି । କିନ୍ତୁ କେବେ କୌଣସି ସଭାରେ ତାଙ୍କର୍ ଭାଷଣ ବା ଆଲୋଚନା ଶୁଣି ନଥିଲି । କ୍ଲାସ୍‌ରେ ତାଙ୍କର କଥାବାର୍ତ୍ତା ବା ଆଳାପ ଆଲୋଚନା ଶୁଣିବା, ବହି ଧରି କ୍ଲାସ୍‌ରେ ପଢ଼ାଇବା ବେଳେ, ତାକୁ କେମିତି ବୁଝିବାକୁ ହେବ ବତାଇବା ବେଳେ କୌତୂହଳ ସହିତ ତାଙ୍କୁ ଲକ୍ଷ୍ୟ କଲି । କ୍ରମେ ତାଙ୍କ ପ୍ରତି ମୋର ଓ ମୋ ପ୍ରତି ତାଙ୍କର ଆକର୍ଷଣ ବଢ଼ିଗଲା ।

ମୁଁ ପଢ଼ିବା ବେଳେ କଲେଜ ୟୁନିଅନର ସଭାପତି ଥିଲି ଓ କଲେଜ ପତ୍ରିକା ବାହାର କରିବା ଉଦ୍ୟମ କରିଥିଲି । ଅଧ୍ୟକ୍ଷ ରାମଚନ୍ଦ୍ର ରାଜଗୁରୁ ମୋତେ ଏହି ପତ୍ରିକାର ସମ୍ପାଦନା ମଣ୍ଡଳୀରେ ଛାତ୍ର ପ୍ରତିନିଧି ଭାବରେ ମନୋନୀତ କରିଥିଲେ । ଅଧ୍ୟାପକ ଭାବରେ ଅଧ୍ୟାପକ ନଟବର ସାମନ୍ତରାୟ ଓ ଇଂରାଜୀ ଅଧ୍ୟାପକ ଜାନକୀନାଥ ଚୈାଧୁରୀ ଏହାର ସମ୍ପାଦକ ଥିଲେ । ଉଭୟ ମତେ ବିଶେଷ ଶ୍ରଦ୍ଧା କରୁଥିଲେ । ସେହି ସମୟରେ ଭୁବନେଶ୍ୱରରେ ସାହିତ୍ୟିକ, ସାଂସ୍କୃତିକ କାର୍ଯ୍ୟକ୍ରମରେ ମଧ୍ୟ ମୁଁ ଭାଗ ନେଉଥିଲି । ଭଞ୍ଜ ଜୟନ୍ତୀ ଓ ଗୋଦାବରୀଶ ସାହିତ୍ୟ ସଂସଦର କାର୍ଯ୍ୟକ୍ରମ ଓ 'ମୂର୍ଚ୍ଛନା' ପତ୍ରିକା ସମ୍ପାଦନାରେ ମାତିଥିଲି । ସେହି ସମୟରେ ନଟବର ବାବୁ ମତେ କହିଥିଲେ- "ବାହାର ଆକ୍‌ଟିଭିଟିଜ୍ ଏତେ ବଢ଼ାନା, ପଢ଼ା ସରିବା ପରେ ସେସବୁ କରିହେବ ।"

ମୁଁ ଏମ୍.ଏ. ପାଶ୍ କରିବା ପରେ ପିଏଚ୍. ଡ଼ି. କରିବା ପାଇଁ ମୋର ମନହେଲା । ତାଙ୍କର 'ମୁଁ କେମିତି ଗବେଷଣା କଲି' ପ୍ରବନ୍ଧଟି ମତେ ଏ ଦିଗରେ ଉତ୍ସାହିତ କରିଥିଲା । ସାର୍‌ଙ୍କର୍ ଗବେଷଣା ସନ୍ଦର୍ଭ 'ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩-୧୯୨୦)' ସେତେବେଳେ ପ୍ରକାଶ ପାଇ ସାରିଲାଣି । ମୁଁ ମୋର ଗବେଷଣା ଇଚ୍ଛା ପ୍ରକାଶ କରିବାରୁ ସାର୍ କହିଲେ- "ଓଡ଼ିଆରେ ଗବେଷଣା ଲାଗି କ୍ଷେତ୍ର ଉନ୍ମୁକ୍ତ । ଓଷାବ୍ରତ ଉପରେ କିଛି

କାମ ହୋଇନି ।''ମୁଁ ତତ୍କ୍ଷଣାତ୍ ସେହି ବିଷୟଟିକୁ ନେବାର ଇଚ୍ଛା ପ୍ରକାଶ କଲି । ସେତେବେଳେ ଡକ୍ଟର କୁଞ୍ଜବିହାରୀ ଦାଶ ରେଭେନ୍ସା କଲେଜର ଓଡ଼ିଆ ବିଭାଗର ରିଡର । ସେ ମୋର ଅଧ୍ୟାପକ ଥିଲେ ଓ ପିଲାଦିନରୁ ମୋତେ ଜାଣିଥିଲେ ଓ ଶ୍ରଦ୍ଧା କରୁଥିଲେ । ତାଙ୍କୁ ନଟବର ବାବୁଙ୍କ ସହିତ ଆଲୋଚନା କଥା କହିଲି । ସେ ଖୁସି ହେଲେ ଓ ଓଷ୍ଠାବ୍ରତ ସହିତ ପର୍ବପର୍ବାଣୀକୁ ଯୋଡ଼ି ପିଏଚ୍.ଡି. ରେଜିଷ୍ଟ୍ରେସନ୍ ପାଇଁ ବିଶ୍ୱବିଦ୍ୟାଳୟକୁ ଲେଖିବାକୁ ପରାମର୍ଶ ଦେଲେ । ତାଙ୍କଠାରୁ ସିନୋପ୍‌ସିସ୍ ନେଇ କାମ ଆରମ୍ଭ କଲି । କିନ୍ତୁ ନଟବାର ବାବୁ ମୋତେ ପଦେ ପଦେ ସାହାଯ୍ୟ କରିଛନ୍ତି ।

ମୁଁ ପୂର୍ବାଞ୍ଚଳ ଭାଷା କେନ୍ଦ୍ରର ଅଧ୍ୟକ୍ଷ ଥିବା ବେଳେ, ଥରେ ତାଙ୍କୁ ଗୋଟିଏ ସଭା ପାଇଁ ଡାକିବାକୁ ଯାଇଥିଲି । ସେ କହିଲେ- ''ଏଥିରେ ମୋର ବିଶ୍ୱାସ ନାହିଁ । ସଭା ସମିତିରେ ଭାଷଣ ଦେଲେ କାହାରି ଲାଭ ହୁଏ ନାହିଁ । ବରଂ ସେତିକି ସମୟ ତୋ ଗବେଷଣା ବିଷୟରେ କଥାବାର୍ତ୍ତାରେ କଟାଇଲେ ଲାଭ ।''ଏମିତି ଗୋଟିଏ ଗୋଟିଏ ସ୍ମୃତି ମନେ ପଡ଼ିଲେ ତାଙ୍କ ପ୍ରତି ଭକ୍ତି ଓ କୃତଜ୍ଞତାରେ ମୁଣ୍ଡ ନଇଁ ଆସେ ।

ସମ୍ଭବତଃ ୧୯୬୨ରେ ଡକ୍ଟର ମାୟାଧର ମାନସିଂହଙ୍କ ବହୁ ବିତର୍କିତ History of Oriya Literature କେନ୍ଦ୍ର ସାହିତ୍ୟ ଏକାଡେମୀ ପକ୍ଷରୁ ପ୍ରକାଶ ପାଇଲା । ସେତେବେଳକୁ ସାର୍‌ଙ୍କର ପିଏଚ୍.ଡି. ସରି ନଥାଏ । କିନ୍ତୁ ଓଡ଼ିଆ ସାହିତ୍ୟର ସମାଲୋଚକ ଭାବରେ ତାଙ୍କୁ ସ୍ୱତନ୍ତ୍ର ମର୍ଯ୍ୟାଦା ଓ ପ୍ରତିଷ୍ଠା ମିଳି ସାରିଥାଏ । ଡକ୍ଟର ମାନସିଂହ ତାଙ୍କ ବହିରେ ଲେଖିଥିଲେ- "Shri Natabara Samantaray and Shri Banshidhar Mohanty have thrown new light on the developmant of different periods of Oriya literature. Shri Natabara Samantaray's studies and researches provide an excellent and solid foundation for the historical interpretation of modern Oriya literature from the middle of the last century down the recent times."

ଡକ୍ଟର ନଟବର ସାମନ୍ତରାୟଙ୍କ 'ଓଡ଼ିଆ ସାହିତ୍ୟର ଇତିହାସ(୧୮୦୩-୧୯୨୦)' ଅତି ଉଚ୍ଚକୋଟୀର ଗ୍ରନ୍ଥ । ଏହାର ତୁଳନା ନାହିଁ । ସାହିତ୍ୟର ଇତିହାସ କିପରି ଲେଖିବାକୁ ହୁଏ, ଏହା ତା'ର ଉତ୍କୃଷ୍ଟ ଦୃଷ୍ଟାନ୍ତ । ଆଧୁନିକ ଓଡ଼ିଆ ସାହିତ୍ୟ ଭାବରେ ସାର୍‌ଙ୍କର 'ବ୍ୟାସକବି ଫକୀର ମୋହନ', 'ଯୁଗ ପ୍ରବର୍ତ୍ତକ ରାଧାନାଥ' ଉତ୍କୃଷ୍ଟ ସମାଲୋଚନା ମୂଳକ ଗ୍ରନ୍ଥ ଭାବରେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ପାଇଥିଲା । ଏହା ଛଡ଼ା ତାଙ୍କର 'ଗଙ୍ଗାଧର ସାହିତ୍ୟ ସମୀକ୍ଷା', 'ରାଧାନାଥ ଓ ଚିଲିକା କାବ୍ୟ', 'ଆଧୁନିକ ଓଡ଼ିଆ ସାହିତ୍ୟର ଭିତ୍ତିଭୂମି', 'ନନ୍ଦକିଶୋର ସାହିତ୍ୟ ସମୀକ୍ଷା' ପ୍ରଭୃତି ଆଧୁନିକ ଓଡ଼ିଆ ସାହିତ୍ୟ ଉପରେ ସମାଲୋଚନା ମୂଳକ ଗ୍ରନ୍ଥ ଯେପରି ଉଚ୍ଚକୋଟୀର, ପ୍ରାଚୀନ ସାହିତ୍ୟ ଓ ଓଡ଼ିଆ ପଲ୍ଲୀ ସାହିତ୍ୟ ଉପରେ ମଧ୍ୟ ସେପରି ଉତ୍କୃଷ୍ଟ ସମାଲୋଚନା ମୂଳକ ଗ୍ରନ୍ଥ ଅଛି । 'ଓଡ଼ିଆ ବୈଷ୍ଣବ ସାହିତ୍ୟ', 'ସଖା ହୀନ ପଞ୍ଚସଖା', 'ବଡ଼ଜେନା ସାହିତ୍ୟ ସମୀକ୍ଷା' ଏହିପରି କେତୋଟି ଗ୍ରନ୍ଥ । 'ମୁଁ କେମିତି

ଗବେଷଣା କଲି', 'ଓଡ଼ିଆ ସାହିତ୍ୟରେ ସ୍ୱର ପରିବର୍ତ୍ତନ', 'ଓଡ଼ିଆ ସାହିତ୍ୟରେ କାଳ ଓ କଳା', 'ଗଳ୍ପ ନୁହେଁ ସମାଲୋଚନା', 'ସାହିତ୍ୟାଦର୍ଶ', 'ଓଡ଼ିଆ ପଲ୍ଲୀ ସାହିତ୍ୟ' ପ୍ରଭୃତି ସମାଲୋଚନା ଗ୍ରନ୍ଥ ଓଡ଼ିଆ ସାହିତ୍ୟକୁ ତାଙ୍କର ଅମର ଅବଦାନ । 'ଓଡ଼ିଆ ସାହିତ୍ୟକୁ ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ଦାନ' ଗୋଟିଏ ମୂଲ୍ୟାୟନ ମୂଳକ ଉତ୍କୃଷ୍ଟ ଗ୍ରନ୍ଥ । ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ଏହା ପୁରସ୍କୃତ ହୋଇଛି । କିନ୍ତୁ ଜଣେ ସାହିତ୍ୟ ଅଧ୍ୟାପକଙ୍କ ଜୀବନବ୍ୟାପୀ ଗବେଷଣା ଓ ସାଧନାର ମୂଲ୍ୟାୟନ କିପରି କରାଯାଇ ପାରେ, ଏହା ତା'ର ଗୋଟିଏ ପଥିକୃତ୍ ଆଲୋଚନା । ଆଜି ଦିବଂଗତ ମହାନ୍ ଗବେଷକ ଓ ଅଧ୍ୟାପକ ଡକ୍ଟର ନଟବର ସାମନ୍ତରାୟଙ୍କ କୃତି ଓ କୃତିତ୍ୱର ସେହିପରି ମୂଲ୍ୟାୟନ ହେବାର ଆବଶ୍ୟକତା ଅଛି ।

*ଏ-୧୧, ଲର୍ଡ୍ ବୁଦ୍ଧଜନ ପାଲେସ୍,*
*ଗ୍ରାଉଣ୍ଡ ଫ୍ଲୋର୍, ରସୁଲଗଡ଼,*
*ଭୁବନେଶ୍ୱର*

## ନଟବର ବାଣୀ

ସଂଗୀତର ମଧୁର ମୂର୍ଚ୍ଛନା ହେଉଛି ପଲ୍ଲୀକବିତାର ଏକ ପରମ ରସ ସମ୍ପଦ । ସଂଗୀତର ସ୍ୱର ଝଙ୍କାର ଯେଉଁଠି ତିରୋହିତ, ପଲ୍ଲୀ ପ୍ରାଣର ଉଦ୍‌ବେଳିତ ଭାବ-ତରଙ୍ଗ-ପ୍ରବାହ ସେଠି ନିଃଶେଷିତ । ପଲ୍ଲୀସଂଗୀତର ବିଷୟବସ୍ତୁ ତାର ସ୍ୱର ସମ୍ପଦଠାରୁ କୌଣସି ଦିଗରେ ପୃଥକ୍ ନୁହେଁ । ବିଷୟବସ୍ତୁ ଓ ସ୍ୱରଝଙ୍କାର, ଏ ଉଭୟର ମଧୁର ସମନ୍ୱୟରେ ପଲ୍ଲୀ ସଙ୍ଗୀତ ତାର ସାର୍ଥକ ରୂପ ସମ୍ପଦ ବହନ କରି ଆତ୍ମପ୍ରକାଶ କରିଥାଏ । ପ୍ରତ୍ୟେକ ସଙ୍ଗୀତର ସ୍ୱର ସମ୍ପଦ ଏକ ଏକ ବିଶିଷ୍ଟ ରୂପ ଅବଲମ୍ବନରେ ସୁପ୍ରତିଷ୍ଠିତ-ସେଇ ହେତୁରୁ ଗୋଟିକର ରୂପ ଅନ୍ୟଟିର ରୂପ ସହିତ ସମାନ ହୋଇ ପଡ଼ିବା ସହଜ ନୁହେଁ । ହଳିଆ ଗୀତ, ନାଉରି ଗୀତ, ଶଗଡ଼ିଆ ଗୀତର ଅସୀମ ରୂପ ଏ ଅଭିମତର ଯଥାର୍ଥ ପ୍ରଖ୍ୟାପକ । ଯେଉଁଠି କାବ୍ୟିକ ଛନ୍ଦରେ ଏ ଯୁଗର ବିଷୟବସ୍ତୁକୁ ନେଇ ପଲ୍ଲୀ-କବିତା ଲେଖାଯାଏ ସେଠି ତାହା ଯଥାର୍ଥ ପଲ୍ଲୀ-କବିତା ଭିତରେ ଢ଼ିଙ୍କି ପାଖରେ ରାଇସ୍ ମିଲ୍ ପରି ଦେଖାଯାଏ ।

*ଓଡ଼ିଆ ପଲ୍ଲୀ ସାହିତ୍ୟ (୧୯୭୦) ପୃ. ୧୧-୧୨*

# ସତ୍ୟାନ୍ୱେଷୀ ନଟବର

*ଡଃ ଶକୁନ୍ତଳା ବଳିଆର ସିଂହ*

**ଡଃ** ନଟବର ସାମନ୍ତରାୟ ଆଜି ଆମ ଗହଣରେ ନାହାନ୍ତି । ତାଙ୍କର ଇହଧାମ ତ୍ୟାଗ କରିବାର ଗୋଟିଏ ବର୍ଷ ପୂରିଗଲା । ତାଙ୍କର ଶରୀର ସତ୍ତା ଆମ ଭିତରେ ଆଉ ନାହିଁ, ହେଲେ ତାଙ୍କର ସୃଷ୍ଟିସତ୍ତା ଆମ ଚାରିପାଖରେ ସର୍ବଦା ସର୍ବତ୍ର ଅନୁଭୂତ ହେଉଅଛି ।

'ଓଡ଼ିଆ ସାହିତ୍ୟର ଇତିହାସ' ହେଉଛି ତାଙ୍କର ଗବେଷଣା ପୁସ୍ତକ । ୧୮୦୩ ରୁ ୧୯୨୦- ଏହି ଶହେ କୋଡ଼ିଏ ବର୍ଷରେ ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗ କିଭଳି ଭାବରେ ବିଶିଷ୍ଟ କବି, ଔପନ୍ୟାସିକ, ସାମ୍ବାଦିକ, ନାଟ୍ୟକାରମାନଙ୍କ ଦ୍ୱାରା ପରିପୁଷ୍ଟ ହୋଇଛି, ଭିନ୍ନ ଭିନ୍ନ ଚେତନା କିପରି ବିକଶିତ ହୋଇ ନବଯୁଗ ନିର୍ମାଣ କରିଛି, ରାଜନୈତିକ, ଅର୍ଥନୈତିକ ତଥା ସାମାଜିକ ପରିବେଶର ଅନୁକୂଳ ତଥା ପ୍ରତିକୂଳ ପ୍ରଭାବ କିଭଳି ଭାଷା ବିକାଶର ସହାୟକ ବା ପରିପନ୍ଥୀ ହୋଇଛି- ତାହାର ବଳିଷ୍ଠ ବିଶ୍ଳେଷଣ ଏହି ପୁସ୍ତକର ପ୍ରତିଟି ବାକ୍ୟରେ ଉପଲବ୍ଧ । ୧୯୬୪ ମସିହାରୁ ପ୍ରକାଶିତ ଏହି ଗବେଷଣା ପୁସ୍ତକଟି ଏଭଳି ପାଠକୀୟ ଶ୍ରଦ୍ଧା ଓ ସମ୍ମାନ ଲାଭ କରିଛି ଯେ ପରବର୍ତ୍ତୀ କାଳରେ ଏହାର ପୁନଃମୁଦ୍ରଣ ଓ ପ୍ରକାଶନରେ ପ୍ରକାଶକଙ୍କ ସହ ଶିକ୍ଷା ବିଭାଗ ମଧ୍ୟ ସହାୟତା କରିଛନ୍ତି । ଆଠଶହ ପୃଷ୍ଠା ସମ୍ବଳିତ 'ଓଡ଼ିଆ ସାହିତ୍ୟର ଇତିହାସ' ଅନେକ ବୈଶିଷ୍ଟ୍ୟ ଓ ଅନେକ ଚମତ୍କାରିତାରେ ପରିପୂର୍ଣ୍ଣ ।

ଇତିହାସ ଭଳି ଏହା କେବଳ ତଥ୍ୟର ଉପସ୍ଥାପନା କରେ ନାହିଁ ବା ସାହିତ୍ୟ ଭଳି ଅତ୍ୟଧିକ ଗୌରଚନ୍ଦ୍ରିକା ବା କଳ୍ପନା ବିଳାସରେ ମଜ୍ଜିଯାଏ ନାହିଁ । ପ୍ରାରମ୍ଭରୁ ହିଁ ଏଥିରେ ଡଃ ସାମନ୍ତରାୟଙ୍କ ଗବେଷକ-ଅନୁସନ୍ଧିତ୍ସୁ ଜିଜ୍ଞାସା ଭାବ ପ୍ରତିଫଳିତ ହୋଇଛି ।

'ଓଡ଼ିଆ ସାହିତ୍ୟର ଇତିହାସ' ପ୍ରସଙ୍ଗ ଉଲ୍ଲେଖ କରିବା ବେଳେ ପ୍ରଥମରୁ ସେଥିପାଇଁ ଆଲୋଚକ ଓଡ଼ିଶାର ରାଜନୈତିକ, ସାମାଜିକ ଓ ଧର୍ମଗତ ଜୀବନଧାରା ଉପରେ ଆଲୋକପାତ କରିଛନ୍ତି, ଅଥଚ ଏଭଳି ବ୍ୟାପକ ଜୀବନଧାରାର ଆଲୋଚନା କେତେ ସଂକ୍ଷେପରେ, କେତେ ସୁନିର୍ଦ୍ଦିଷ୍ଟ ଭାବରେ ସେ କରିଛନ୍ତି । ଗୋଟିଏ ଉଦ୍ଧୃତି ତହିଁରୁ- ''ଇଂରେଜମାନଙ୍କର ଓଡ଼ିଶା ଅଧିକାର ସାଧାରଣ ଭାବେ ଏକ ରାଜନୈତିକ ଘଟ ପରିବର୍ତ୍ତନର ଦ୍ୟୋତକ ନୁହେଁ; ତାହା ଓଡ଼ିଶାର ଏକ ନୂତନ ସାମାଜିକ, ଅର୍ଥନୈତିକ, ଧର୍ମଗତ ଜୀବନ ଓ ଚିନ୍ତାଧାରାର ପ୍ରବର୍ତ୍ତକ, ପ୍ରତିଷ୍ଠାପକ ମଧ୍ୟ ।''

ଏଇ ଉଦ୍ଧୃତିଟିରୁ ଆମେ ଦେଖିପାରିବା କିଭଳି ଭାବରେ ଡଃ ନଟବର ସାମନ୍ତରାୟ ଗବେଷଣାର ଗୋଟିଏ ମାର୍ଗ ଓ ଗୋଟିଏ ପଦ୍ଧତି ଆମ ସମ୍ମୁଖରେ ଗଢ଼ି ତୋଳିଛନ୍ତି । ସଂଯତ ଭାଷା, ପରିବେଶର ଅନ୍ତରଙ୍ଗ ବିଶ୍ଳେଷଣ, ଇତିହାସରୁ ରସ ସଂଗ୍ରହ, ଅସଂଖ୍ୟ ତଥ୍ୟର ଉତ୍ଥାପନ ଇତ୍ୟାଦି ପରସ୍ପର ସହ ଗୁନ୍ଥି ହୋଇ ସାବଲୀଳ ଭାବରେ ଗଢ଼ି

ଆସିଛନ୍ତି, ୧୮୦୩ ର ଉତ୍କଳ ସାମ୍ରାଜ୍ୟର ଭାଗ୍ୟ ବିପର୍ଯ୍ୟୟ ଠାରୁ ଆଧୁନିକ ଓଡ଼ିଆ ସାହିତ୍ୟର ଗତିଧାରାରେ ୧୯୨୧ ପରେ ଦେଖା ଦେଇଥିବା ସ୍ୱାଭାବିକ ଶିଥିଳତା ପର୍ଯ୍ୟନ୍ତ । ସେଥିପାଇଁ ଏହା ଆଉ ଗବେଷଣା ପୁସ୍ତକ ହୋଇ ରହି ନାହିଁ, ଏହା ହୋଇଯାଇଛି ଗୋଟିଏ ମୌଳିକ ସୃଷ୍ଟି ଯାହାର ପଟାନ୍ତର ନାହିଁ । ସେଥିପାଇଁ ଏହି ପୁସ୍ତକ ସମୟ ସହିତ ସୃଷ୍ଟି କରି ଚାଲିଛି ଅଧିକରୁ ଅଧିକ ପାଠକୀୟ ଆଗ୍ରହ ଓ ଉତ୍ତେଜନା, ପାଇ ଚାଲିଛି ଅଧିକରୁ ଅଧିକ ସମ୍ମାନ ଓ ଦେଇ ଚାଲିଛି ଆଲୋଚକମାନଙ୍କୁ ବେଶୀ ବେଶୀ ଚାଲେଞ୍ଜ୍ । ତାଙ୍କରି ଭାଷାରେ- "ସୃଷ୍ଟିର ସମାଲୋଚନା ତଥା ସାହିତ୍ୟର ଇତିହାସ ପ୍ରଣୟନ ଜଣଙ୍କ ହାତରେ ପୂର୍ଣତା ଲାଭ କରିବା ସମ୍ପୂର୍ଣ୍ଣ ଅସମ୍ଭବ ।" ଏହା ସତ୍ୟ ହେଲେ ବି ଅସତ୍ୟ ପ୍ରମାଣିତ ହୋଇଛି ତାଙ୍କ ନିଜ କ୍ଷେତ୍ରରେ ।

ପ୍ରଥମ କଥା 'ଓଡ଼ିଆ ସାହିତ୍ୟର ଇତିହାସ' ଲେଖି ସେ ଓଡ଼ିଆ ଭାଷାର ବିରାଟ ଅଭାବଟିକୁ ଦୂର କରିଛନ୍ତି । ଦ୍ୱିତୀୟରେ, ଏହା କେବଳ ଅଭାବ ଦୂରୀକରଣରେ ସୀମିତ ହୋଇ ରହିନାହିଁ, ଏହାର ପ୍ରତିଟି ବାକ୍ୟ ଦେଇଛି ପରବର୍ତ୍ତୀ ଆଲୋଚକମାନଙ୍କୁ ଦୁର୍ବାର ଆହ୍ୱାନ । ସ୍ରଷ୍ଟା ପରି ସମାଲୋଚକଙ୍କର ଅଭାବ ଦୂର କରିବା ପାଇଁ ଏହି ମହାନ ଗ୍ରନ୍ଥଟି ଗ୍ରହଣ କରିଛି ଏକ ଦିଗ୍‌ଦର୍ଶକର ଭୂମିକା । ମୌଳିକ ଗ୍ରନ୍ଥ, ଅତୀତର ରେକର୍ଡ଼, ପତ୍ର ପତ୍ରିକା ପ୍ରଭୃତି କିପରି ସାହିତ୍ୟ-ଇତିହାସର ହୁଅନ୍ତି ପ୍ରଧାନ ଅବଲମ୍ବନ- ତାହା ଏହି ପୁସ୍ତକର ପ୍ରତ୍ୟେକ ସ୍ଥଳରେ ମୌଳିକ ଉପାଦାନର ବିନିଯୋଗରେ ପ୍ରକଟିତ ହୋଇଛି ।

ଡଃ ସାମନ୍ତରାୟ ନିଜେ ସ୍ୱୀକାର କରିଛନ୍ତି ଯେ, ସ୍ୱତଃସ୍ଫୂର୍ତ୍ତ ଶିଳ୍ପକଳା, ତା'ର ଅନ୍ତଃସୌନ୍ଦର୍ଯ୍ୟ କାଳ-ବନ୍ଧନର ବର୍ହିଃଭୂତ । ସେ ଠିକ୍ କଥା ହିଁ କହିଛନ୍ତି । ତାଙ୍କର ସାବଲୀଳ ଆଲୋଚନା ଭଙ୍ଗୀ, ଉପାଦାନ ସଂଗ୍ରହରେ ଜିଜ୍ଞାସାବୋଧ ଓ ଉପାଦାନ ପ୍ରୟୋଗରେ ଯେଉଁ ଅନ୍ତଃସୌନ୍ଦର୍ଯ୍ୟ ଦେଖାଦେଇଛି ତାହା କାଳର ବର୍ହିଃଭୂତ । କାଳର ଅଖଣ୍ଡ ପ୍ରଭାବ ଏହି ସ୍ରଷ୍ଟାଙ୍କର ସୃଷ୍ଟି ଦକ୍ଷତାକୁ ନିୟନ୍ତ୍ରଣ କରିଦେଲା ସତ, ହେଲେ ଯାହା ଯେତିକି ସେ ସୃଷ୍ଟି କରି ଯାଇଛନ୍ତି ତାହାରି ମାଧ୍ୟମରେ ସେ ପ୍ରତ୍ୟହ ଆମ ସ୍ମରଣରେ ଏହିପରି ଆସୁଥିବେ । ଏଭଳି ସାଧକଙ୍କର କେବେ ମୃତ୍ୟୁ ହୁଏ ନାହିଁ, ସେମାନେ ମରଣଜୟୀ ।

ତାଙ୍କ ପ୍ରତି ଆମେ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛୁ ।

*ସମ୍ପାଦିକା,*
*ଓଡ଼ିଶା ଲେଖିକା ସଂସଦ*

**ନଟବର ବାଣୀ**

କିଛି ନ ଜାଣି ସବୁ ଜାଣିବାର ଛଳନାରେ ଯେଉଁ ଅଜ୍ଞାନତା ପ୍ରକାଶ କରାଯାଏ ତାକୁ କଣ୍ଟାକୁ କଣ୍ଟାରେ କାଢ଼ିବା ନ୍ୟାୟରେ ମୂଳରୁ ଉପାଡ଼ି ଦେବା ଏକାନ୍ତ ଦରକାର ।

*ମୁଁ କିପରି ଗବେଷଣା କଲି (୧୯୭୬) ପୃ ୯*

# ଅଙ୍କୁଶ ମୁଦ୍ରାରେ ଗୁରୁଦେବ

*ପ୍ରସନ୍ନ କୁମାର ପଟ୍ଟନାୟକ*

ସମାଲୋଚନା ହେଉଛି ସାହିତ୍ୟର ଅଙ୍କୁଶ । ମନ ରୂପକ ମତ୍ତହସ୍ତୀକୁ ଆୟତ୍ତ ନକଲେ ମନରୁ ଉପଜାତ ସାହିତ୍ୟରେ ଉନ୍ମତ୍ତତା ଦେଖାଯିବା ସ୍ୱାଭାବିକ । ଅଙ୍କୁଶ ଧାରଣ କରିବା କିନ୍ତୁ ଏକ ସହଜ ସାଧାରଣ ବ୍ୟାପାର ନୁହେଁ । ଅଙ୍କୁଶ ମୁଦ୍ରାକୁ ଏଥିପାଇଁ ଦେବ ବିଗ୍ରହ ସହ ସଂଯୁକ୍ତ କରାଯାଇଛି । ବିଦ୍ୟାଦାତା ଗଣପତି ସ୍ୱୟଂ ପାଶ ଓ ଅଙ୍କୁଶଧାରୀ ମଧ୍ୟ । କବି ବା ଲେଖକମାନଙ୍କର ଅନେକ ସମୟରେ ଅଙ୍କୁଶ ଦେଖି ହୃଦ୍‌କମ୍ପ ଜାତ ହେବା ମଧ୍ୟ ଦେଖାଯାଏ । କେହି କେହି ଅଙ୍କୁଶ ବରଦାସ୍ତ କରିବାକୁ ନାରାଜ୍ ତ କେହି କେହି ତାକୁ କେବଳ କଣ୍ଡୁ ପ୍ରଶମନ ପାଇଁ ବ୍ୟବହାର୍ଯ୍ୟ ବୋଲି ମନେ କରିଥାନ୍ତି । ଅତୀତରେ ସମାଲୋଚନାକୁ ସାହିତ୍ୟ ରୂପେ ବିଚାର କରାଯାଉ ନଥିଲା । ଆମ ଦେଶରେ ଦୀନକୃଷ୍ଣ ଯେପରି 'କହିବା ଲୋକ'ଙ୍କୁ ଉପମାତା ବା ସାବତ ମା' ଆଖ୍ୟା ଦେଇଥିଲେ ପାଶ୍ଚାତ୍ୟ ଦେଶରେ ମଧ୍ୟ ସେହିପରି ସମାଲୋଚନାକୁ 'ଡେଭିଲ୍‌ସ୍ ଶେୟାର୍' ବା 'ସୟତାନ୍‌ର ଭାଗ' ଆଖ୍ୟା ଦିଆଯାଇଥିବା ଦେଖିବାକୁ ମିଳେ । ଅଳଙ୍କାର ଶାସ୍ତ୍ରମାନଙ୍କରେ କାବ୍ୟର ଦୋଷଗୁଣ ପ୍ରସଙ୍ଗରେ ବା ସାଧୁସ୍ତୁତି ଖଳନିନ୍ଦା ପ୍ରସଙ୍ଗରେ ସମାଲୋଚନାର କିଞ୍ଚିତ ଆଭାସ ରହିଥିଲେ ମଧ୍ୟ, ସାହିତ୍ୟ ରୂପେ ଏହାର କୌଣସି ସ୍ୱତନ୍ତ୍ର ମର୍ଯ୍ୟାଦା ନଥିଲା । ଉନ୍ନାସିକତା, ଭ୍ରୂକୁଞ୍ଚନ, ଶୁଚିବାୟୁ ପ୍ରସ୍ତତା, କୂପମଣ୍ଡୁକତା, ତୋଷାମୋଦ, ଏକଦେଶଦର୍ଶିତା, ଅକିଞ୍ଚନ ବିମୁଗ୍ଧତା ଓ ପଲ୍ଲବଗ୍ରାହିତା ଆଦି ବହୁବିଧ ବଂଶଗତ ବ୍ୟାଧିରେ ଏହା ପୀଡ଼ିତ ଥିଲା । ମାତ୍ର ଦେଢ଼ଶହ ବର୍ଷ ତଳେ ମାଥିଉ ଆର୍‌ନୋଲ୍‌ଡଙ୍କ ପରି ଆମ ଦେଶରେ ମଧ୍ୟ କେହି କେହି ଅନୁଭବ କରିଥିଲେ ଏବଂ କହିଥିଲେ 'it is criticism that creates the intellectual atmosphere of the age.' ୧୮୫୭ ମସିହାରେ ଆର୍‌ନୋଲଡ୍ ଅକ୍‌ସଫୋର୍ଡରେ କବିତା ବିଭାଗର ପ୍ରଫେସର ହେଲା ପରେ ତାଙ୍କର ପ୍ରବନ୍ଧ ଗୁଡ଼ିକ ପ୍ରକାଶ ପାଇଥିଲା ଏବଂ ଏଥିରେ ଥିଲା ସମାଲୋଚନାକୁ ଗୌରବାନ୍ୱିତ କରିବାର ପ୍ରଥମ କ୍ଷମତାପନ୍ନ ଉଦ୍ୟମ । ଓଡ଼ିଆ ସମାଲୋଚକ ମାନଙ୍କ ଉପରେ ମାଥିଉ ଆର୍‌ନୋଲଡ୍‌ଙ୍କ ଲେଖା ଗୁଡ଼ିକର ପ୍ରଭାବ କିପରି ଥିଲା ତାହା ବିଶ୍ୱନାଥ କରଙ୍କ ପ୍ରବନ୍ଧ ଗୁଡ଼ିକରେ ବ୍ୟବହୃତ ବହୁ ସଂଖ୍ୟକ ଉଦ୍ଧୃତିରୁ ସହଜରେ ଜଣାଯାଏ । ଆଧୁନିକ ଓଡ଼ିଆ ସମାଲୋଚନାକୁ ସମୃଦ୍ଧ କରିବାରେ ବିଶ୍ୱନାଥ କରଙ୍କ ଭୂମିକା କ'ଣ ଥିଲା ତାହା କିଏ ନଜାଣେ ?

ଡଃ ନଟବର ସାମନ୍ତରାୟଙ୍କ ପ୍ରଥମ ପୁସ୍ତକ 'ବ୍ୟାସକବି ଫକୀର ମୋହନ' ପ୍ରକାଶ ପାଏ ୧୯୫୭ ମସିହାରେ । ବିଶ୍ୱନାଥ କରଙ୍କ ସମୟରୁ ଓଡ଼ିଆ ସମାଲୋଚନା ହାସଲ କରିଥିବା ସମସ୍ତ ଆର୍‌ନୋଲ୍‌ଡୀୟ ଉତ୍‌କର୍ଷକୁ ଆତ୍ମସାତ୍ କରି ଚାରି ଦଶନ୍ଧିରୁ ଉର୍ଦ୍ଧ୍ୱ ସମୟ ଧରି ତାଙ୍କର ଲେଖନୀ ଏପରି ତେଜୋଦୀପ୍ତ ଭାବରେ ସେ 'ନିସ୍ପୃହ ପ୍ରଚେଷ୍ଟା' (ସାହିତ୍ୟିକ ସମାଲୋଚନାକୁ ଆର୍‌ନୋଲ୍‌ଡ୍ Disinterested endeavour ରୂପେ ଅଭିହିତ କରିଥିଲେ)

ର ପରିବର୍ତ୍ତନ କରି ଚାଲିଥିଲେ ଯେ, ମନେ ହେଉଥିଲା କବି ବା ଗାଳ୍ପିକ ହେବା ଅପେକ୍ଷା ତା'ର ସମାଲୋଚକ ହେବା ଅଧିକ ଗୌରବାବହ । ତାଙ୍କ ସମକାଳୀନ ବହୁ ସମାଲୋଚକ, ପଦବୀ ଦୃଷ୍ଟିରୁ ଅଧିକ ଗରୀୟାନ ହୋଇ ମଧ୍ୟ ତାଙ୍କ ନିକଟରେ ନିଷ୍ପ୍ରଭ ହୋଇ ପଡ଼ିଥିଲେ । 'ଶିଶୁବେଦ' 'କଳସା ଚଉତିଶା' ପରି ଆଦି ଯୁଗର ଓଡ଼ିଆ ସାହିତ୍ୟରୁ ଆରମ୍ଭ କରି ଓଡ଼ିଆ ବୈଷ୍ଣବ ଓ ପଲ୍ଲୀ ସାହିତ୍ୟ ସମେତ ସତ୍ୟବାଦୀ ଓ ସବୁଜ ସାହିତ୍ୟ ପର୍ଯ୍ୟନ୍ତ ତାଙ୍କର ବଦ୍ଧପରିକର ସତ୍ୟସନ୍ଧ ଦୃଷ୍ଟି ଥିଲା ସୁବିସ୍ତୃତ ଓ ସଜାଗ । ତଥାପି ୧୮୦୩ ରୁ ୧୯୨୦ ମସିହା ମଧ୍ୟସ୍ଥ ଓଡ଼ିଆ ସାହିତ୍ୟରେ ଥିଲା ତାଙ୍କର ଯେପରିକି ନିର୍ବିବାଦୀ ଦଖଲସ୍ୱତ୍ତ୍ୱ ଅଧିକାର । ଦେଖିବାକୁ ଗଲେ ଆଜିକାଲି ଓଡ଼ିଆ ଭାଷାରେ ଯେତେ ସମାଲୋଚନା ଲେଖାଯାଉଛି ଓ ଗବେଷଣା କରାଯାଉଛି ତା' ଭିତରୁ ଅଧିକାଂଶ ଏଇ ସମୟର ସାହିତ୍ୟ ଉପରେ ଆଧାରିତ ଏବଂ ସେଥିପାଇଁ ଡଃ ନଟବର ସାମନ୍ତରାୟ ହିଁ ନଭଶ୍ଚୁମ୍ବୀ-ଅଟ୍ଟାଳିକା ଉପଯୋଗୀ ଭିତ୍ତିଭୂମି ଓ ନକ୍ସା ପ୍ରସ୍ତୁତ କରି ଯାଇଛନ୍ତି । ମିହିମୀନାକରା ନାଗଦନ୍ତରେ ସେ ରତ୍ନ ଖଚିତ କରି ଖୋଦନ କରି ଯାଇଛନ୍ତି ଯୁଗ ଓ ଯୁଗ ପ୍ରୁରୁଷମାନଙ୍କର ବିରୁଦାବଳୀ, ଯହିଁରେ ଶ୍ରମ-ସଘନତା ଦ୍ରଷ୍ଟବ୍ୟ-ଶ୍ରୋତବ୍ୟ-ମନ୍ତବ୍ୟ-ନିଦିଧ୍ୟାସିତବ୍ୟ ବାକ୍ୟ ଭିତରେ ଲୀନ ହୋଇ ଯାଇଥିଲେ ବି ହୃଦ୍ ସ୍ପନ୍ଦନ ଧ୍ୱନିତ ହେଉଥିବା ଅନୁଭବ କରିହେବ ।

ଡଃ ସାମନ୍ତରାୟଙ୍କ ସମାଲୋଚନାର ପ୍ରଧାନ ଆଲୋଚ୍ୟ ସମୟ ୧୮୦୩-୧୯୨୦ ଥିଲା ଓଡ଼ିଶାରେ ନୂଆ ସାହିତ୍ୟ ସୃଷ୍ଟିର ସମୟ । ନୂଆ ସମାଲୋଚନା ସାହିତ୍ୟର ଆବିର୍ଭାବ ମଧ୍ୟ ବାଧ୍ୟତଃ ଅପେକ୍ଷା କରେ ନୂଆ ସାହିତ୍ୟ ସର୍ଜନାକୁ । ଏକଦା ଏ ନୂତନ ଯୁଗର ପ୍ରବର୍ତ୍ତକ କବି ରାଧାନାଥ ଲେଖିଥିଲେ-'ଓଡ଼ିଶାରେ ସାହିତ୍ୟର ଗ୍ରାହକ ଜଣେ ସୁଦ୍ଧା ସୁଲଭ ନୁହେଁ । ଏହା ଉପରେ ପୁଣି ଯେଉଁମାନେ ଉଚ୍ଚ ସାହିତ୍ୟର ଚର୍ଚ୍ଚା ଆଦୌ କରିନାହାନ୍ତି ଏବଂ ଆଦୌ ଲେଖି ଜାଣନ୍ତି ନାହିଁ, ଏପରି ଲୋକେ କବି ଓ ସମାଲୋଚକ ବେଶରେ ସାହିତ୍ୟର ରଙ୍ଗଭୂମିରେ ଅଭିନୟ ଆରମ୍ଭ କରିଛନ୍ତି ।'(କବିଲିପି/ସଂ.ଦେବୀ ପ୍ରସନ୍ନ ପଟ୍ଟନାୟକ/ ପୃ.୮୫) ଯେଉଁ ପ୍ରତ୍ୟାଶିତ ଗ୍ରାହକତାର ଅଭାବରେ ରାଧାନାଥ ବ୍ୟଥିତ ଥିଲେ, ଓଡ଼ିଶାରେ ସେ ପ୍ରକାର ଗ୍ରାହକତା ବୋଧହୁଏ ସୃଷ୍ଟି ହେବାକୁ ୭୫ ବର୍ଷ ଲାଗିଥିଲା । 'ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ'(୧୯୬୦) ନାମକ ତତ୍ତୁଲ୍ୟ ଗ୍ରାହକତାର ମୁଦ୍ରାଙ୍କ ବହନ କରିଥିବା ପୁସ୍ତକର 'ନିଜକଥା' ଶୀର୍ଷକ ବକ୍ତବ୍ୟରେ ଡଃ ସାମନ୍ତରାୟ ଲେଖିଛନ୍ତି- ''ରାଧାନାଥ ସାହିତ୍ୟର ପୂର୍ଣ୍ଣାଙ୍ଗ ଆଲୋଚନା କରିବା ମୋର ଲକ୍ଷ୍ୟ ନୁହେଁ । ସେ ସାହିତ୍ୟର ଯେଉଁ ବିଭାଗ ଉପରେ ଗତ ୭୫ ବର୍ଷ ଭିତରେ କେହି ହାତ ଦେଇ ନାହାନ୍ତି ମୁଁ କେବଳ ସେଇ ବିଭାଗ ଉପରେ ଚିନ୍ତା କରିଛି । ରାଧାନାଥ ସାହିତ୍ୟକୁ ଏ ଦେଶର ଲୋକେ ଯେମିତି ଗତାନୁଗତିକ ଧାରାରେ ଦେଖି ଆସିଛନ୍ତି, ମୁଁ ବାଧ୍ୟ ହୋଇ ତା'ର ବ୍ୟତିକ୍ରମ କରି ତା'କୁ ଗୋଟାଏ ନୂତନ ଚିନ୍ତା ସ୍ରୋତର ପରିପ୍ରକାଶ ରୂପେ ବିଶ୍ଳେଷଣ କରିଛି । x x x 'ଟୀକା-ଅନୁକରଣ ଜର୍ଜ୍ଜରିତ', 'ଛାତ୍ର-ପାଶ୍ ଲକ୍ଷ୍ୟ-ଲାଞ୍ଛିତ' ଓଡ଼ିଆ ସମାଲୋଚନା ସାହିତ୍ୟରେ ମୋର ବିଚାରଧାରା ଓ ବିଶ୍ଳେଷଣ କେତେଦୂର ଯଥାର୍ଥ, ଜନତାର ଅଭିମତ ଦରବାରରେ ତାର ବିଚାର ପାଇଁ ଏ ପୁସ୍ତକଟି ଉପସ୍ଥାପନା କରାଯାଉଛି ।'' ପ୍ରକୃତରେ ଯେଉଁ 'ବିଭାଗ' ଉପରେ ଗତ ୭୫ ବର୍ଷ ଭିତରେ କେହି ହାତ ଦେଇ ନଥିଲେ ଏବଂ ଡଃ ସାମନ୍ତରାୟ

କେବଳ ସେଇ 'ବିଭାଗ' ଉପରେ ଚିନ୍ତା କରିଥିଲେ ତାହା ବସ୍ତୁତଃ କେବଳ ରାଧାନାଥ ସାହିତ୍ୟର ଉପାଦାନ ମାତ୍ର ନଥିଲା । ତାହା ମଧ୍ୟ ଥିଲା ଡଃ ସାମନ୍ତରାୟଙ୍କ ସମାଲୋଚନାର ନବୀକୃତ ଦୃଷ୍ଟିଭଙ୍ଗୀ । ଏହାକୁ ଅନ୍ୟ ଭାଷାରେ 'ସମାଲୋଚନାର ସାହିତ୍ୟାୟନ' ରୂପେ ଅଭିହିତ କରାଯାଇ ପାରେ ।

'ସମାଲୋଚନାର ସାହିତ୍ୟାୟନ' କହିଲେ ଏକପକ୍ଷରେ ବୁଝିବାକୁ ହୁଏ ଡଃ ସାମନ୍ତରାୟଙ୍କ 'ଗଳ୍ପ ନୁହେଁ ସମାଲୋଚନା' ପରି ପୁସ୍ତକର ଶୈଳୀକୁ, ଯହିଁରେ ସମାଲୋଚନା ଏପରି ଏକ ସ୍ତରକୁ ଉନ୍ନୀତ ହୋଇଥାଏ ଯେ ପାଠକ ଆଦୌ ମୂଳଗ୍ରନ୍ଥ ଅର୍ଥାତ୍ ଫକୀର ମୋହନଙ୍କ 'ଛ'ମାଣ ଆଠ ଗୁଣ୍ଠ' ପଢ଼ିବା ଅନିବାର୍ଯ୍ୟ ବୋଲି ମନେକରେ ନାହିଁ । ସମାଲୋଚନାର ଏ କରାମତି ଯାହା ଗବେଷଣାଲବ୍ଧ ଜ୍ଞାନକୁ ତଥ୍ୟମୟ ନକରି ରସୋବନ୍ତ କରିପାରେ, ଡଃ ସାମନ୍ତରାୟଙ୍କ କ୍ଷେତ୍ରରେ ଅଦ୍ୟାବଧି ଅନନ୍ୟ ହୋଇ ରହିଛି । ଅପର ପକ୍ଷରେ ଏହା ସମାଲୋଚନାକୁ ଗବେଷଣା ଦ୍ୱାରା ଏପରି ସ୍ତରକୁ ଉନ୍ନୀତ କରିବାକୁ ବୁଝାଏ ଯହିଁରୁ ମୂଳ ସୃଷ୍ଟିରେ ନିର୍ମିତ ରୂପ ଅନ୍ତରାଳରେ ନିଖୋଜ ପ୍ରସ୍ତୁତି ପର୍ବର ଉପକରଣ, ନୀଳ ମୁଦ୍ରଣ ବା ବ୍ଲୁ ପ୍ରିଣ୍ଟ୍ ପରି ଉଦ୍‌ଭାସିତ ହୋଇଉଠେ । ଏଥିପାଇଁ ପ୍ରତ୍ୟେକ ସୃଷ୍ଟିର ଅନ୍ତରାଳ ଅଧ୍ୟୟନ, ତା'ର ଅଭ୍ୟନ୍ତର ଅଧ୍ୟୟନ ପରି ଅନିବାର୍ଯ୍ୟ ଓ ଅଧିକ ଆୟାସସାଧ୍ୟ । ଡଃ ସାମନ୍ତରାୟ କିପରି ଏଥିରେ କୃତକାର୍ଯ୍ୟ ହୋଇ ପାରିଲେ ତାହା 'ମୁଁ କିପରି ଗବେଷଣା କଲି' ପୁସ୍ତକରେ ଲେଖି ଯାଇଛନ୍ତି ।

ଅବଶ୍ୟ ଓଡ଼ିଶାରେ ସମାଲୋଚନାର ସାହିତ୍ୟାୟନ ଡଃ ସାମନ୍ତରାୟଙ୍କ ଠାରୁ ହଠାତ୍ ଆରମ୍ଭ ହୋଇ ନଥିଲା । ତାଙ୍କର 'ଓଡ଼ିଆ ସାହିତ୍ୟର ଇତିହାସ'ରେ ପ୍ରଦତ୍ତ ଅନୁଚ୍ଛେଦ 'ଉତ୍କଳ ସାହିତ୍ୟ' ଓ 'ସମାଲୋଚନାର ରୂପ ବୈଚିତ୍ର୍ୟ' ଅଂଶରେ ସେ ନିଜେ ନିର୍ଣ୍ଣୟ କରିଛନ୍ତି ଏହାର ଉନ୍ମେଷ କିପରି 'ଉତ୍କଳ ସାହିତ୍ୟ' ପତ୍ରିକା ମାଧ୍ୟମରେ ହୋଇଥିଲା । ରାଧାନାଥଙ୍କ ଜୀବଦ୍ଦଶାରେ ମଧୁସୂଦନ ରାଓ ଓ ନନ୍ଦକିଶୋର ବଳଙ୍କ ପରି ଉଚ୍ଚକୋଟୀର ଆଧୁନିକ ସମାଲୋଚକଙ୍କର ଯେପରି ଆବିର୍ଭାବ ଘଟିଥିଲା, ପରବର୍ତ୍ତୀ ସତ୍ୟବାଦୀ ଗୋଷ୍ଠୀର ପଣ୍ଡିତ ନୀଳକଣ୍ଠ ଓ ସବୁଜ ଗୋଷ୍ଠୀର ଅନ୍ନଦା ଶଙ୍କରଙ୍କ ପରି ପ୍ରବୀଣ ସମାଲୋଚକଙ୍କ ଦ୍ୱାରା ଏ ରୀତିର ବିକାଶ ଅବଶ୍ୟ ଘଟିଥିଲା । ଡଃ ସାମନ୍ତରାୟ ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟଙ୍କ ପ୍ରତି କୃତଜ୍ଞତା ଜନିତ ଉଦାରତାରେ ନିଜକୁ ସମ୍ପୂର୍ଣ୍ଣ ପ୍ରତ୍ୟାଖ୍ୟାନ କରିଥିଲେ ମଧ୍ୟ ସେ ଯେ ଓଡ଼ିଆ ସମାଲୋଚନାର ସାହିତ୍ୟାୟନରେ ମଧୁସୂଦନ-ନନ୍ଦକିଶୋର-ନୀଳକଣ୍ଠ-ଅନ୍ନଦାଶଙ୍କର ଧାରାର ଅନ୍ୟତମ ଉଦ୍ୟତ ସାଧକ ଥିଲେ ଓ ସ୍ୱୟଂ ପରମାନନ୍ଦଙ୍କୁ ଅତିକ୍ରମ କରିପାରି ଥିଲେ - ଏହା ସ୍ପଷ୍ଟ ଉପଲବ୍ଧି କରା ଯାଇପାରେ ।

ରାଧାନାଥ, ଫକୀର ମୋହନ, ବ୍ରଜନାଥ ବଡ଼ଜେନା, ନନ୍ଦକିଶୋର, ଗୋପବନ୍ଧୁ ପ୍ରଭୃତିଙ୍କୁ ଏକ ଏକ ସ୍ୱତନ୍ତ୍ର ଗ୍ରନ୍ଥରେ ଆଲୋଚନା କରିଥିଲେ ହେଁ ସେ ଆଲୋଚ୍ୟ ଏହି ଯୁଗର ସମସ୍ତ ଉଲ୍ଲେଖଯୋଗ୍ୟ କବି ଓ ଲେଖକଙ୍କୁ ନିଜ ଗବେଷଣା ଦ୍ୱାରା ଲୋକଲୋଚନକୁ ଆଣିଛନ୍ତି । କେବଳ ସାହିତ୍ୟିକ ନୁହନ୍ତି- ଏ ଯୁଗର ସଂଗଠକ, ସାମ୍ବାଦିକ, ଶିକ୍ଷକ, ପାଠ୍ୟ ପୁସ୍ତକ ରଚକ, ପ୍ରକାଶକ, ସମ୍ପାଦକ, ସଂସ୍କାରକ- କେହି ତାଙ୍କ ଗବେଷଣାର ପରିଧି ମଧ୍ୟରୁ ବାଦ୍ ଯାଇନାହାନ୍ତି । ସାହିତ୍ୟର ଇତିହାସ ସମ୍ବନ୍ଧୀୟ ଗବେଷଣା ବାସ୍ତବିକ୍ କେତେ

ବ୍ୟାପକ ହୋଇପାରେ ଏବଂ ଆପାତତଃ ଅପ୍ରାସଙ୍ଗିକ ମନେ ହେଉଥିବା ବିଭିନ୍ନ ସରକାରୀ ଦଲିଲ୍, ଗେଜେଟ୍, ସର୍କୁଲାର୍, ଟ୍ରାକ୍ଟ୍ ଇତ୍ୟାଦି କିପରି ଏହାର ମୂଲ୍ୟବାନ ଉପାଦାନ ହୋଇପାରେ, ରେଳପଥ ନିର୍ମାଣ ଠାରୁ ଆରମ୍ଭ କରି ଉଡ୍‌ସ୍ ଡେସ୍‌ପାଚ୍ ଓ ଡ଼ାଉନ୍‌ୱାର୍ଡ ଫିଲ୍‌ଟ୍ରେସନ୍ ଥିଓରୀ ପରି ବ୍ରିଟିଶ୍ ଶିକ୍ଷାନୀତି ଓ ଅର୍ଥନୀତି କିପରି ଏକ ପ୍ରାଦେଶିକ ସାହିତ୍ୟକୁ ପ୍ରଭାବିତ କରିପାରେ- ତା'ର ଏକ ବଳିଷ୍ଠ ସମାଜତାତ୍ତ୍ୱିକ ଅଧ୍ୟୟନ କରି ସେ ଓଡ଼ିଆ ଭାଷାରେ ପ୍ରକୃଷ୍ଟ ଗବେଷଣାତ୍ମକ ନିବନ୍ଧ ରଚନାର ଏକ ଭବ୍ୟମାର୍ଗ ଉନ୍ମୋଚନ କରିଯାଇଛନ୍ତି । ଓଡ଼ିଆ ସାହିତ୍ୟ ଗବେଷଣାରେ ଏ ଧରଣର ବ୍ୟାପକତା ଡଃ ସାମନ୍ତରାୟଙ୍କ ନିବନ୍ଧ ପ୍ରକାଶିତ ହେବା ପର୍ଯ୍ୟନ୍ତ ଅନୁପଲବ୍ଧ ଓ ଅନାସ୍ୱାଦିତ ଥିଲା ।

ରାଧାନାଥଙ୍କ ଦ୍ୱାରା ପ୍ରବର୍ତ୍ତିତ ଆଧୁନିକତା ଯେତେବେଳେ ଯେଉଁ ଆଲୋଡ଼ନ ସୃଷ୍ଟି କରିଥିଲା ଏବଂ ତଦ୍ୱାରା ଇନ୍ଦ୍ରଧନୁ-ବିଜୁଳି ପତ୍ରିକା ଦ୍ୱୟ ମାଧ୍ୟମରେ ନୂତନ-ପୁରାତନକୁ ନେଇ ଯେଉଁ ସାହିତ୍ୟିକ ସଂଘର୍ଷର ସୂତ୍ରପାତ ହୋଇଥିଲା, ତା'ର ପ୍ରଭାବ ଥିଲା ଦୀର୍ଘକାଳ ପ୍ରସାରୀ । ଏହାର ପରବର୍ତ୍ତୀ ପିଢ଼ିର ପ୍ରଭାବଶାଳୀ ସାହିତ୍ୟିକଗଣ ଯଥା- ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋପବନ୍ଧୁ ପ୍ରଭୃତି ରାଧାନାଥ ସାହିତ୍ୟକୁ ଯେପରି ବିଦ୍ୱେଷପୂର୍ଣ୍ଣ ଭାବରେ ସମାଲୋଚନା କରିଛନ୍ତି ସେଥିରୁ ଅନୁମିତ ହୁଏ ଯେ ରାଧାନାଥଙ୍କ ପ୍ରତିଭାର ଯଥାର୍ଥ ମୂଲ୍ୟାଙ୍କନ କରିବାରେ ରକ୍ଷଣଶୀଳ ସମାଲୋଚକ ଗୋଷ୍ଠୀର ପ୍ରଭାବଶାଳୀ ପ୍ରତିବାଦ ତଥାପି ଥିଲା କ୍ରିୟାଶୀଳ । ୧୮୯୭ରେ ପ୍ରକାଶିତ 'ସାରଳାଦାସ ଛନ୍ଦ' ନାମରେ 'ସମାଲୋଚନା' ନାମକ ଏକ ଅମିତ୍ରାକ୍ଷର ଛନ୍ଦରେ ରଚିତ ପୁସ୍ତିକାରେ ରାଧାନାଥଙ୍କୁ କରା ଯାଇଥିବା କୁରୁଚିପୂର୍ଣ୍ଣ ସମାଲୋଚନାରୁ ଓ ଏ ଧରଣର ବହୁ ସଂଖ୍ୟକ ରଚନାରୁ ରାଧାନାଥଙ୍କ ପ୍ରତି ସେ ଯୁଗର ବିଦ୍ୱେଷର ନଗ୍ନରୂପ ଦେଖା ଯାଇପାରେ । ବିଶ୍ୱନାଥ କର, ମଧୁସୂଦନ ରାଓ, ନନ୍ଦକିଶୋର ବଳ ପ୍ରଭୃତିଙ୍କର ସମାଲୋଚନା ନୂତନତାର ପକ୍ଷ ସମର୍ଥନ କରି ରକ୍ଷଣଶୀଳ ଗୋଷ୍ଠୀର ପ୍ରଭାବକୁ କିଛିତ୍ ପ୍ରଶମିତ କରିଥିଲା ସତ, କିନ୍ତୁ ରାଧାନାଥଙ୍କୁ ତିରସ୍କୃତ କବିରୁ ଯୁଗ ପ୍ରବର୍ତ୍ତକ ରୂପେ ଅଧିଷ୍ଠିତ କରାଇବା ଭଳି ବଳିଷ୍ଠତା ତଥାପି ହାସଲ କରିନଥିଲା ।

କ୍ରମାଗତ ବିରୋଧୀ ସମାଲୋଚନାର ସ୍ତୂପ ଭିତରେ ପ୍ରୋଥିତ ରାଧାନାଥ ସାହିତ୍ୟକୁ ନାନା ଦିଗରୁ ପ୍ରଦକ୍ଷିଣ କରି ତା'କୁ ଯଥାଯୋଗ୍ୟ ଆସନ ଦେବାରେ ଡଃ ସାମନ୍ତରାୟଙ୍କ ଉଦ୍ୟମ ଯେ ଅବଶେଷରେ ସଫଳତା ଲାଭ କରିପାରିଥିଲା, ଏହାହିଁ ତାଙ୍କ ଗବେଷଣା ଓ ସମାଲୋଚନାର ସର୍ବାପେକ୍ଷା ଅଧିକ ମହତ୍ତ୍ୱପୂର୍ଣ୍ଣ ଦିଗ । ହୁଏତ କେହି କେହି ଫକୀର ମୋହନଙ୍କୁ ବା ଅନ୍ୟ କାହାକୁ କାହିଁକି ଯୁଗସ୍ରଷ୍ଟା କୁହା ନଯିବ ବୋଲି ସେମାନଙ୍କ ସପକ୍ଷରେ ଯୁକ୍ତି ଉପସ୍ଥାପିତ କରିଛନ୍ତି, ଗ୍ରନ୍ଥ ମଧ୍ୟ ପ୍ରଣୟନ କରିଛନ୍ତି । କିନ୍ତୁ ଡଃ ସାମନ୍ତରାୟଙ୍କର ନିର୍ଣ୍ଣୟ ସବୁ ମହଲରେ ଯେପରି ବିବେଚିତ ହୋଇଛି, ତାହା ଭିନ୍ନ ମତାବଲମ୍ବୀଙ୍କ ଭାଗ୍ୟରେ ଘଟିନାହିଁ । ଅପର ପକ୍ଷରେ 'ସଖାହୀନ ପଞ୍ଚସଖା' ପରି ଗ୍ରନ୍ଥରେ ତାଙ୍କୁ ଅନୁରୂପ ଭାବରେ ବ୍ୟର୍ଥତାର ସ୍ୱାଦ ମଧ୍ୟ ଚାଖିବାକୁ ହୋଇଛି । ଓଡ଼ିଆ ସାହିତ୍ୟର ଇତିହାସରେ 'ପଞ୍ଚସଖା' ଧାରଣା ଯେ କେବଳ ଏକ ଭାକ୍ତିକ ସୌସାଦୃଶ୍ୟର କାଳ୍ପନିକ ପରିଣାମ ଏବଂ ବାସ୍ତବତଃ ଏମାନେ କେହି କାହାରି ସଖା ନଥିଲେ, ଏହା ପ୍ରମାଣ କରିବା ପାଇଁ ତାଙ୍କ ନିକଟରେ ଯୁକ୍ତି ଓ ଉପାଦାନର ଅଭାବ ନଥିଲେ ମଧ୍ୟ ଏବଂ ବଳରାମ-ଜଗନ୍ନାଥ-ଅଚ୍ୟୁତ-ଅନନ୍ତ-

ଯଶୋବନ୍ତଙ୍କ ଜନ୍ମ ସମୟ ମଧ୍ୟରେ ନିହିତ ବ୍ୟବଧାନ ସ୍ୱୀକାର୍ଯ୍ୟ ହେଲେ ମଧ୍ୟ, 'ପଞ୍ଚସଖା' ଧାରଣାକୁ ପରାହତ କରିବାରେ ସେ ବ୍ୟର୍ଥ ହୋଇଛନ୍ତି । ପରବର୍ତ୍ତୀ କାଳରେ ମାଧବ ପଟ୍ଟନାୟକଙ୍କ 'ବୈଷ୍ଣବ ଲୀଳାମୃତ' ଆବିଷ୍କୃତ (ଉଦ୍ଭାବିତ ?) ହୋଇଛି ଯାହାର ପ୍ରାମାଣିକତା ଓ ଐତିହାସିକତା ସନ୍ଦେହାତୀତ ନହୋଇ ବି ତାହା ଡଃ ସାମନ୍ତରାୟଙ୍କ 'ସଖାହୀନ ପଞ୍ଚସଖା' ଉପପାଦ୍ୟକୁ ଅଧିକ ଅବହେଳା ମଧ୍ୟକୁ ଠେଲି ଦେବାରେ ସହାୟକ ହୋଇଛି ଏବଂ 'ପଞ୍ଚସଖା' ଧାରଣାକୁ ଅଧିକ ବ୍ୟବସ୍ଥିତ କରିଛି । ତଥାପି ଏହା ସ୍ୱୀକାର୍ଯ୍ୟ ଯେ ଏ ବ୍ୟର୍ଥତା ଡଃ ସାମନ୍ତରାୟଙ୍କ ସମାଲୋଚନାର ଦୁର୍ବଳତାର ଦ୍ୟୋତକ ନୁହେଁ, ଅଧିକନ୍ତୁ ସାଧାରଣ ଲୋକ ଚିତ୍ତର ସ୍ଥିତବସ୍ଥା ବଜାୟ ରଖିବାରେ ଅହେତୁକ ଆଗ୍ରହର ପରିଚାୟକ ।

ଗବେଷକ ଓ ସମାଲୋଚକ ଭାବରେ ଅଙ୍କୁଶ ମୁଦ୍ରାର ସବୁ ପ୍ରକରଣ, କରନ୍ୟାସ ତାଙ୍କ ରଚନାରେ ସୁବିନ୍ୟସ୍ତ ହୋଇ ରହିଥିଲେ ମଧ୍ୟ କୌଣସି ସଚେତନ ପାଠକ-ମନରେ ଏପରି କୌତୂହଳ ଜନକ ପ୍ରଶ୍ନ ଉଦିତ ହେବାର ସମ୍ଭାବନା ଥାଏ- ଯେ ୧୯୨୦ ମସିହା ପରବର୍ତ୍ତୀ ସାହିତ୍ୟ ଯାହା ୧୯୧୮ ରେ ଜନ୍ମିତ ନଟବରଙ୍କ ଚାକ୍ଷୁସ କାନ୍ଧରେ ସର୍ଜିତ, କାହିଁକି ତାଙ୍କ ଦ୍ୱାରା ଲକ୍ଷ୍ମଣରେଖା ଦ୍ୱାରା ନିଷେଧିତ ହେଲାପରି ବହିର୍ଦେଶରେ ଅନଭ୍ୟର୍ଥିତ ହୋଇ ରହିଛି ? ଉତ୍ତରରେ କୁହା ଯାଇପାରେ- ଆଧୁନିକ ଓଡ଼ିଆ ସାହିତ୍ୟର ଭିତ୍ତିଭୂମି ଓ ପୃଷ୍ଠଭୂମି ଅଧ୍ୟୟନରେ ତାଙ୍କୁ ନିଜର ସମସ୍ତ ସମୟ ନିଃଶେଷ କରିବାକୁ ହୋଇଥିଲା । ସାମ୍ପ୍ରତିକ ସାହିତ୍ୟ ଯାହା ତାଙ୍କ ପ୍ରବନ୍ଧ ପ୍ରକାଶିତ ହୋଇଥିବା ପତ୍ରିକାର ଅପର ପୃଷ୍ଠାରେ ଶୋଭା ପାଉଥିଲା ସେ ସବୁର ସମାଲୋଚନା ପାଇଁ ସତରେ କ'ଣ ତାଙ୍କ ପାଖରେ ସମୟ ନଥିଲା ? ଏ ସମ୍ପର୍କରେ ଲିଓନେଲ୍ ଟ୍ରିଲିଙ୍ଗ୍ଙ୍କର 'The sunset of the Past' ସମ୍ପର୍କରେ ପ୍ରଦତ୍ତ ମନ୍ତବ୍ୟଟି ପ୍ରଣିଧାନଯୋଗ୍ୟ- " In certain cultures, the pastness of a work of art gives it an extra-aesthetic authority which is incorporated into its aesthetic power . Wordsworth's Immortality Ode is acceptable to us only when it is undertstood to have been written at a certain past moment; if it had appeared much later than it did, if it were offered to us now as a contemporary work, we would not admire it ." ରଚନାରେ ଅନୁଲିପ୍ତ ଅତୀତର ଆକର୍ଷଣ ଡଃ ସାମନ୍ତରାୟଙ୍କ ପକ୍ଷରେ କେବଳ ନୁହେଁ, ଓଡ଼ିଆ ସଂସ୍କୃତିରେ ପରିଦୃଷ୍ଟ ଏକ ଅଲଘନୀୟ ବିଭାବ । ତେବେ ପ୍ରଗତିଶୀଳ ସାହିତ୍ୟର ଅବବୋଧ ପାଇଁ ନିକଟତମ ଅତୀତ ଯେ ଉପଯୁକ୍ତ ଭାବରେ ଅଧିତ ହେବା ଜରୁରୀ ଆବଶ୍ୟକ, ତାହା ସେ ଯେପରି ଉପଲବ୍ଧି କରିଥିଲେ ଏବଂ ତାହା ସୁଚାରୁ ରୂପେ ସମ୍ପାଦନ କରିଥିଲେ, ତାହା କିଛି କମ୍ ଗୁରୁତ୍ୱପୂର୍ଣ୍ଣ ଦାୟ ନଥିଲା ।

ଅଷ୍ଟଦଶ ଶତକର ପ୍ରାକ୍‌କାଳରେ ଆଲେକ୍‌ଜାଣ୍ଡର୍ ପୋପ୍ An Essay on Criticism ନାମକ କବିତା ରଚନା କରି ସମାଲୋଚନାକୁ ସର୍ଜନାତ୍ମକ ସାହିତ୍ୟର ସମକକ୍ଷ ମର୍ଯ୍ୟାଦା ଦେଇ କହିଥିଲେ - " 'Tis hard to say, if greater want of skill
Appear in writing or in judging ill ."

କୁଶଳତାର ଅଭାବ ବାସ୍ତବିକ ମୂଳ ରଚନାରେ ଅଧିକ ଦେଖିବାକୁ ମିଳିଥାଏ ନା ସେ ସାହିତ୍ୟର ଦୁର୍ବିଚାରରେ ଅଧିକ ଦେଖିବାକୁ ମିଳିଥାଏ- କହିବା କଷ୍ଟକର ବ୍ୟାପାର । ଅତଏବ ସାହିତ୍ୟର ଉପଯୁକ୍ତ ବିଚାର ଉତ୍ତମ ସାହିତ୍ୟ ସର୍ଜନା ପରି କୁଶଳତାର ଅପେକ୍ଷା ରଖେ । ଏ ବିଚାରରେ କବିବର ରାଧାନାଥ କବି ଭାବରେ ଯେତିକି କୁଶଳୀ, ସେ ସାହିତ୍ୟର ଉପଯୁକ୍ତ ବିଚାରକର୍ତ୍ତା ଭାବରେ ଡଃ ସାମନ୍ତରାୟ ସେତିକି କୁଶଳୀ ଥିଲେ । ଏ କୁଶଳତା ପରବର୍ତ୍ତୀ ଯୁଗର ସାହିତ୍ୟ ଅନୁଶୀଳନ ପାଇଁ ଗୁରୁଦେବଙ୍କ ଅଙ୍କୁଶ ମୁଦ୍ରା ପରି ଅଭିନନ୍ଦନୀୟ ।

*ପ୍ରାଧ୍ୟାପକ/ଓଡ଼ିଆ ବିଭାଗ*
*ଏସ୍. ସି. ଏସ୍. ସ୍ୱୟଂଶାସିତ ମହାବିଦ୍ୟାଳୟ*
*ପୁରୀ-୭୫୨୦୦୧*

## ନଟବର ବାଣୀ

ପ୍ରତ୍ୟେକ ପ୍ରକାର ଜ୍ଞାନର ସ୍ୱକୀୟ ପରିପ୍ରକାଶ ପାଇଁ ସ୍ୱତନ୍ତ୍ର ଭାଷା ଓ ପରିଭାଷା ଏକାନ୍ତ ଆବଶ୍ୟକ । ବ୍ୟବହାରଜନିତ ଅନୁଭୂତି ସହିତ ପ୍ରତ୍ୟେକ ଶବ୍ଦର ସମ୍ପର୍କ ଅତିଶୟ ଗଭୀର ଓ ନିବିଡ଼ । ଭାଷାରେ ବ୍ୟବହୃତ ଶବ୍ଦ ସେଇ ହେତୁରୁ କେବେ ଅର୍ଥହୀନ ଅକ୍ଷର ସମଷ୍ଟି ନୁହେଁ । ପ୍ରତ୍ୟେକ ଜ୍ଞାନର ପରିପୂର୍ଣ୍ଣ ପରିପ୍ରକାଶ ତା'ର ସ୍ୱତନ୍ତ୍ର ଭାଷା ଓ ପରିଭାଷା ଭିତରେ ହିଁ ସାର୍ଥକତା ଆହରଣ କରିଥାଏ ।

*ଓଡ଼ିଶାର ଧର୍ମଧାରାରେ ପଞ୍ଚସଖା-ପରିକଳ୍ପନା (୧୯୮୨) ପୃ. ୨୫୧*

ଖାଣ୍ଟି ଓଡ଼ିଆ କହିଲେ ଏଇଆ, ଯେ ଓଡ଼ିଆ ଘରଣୀର କରଣୀ ଓ ଚଳଣୀ, ଓଡ଼ିଆ ଘରର ବାର ଓଷା ତେର ପର୍ବ; ଓଡ଼ିଆ ଜାତିର ଆଚାର, ବିଚାର, ଚାଲିଚଳଣୀ, ଗତି ପ୍ରକୃତି; ଓଡ଼ିଆ ଜଉତିଷର ବାର, ନକ୍ଷତ୍ର, ଗ୍ରହକାଳ ଓ ତାର ବିଶିଷ୍ଟ ଭାଷା; ଚାଷୀର ଚାଷଠାରୁ ଆରମ୍ଭ କରି ଚଉପାଢ଼ୀର ଭାଗବତ ଜୀବନ ପର୍ଯ୍ୟନ୍ତ ପ୍ରତ୍ୟେକ ଜୀବନର ସୁଖଦୁଃଖ, ହସକାନ୍ଦ-ମୋଟ ଉପରେ ଓଡ଼ିଆ ଜନଜୀବନର ପ୍ରତ୍ୟେକ ବିଭାଗ ସହିତ ସେ ଘନିଷ୍ଠ ଭାବେ ନିଜକୁ ମିଶାଇ ଦେଇଥାଏ, ସେ କେବଳ ଖାଣ୍ଟି ଓଡ଼ିଆ ।

*ବ୍ୟାସକବି ଫକୀରମୋହନ (୧୯୭୨) ପୃ. ୭୫*

ଜାତିର ମୌଳିକ ସାହିତ୍ୟ ନିରୀକ୍ଷଣ ନ କଲେ ତା'ର ଭାଷା ଉପରେ ଯଥାର୍ଥ ଜ୍ଞାନ ଅର୍ଜନ କରିବା ଅସମ୍ଭବ ।

*ମୁଁ କିପରି ଗବେଷଣା କଲି (୧୯୭୬) ପୃ. ୧୨୭*

# ନଟବର ସ୍ମରଣେ

ଅଶ୍ୱିନୀ କୁମାର ମିଶ୍ର

ସାହିତ୍ୟର ହେତୁ ହେଲା ଦିନଠୁ ଏଇ ନାଁଟି ସହିତ ମୋର ପରିଚୟ । କିନ୍ତୁ କେବେ ତାଙ୍କୁ ଦେଖିବାର ସୌଭାଗ୍ୟ ପାଇନାହିଁ । ଦେଖିବାରେ ବି କ'ଣ ଥାଏ ? ଏଇ ଯେମିତି ମୁଁ ସକ୍ରେଟିସ୍, ସାର୍ତ୍ର, ଆଇନ୍‌ଷ୍ଟାଇନ୍ ଓ ଅନ୍ୟ କେତେ କେତେ ଦାର୍ଶନିକ, ମନୀଷୀଙ୍କ ଚାକ୍ଷୁଷ ପରିଧିକୁ ଆସିନାହିଁ । ଅଥଚ ତାଙ୍କ ଆଦର୍ଶ ଯେମିତି ଆଲୋକ ବର୍ତ୍ତିକା ହୋଇ ଜଳୁଛି ଆମ ସାମ୍ନାରେ । ସେହିଭଳି ଡଃ ନଟବର ସାମନ୍ତରାୟ । ଯୋଗଜନ୍ମା ସାରସ୍ୱତ ପୁରୁଷ ।

ବିଗତ ଦିନର ହାଇସ୍କୁଲର ଅଙ୍କ ଶିକ୍ଷକ ସିଏ । କିନ୍ତୁ ଓଡ଼ିଆରେ ସ୍ନାତକୋତ୍ତର ଡିଗ୍ରୀ ହାସଲ ପରେ ଜୀବନର ଗତି ଭିନ୍ନ ମୋଡ଼ ନେଇଛି । ଏ ଭିନ୍ନତାଠୁ ଆହୁରି ଏକ ଭିନ୍ନତାର କଥା ଏଠି କହି ରଖୁଛି । ଔପନ୍ୟାସିକ ଗୋପିନାଥ ମହାନ୍ତିଙ୍କ କୋରାପୁଟ ବଦଳି ଭଳି ତାଙ୍କର ବାରିପଦା ପୂର୍ଣ୍ଣଚନ୍ଦ୍ର ମହାବିଦ୍ୟାଳୟକୁ ବଦଳି ଓ ବାରିପଦା ଅବସ୍ଥାନ ସମୟରେ ଐତିହାସିକ ସ୍ୱର୍ଗତ ପରମାନନ୍ଦ ଆଚାର୍ଯ୍ୟଙ୍କ ସହିତ ତାଙ୍କର ଆତ୍ମୀୟତା, ଓଡ଼ିଆ ଗବେଷଣାର ବଳୟକୁ ଯେ କିଭଳି ପରିବ୍ୟାପ୍ତ କଲା ତା'ର ଛୋଟିଆ ଉଦାହରଣଟିଏ ଏଠି ଦେଉଛି । ଏହା ମୁଁ ତାଙ୍କ ପୁସ୍ତକ 'ମୁଁ କିପରି ଗବେଷଣା କଲି' ପୁସ୍ତକରୁ ହିଁ ଉଦ୍ଧାର କରିଛି ।

''ଶୁଣନ୍ତୁ, ଗବେଷଣାରେ ଥାଏ ତିନୋଟି ପର୍ଯ୍ୟାୟ । ପ୍ରଥମ ହେଉଛି ନିର୍ଦ୍ଦିଷ୍ଟ ବିଷୟ ପାଇଁ ଉପାଦାନ ଆହରଣ । ତାର ଦ୍ୱିତୀୟ ପର୍ଯ୍ୟାୟ ହେଉଛି ଆହୃତ ଉପାଦାନ ଭିତରେ ସାମଞ୍ଜସ୍ୟ ପ୍ରତିଷ୍ଠା କିମ୍ବା ଏକ ନୂତନ ମୂଲ୍ୟବୋଧ ପ୍ରତିଷ୍ଠା । ତାର ତୃତୀୟ ପର୍ଯ୍ୟାୟ ହେଉଛି ଅତୀତ ସହିତ ଆତ୍ମ ନିମଜ୍ଜନ କରି ନୂତନ ଆଲୋକପାତ କରିବା ।''

ପରମାନନ୍ଦ-ନଟବରଙ୍କ ଉପରୋକ୍ତ କଥୋପକଥନ ଶୈଳୀକୁ ଦେଖିଲେ ଶୁଣିଲେ ଆଜିର ଇଲେକ୍‌ଟ୍ରୋନିକ୍ ମିଡିଆର ଇଣ୍ଟରଭ୍ୟୁଗୁଡ଼ିକ କେମିତି ବହୁଳାଂଶରେ ଅଳୀକ, ତା'ର ଦୃଷ୍ଟାନ୍ତ ଆଖି ଆଗରେ ନାଚିଯାଏ ।

ସିଏ ଯେତେବେଳେ ଗବେଷଣାର ପ୍ରୟାସ ସ୍ୱରୂପ ଅତୀତ ଆଡ଼କୁ ଚାହିଁଛନ୍ତି, ସେତେବେଳେ 'ପ୍ରାକ୍ ସାରଳା ଦାସ' ସମୟରେ ସାହିତ୍ୟିକ ପାଣିପାଗ ପ୍ରତି ସତର୍କତା ଅବଲମ୍ବନ କରିଛନ୍ତି । ଯେମିତି ନଈଟିକୁ ବୁଝିବାକୁ ହେଲେ ତା'ର ପହିଲା ଝରକୁ ହିଁ ଖୋଜିବାକୁ ହେବ । ଆପଣା ଛାଏଁ 'ଶିଶୁ-ବେଦ'ର ବିଷୟବସ୍ତୁ ଆସି ହାଜର୍ ହୋଇଛି । ତାଙ୍କ ଭାଷାରେ ''ଯୋଗ ସାହିତ୍ୟର ପ୍ରସାର ହେତୁ ସେ ସମୟରେ ଅଚ୍ୟୁତ ପନ୍ଥୀଙ୍କର କୌଣସି ସନ୍ୟାସୀ ନାଥପନ୍ଥୀ ଗୋରଖନାଥଙ୍କ ହିନ୍ଦୀ ପଦକୁ ଓଡ଼ିଆରେ ଅନୁବାଦ କରିବାରେ ଆଶ୍ଚର୍ଯ୍ୟ କିଛି ନାହିଁ । ରୋକ୍ ଠୋକ୍ ଭାବରେ ସେ କହିବାକୁ ଚାହିଁଛନ୍ତି, ସାରଳା ଦାସଙ୍କ ସମୟରୁ ହିଁ 'ମହାଭାରତ' ଜରିଆରେ ଓଡ଼ିଆ ସାହିତ୍ୟର ଅୟମାରମ୍ଭ । ସମାଲୋଚକଙ୍କ ସୂକ୍ତୋକ୍ତି- ''ପଚିଶଟି ଶ୍ଳୋକ ବିଶିଷ୍ଟ ଯେଉଁ 'ଶିଶୁ ବେଦ' ପୁସ୍ତକକୁ ପ୍ରାକ୍-ସାରଳା ଯୁଗର କୃତି ବୋଲି ଆଲୋଚକମାନେ ଦାବି କରିଛନ୍ତି, ସେମାନେ ଏ ପୁସ୍ତକକୁ କେତେ ଚିହ୍ନିଛନ୍ତି ?''

ଔପନ୍ୟାସିକ ଫକୀର ମୋହନ ସେନାପତିଙ୍କ ବହୁ ଚର୍ଚ୍ଚିତ ଉପନ୍ୟାସ 'ଛ ମାଣ ଆଠ ଗୁଣ୍ଠ'କୁ ସମାଲୋଚନା କଲାବେଳେ ପ୍ରାବନ୍ଧିକ ଫକୀର ମୋହନଙ୍କ ଆତ୍ମଜୀବନୀରୁ ଉଦ୍ଧାର କରି କହିଛନ୍ତି- ''ଆମ୍ଭମାନଙ୍କ କଲମ ଏଣେ ତେଣେ ଯାଉଅଛି ସତ୍ୟ... କଲମଟିରେ କିଛି ଲେଖାର ଦୁର୍ବଳତାକୁ ସେ ପରୋକ୍ଷରେ ସ୍ୱୀକାର କରିଛନ୍ତି ।'' ଡଃ ନଟବରଙ୍କ ଭାଷାରେ ''ଉପନ୍ୟାସଟିକୁ ପ୍ରଥମେ ପୂରା ଲେଖିଥିଲେ ହୁଏତ ସେଥିରେ ଥିବା ଅସଙ୍ଗତି ବା ଅସମ୍ପୂର୍ଣ୍ଣତା ପ୍ରତି ସେ ନିଜେ ସଚେତନ ହୋଇ ପାରିଥାନ୍ତେ । ଏହାର ଅଭାବରୁ କେତେକ ଅସଙ୍ଗତି ତାଙ୍କର ଅଜ୍ଞାତସାରରେ ରହିବା କିଛି ଅସମ୍ଭବ ନୁହେଁ ।''

ବୁଢ଼ୀ ମଙ୍ଗଳାଙ୍କ ବର୍ଣ୍ଣନା ଭିତରେ ଜମି ହସ୍ତାନ୍ତରଣ ଯେଉଁ ବିଷୟ ସପ୍ତମ ପରିଚ୍ଛେଦରେ ଗର୍ଭିତ, ସେଠି ସମାଲୋଚକଙ୍କ ଆଖି ସିଧାସଳଖ ପଡ଼ିଯାଇଛି । ଏହି ପରିଚ୍ଛେଦ ଅନୁଯାୟୀ ସାରିଆର ବୟସ ତିରିଶ ବୋଲି କୁହାଯାଉଥିବା ବେଳେ ଦଶମ ପରିଚ୍ଛେଦ ବେଳକୁ ତାର ବୟସ କମିଯାଇ କେମିତି ପଚିଶ ହୋଇଛି, ସେଥିପାଇଁ ସିଏ ବିସ୍ମିତ । ଡଃ ସାମନ୍ତରାୟ ଖୋଲା ମନରେ ଏହି ଉପନ୍ୟାସରେ ସମୟର ବ୍ୟତିକ୍ରମକୁ ସମାଲୋଚନା କରିବାକୁ ପଛେଇ ନାହାନ୍ତି । ପୁନଶ୍ଚ ଫକୀର ମୋହନଙ୍କ ଆତ୍ମଜୀବନୀ ଚରିତ ଅନୁଯାୟୀ ''ତତ୍ ପରେ ଛ'ମାଣ ଆଠଗୁଣ୍ଠ ନାମରେ ଗୋଟିଏ ଗଳ୍ପ ଆରମ୍ଭ କଲି । ତାହା କ୍ରମଶଃ ବଢ଼ି ବଢ଼ି ଗୋଟିଏ ବଡ଼ ଉପନ୍ୟାସରେ ପରିଣତ ହେଲା ।'' ଏଠି ନଟବରଙ୍କ ପ୍ରତିକ୍ରିୟା ଭିନ୍ନ ଧରଣର । ''ପ୍ରଥମେ ଯେଉଁ ପରିକଳ୍ପନାଟି ଗୋଟିଏ କ୍ଷୁଦ୍ରଗଳ୍ପ ରୂପାୟନ ପାଇଁ ଉଦ୍ଦିଷ୍ଟ ଥିଲା, ସେ ଗଳ୍ପ ଯଦି ପରିଶେଷରେ ଏକ ବଡ଼ ଉପନ୍ୟାସରେ ପରିଣତ ହୁଏ, ତା'ହେଲେ ସେ ପରିକଳ୍ପନାରେ ରୂପାନ୍ତର ତଥା କେତେକ ଅସଙ୍ଗତି ଦେଖା ଯିବାରେ ଆଶ୍ଚର୍ଯ୍ୟ କିଛି ନାହିଁ ।''

ଏକଦା 'ଆହୁଟର ପରିଶିଷ୍ଟ' ବୋଲି ଗୋଟିଏ ପ୍ରବନ୍ଧ ସିଏ 'ନବରବି'ରେ ଲେଖିଥିଲେ । 'ଆହୁଟ' ଶବ୍ଦର ବ୍ୟାଖ୍ୟା ଯାହା ସେ କରିଥିଲେ, ଏଥିରେ ଜଣେ ପତ୍ର ପ୍ରେରକ ଏକମତ ହୋଇ ନପାରି ସେହି ଶବ୍ଦର ପୋଥିଗତ ଅବତାରଣା କରି ସେହି ପତ୍ରିକାକୁ ପଠାଇ କହିଥିଲେ ଯେ ''ନଟବର ବାବୁଙ୍କ ଗବେଷଣାର ବିଷୟବସ୍ତୁ ଆମୂଳଚୂଳ ଭୁଲ୍ ।'' ବ୍ୟକ୍ତିଗତ ପତ୍ର ମାଧ୍ୟମରେ ସେ ତାଙ୍କର ଏହି ମତାମତକୁ ମଧ୍ୟ ନଟବର ବାବୁଙ୍କ ନିକଟକୁ ପ୍ରେରଣ କରିଥିଲେ । କିନ୍ତୁ, ନଟବର ବାବୁ ଏଥିରେ ଦୁଃଖିତ କିମ୍ବା କ୍ରୋଧିତ ନ ହୋଇ ପତ୍ର ପ୍ରେରକଙ୍କୁ ଜଣାଇଥିଲେ ଯେ ''କେହି ମା' ପେଟରୁ ବିଦ୍ୟାବନ୍ତ ପଣ୍ଡିତ ହୋଇ ଜନ୍ମ ହୋଇ ନଥାନ୍ତି । ଅଧ୍ୟୟନ ଓ ଅଧ୍ୟବସାୟ ବଳରେ ଜଣେ ବିଦ୍ୟାର୍ଜନ କରିଥାଏ । ତେଣୁ ମୋର ପଢ଼ିବା ଓ ଲେଖିବା ଭିତରେ ଯଦି କେଉଁଠି ଦୁର୍ବଳତା ରହି ଯାଇଥାଏ, ତାକୁ ଅନ୍ୟ କେହି ଦେଖାଇ ଦେଲେ ତାକୁ ଗ୍ରହଣ କରିବାରେ ମୋର କୌଣସି ଆପତ୍ତି ରହିବ କାହିଁକି ?''

ତାଙ୍କ ଲିଖିତ 'ଓଡ଼ିଆ ସାହିତ୍ୟର ଇତିହାସ'(୧୮୦୩-୧୯୨୦)ରେ ପୁରାତନ ଓଡ଼ିଶାର ରାଜନୈତିକ, ସାମାଜିକ, ଓ ଧର୍ମଭିତ୍ତିକ ଜୀବନଚର୍ଯ୍ୟା ସାଙ୍ଗକୁ ଇଂରେଜ ଶାସନର ପୃଷ୍ଠଭୂମି, ନ'ଅଙ୍କ ଦୁର୍ଭିକ୍ଷ ଓ ବ୍ରିଟିଶ କୁଶାସନର ପରିଚୟ, ନୂତନ ସାମାଜିକ ଜୀବନର ପୁନର୍ଗଠନରେ ଖ୍ରୀଷ୍ଟିୟାନ୍ ପାଦ୍ରୀଙ୍କ ଭୂମିକା, ଓଡ଼ିଶାରେ ବ୍ରାହ୍ମଧର୍ମର ପ୍ରଚାର ତଥା ପ୍ରସାର, ସେ ସମୟରେ ଶିକ୍ଷାର ସ୍ୱରୂପ, ଶିକ୍ଷା ବିସ୍ତାର ପାଇଁ ସରକାରଙ୍କ ମନୋଭାବ, ଭାଷା-

ବିଦ୍ୟାଳୟ ପ୍ରତିଷ୍ଠା ଦିଗରେ ହାର୍ଡିଂଜ୍ ସ୍କୁଲର ଭୂମିକା ଇତ୍ୟାଦି ବିଷୟବସ୍ତୁ ଯାହା ସୃଜନ ସାହିତ୍ୟର କୌଣସି ଧାର ଧରେ ନାହିଁ ସେଇ ବିଷୟମାନଙ୍କରେ ପୌନଃପୁନିକ ଭାବେ ଆଲୋଚନା କରାଯାଇଛି । ଏଭଳି ବିଷୟବସ୍ତୁର ସାରତତ୍ତ୍ୱ ସଂଗ୍ରହ କରିବାକୁ ଯାଇ ସେ କେତେ କେତେ ମୂଲ୍ୟବାନ୍ ଦଲିଲ୍ ସବୁ ଆର୍କାଇଭିସ୍, ମ୍ୟୁଜିୟମ୍ ତଥା ଲାଇବ୍ରେରୀ ମାନଙ୍କରେ ବହି ଖୋଳାଇଛନ୍ତି । ତାଙ୍କ ପରିଶ୍ରମ, ଏକାଗ୍ରତା ଓ ନିଷ୍ଠା ଆଗରେ ଆଜିର କେଉଁ ଗବେଷକ ଅବା ଦମ୍ଭ ଧରି ଛିଡ଼ା ହେବ ?

ଦୈବାତ୍ କେବେ ଯଦି ନ'ଅଙ୍କ ଦୁର୍ଭିକ୍ଷର ଚିତ୍ରଣ ପାଇଁ ଇତିହାସର ପୃଷ୍ଠା ଉନ୍ମୋଚନ କରାଯାଏ, ତେବେ ନଟବର ବାବୁଙ୍କ କଲମର ହିଁ ଆଶ୍ରୟ ନେବାକୁ ହେବ । ଖୁଦକୁଣ୍ଡା, କଦଳୀ ମଞ୍ଜା, ସୁନୁସୁନିଆ ପତ୍ର, ପିତା ସାଗ, ଓଲୁଅ, କରବା, କାଙ୍କଡମୂଳ, କଇଁମୂଳ, ବାରମିଶା ଶାଗ ପତ୍ର ଏଇ ଜାତିର ମଣିଷଙ୍କ ଜଠର ଜ୍ୱାଳାକୁ ଉପଶମ କରିବାକୁ ଦିନେ ସହାୟକ ହୋଇଥିଲା । ଏହା ଆଜିର ମଣିଷକୁ ଆଶ୍ଚର୍ଯ୍ୟାନ୍ୱିତ କରେ । ଚାଉଳ ବର୍ମାରୁ ଆସୁଛି ବୋଲି ଆଉ ରନ୍ଧା ଭାତକୁ ଅପେକ୍ଷା କରି ନପାରି ଯେଉଁ କାଙ୍ଗାଳଦଳ ସମୁଦ୍ର କୂଳରେ ଛିଡ଼ା ହୋଇ ସିଧାସଳଖ ବସ୍ତାରୁ ଚାଉଳ ନେଇ ପାଟିରେ ପୂରାଇଥିଲେ ସେଇ ଚିତ୍ରପଟର ସ୍ମରଣକାରୀ ଏହି ପ୍ରାବନ୍ଧିକ ମହାଶୟ । ନଗର ଓ ଗ୍ରାମର ଶ୍ମଶାନ ସବୁ ଭର୍ତ୍ତି ହୋଇ ଯାଇଥିଲା ଜୁଡ଼ ଜୁଡ଼ ଶବରେ । ସ୍ୱାଭାବିକ ହୃଦୟ ବୃତ୍ତିକୁ ଜଳାଞ୍ଜଳି ଦେଇଥିଲା ମଣିଷ କ୍ଷୁଧାର ତାଡ଼ନାରେ । ଦୟା, ମାୟା, କ୍ଷମା, କରୁଣା ମଣିଷର ସ୍ୱାଭାବିକ ଧର୍ମ ସବୁ ଲୋପ ପାଇ ଯାଇଥିଲା । ଶ୍ରୀକୃଷ୍ଣଙ୍କର ବାଲ୍ୟଲୀଳାର ପୃଷ୍ଠଭୂମିରେ ଲିଖିତ ଅଭିମନ୍ୟୁ ସାମନ୍ତସିଂହାରଙ୍କ ସ୍ମରଣୀୟ ପଂକ୍ତି 'ଧୀରେ ଘେନ କାନନରେ କୃଷ୍ଣ ବିଳମ୍ବିତ, ବାତ୍ସଲ୍ୟ ମମତା ଘେନି ଭାଳୁଛନ୍ତି ମାତ' ଭଳି ପଂକ୍ତିର ଅନ୍ତଃସ୍ୱର, ଯାହା ମମତାମୟୀ ମା'ର ପୁତ୍ର ପାଇଁ ଉଦ୍ଦିଷ୍ଟ, ତାହା ପରିସ୍ଥିତିର ଚାପରେ କେଉଁ ଭଳି ନିସ୍ତବ୍ଧ, ସେତକ ପାଠକ ସହଜରେ ଅନୁମାନ କରି ପାରୁଥିବେ । ନଟବରଙ୍କ ଭାଷାରେ 'ଜନକ ଜନନୀ ଅସହାୟ ଶିଶୁ ସନ୍ତାନମାନଙ୍କୁ ହିଂସ୍ର ଅରଣ୍ୟ ଶ୍ୱାପଦମାନଙ୍କ ନିକଟରେ ନିକ୍ଷେପ କରିଥିଲେ ।'' କେହି କେହି କ୍ଷୁଧା ଜର୍ଜରିତ ହୋଇ ରାକ୍ଷସବତ୍ ନିଜ ନିଜ ସନ୍ତାନମାନଙ୍କୁ ସୁଦ୍ଧା ଭକ୍ଷଣ କରୁଥିଲେ ।

ସମାଲୋଚନା ଦୃଷ୍ଟିରୁ ନଟବର କଠୋରପନ୍ଥୀ । ଗଙ୍ଗାଧର, ରାଧାନାଥ, ନନ୍ଦକିଶୋର ସୁଦ୍ଧା ତାଙ୍କ ଲେଖନୀରୁ ତ୍ରାହି ପାଇ ପାରି ନାହାନ୍ତି । କବି ଗଙ୍ଗାଧରଙ୍କ 'ଇନ୍ଦୁମତୀ' କାବ୍ୟର ପଂକ୍ତିଟିଏ ''ମୁହଁ ମୋଡ଼ିଦେଇ ସେଠାରୁ ଗମନ କଲେ ସେ ଗଜଗାମିନୀ, ନିଶାକରଠାରେ କେବେ କି ପ୍ରସନ୍ନ ହୋଇଅଛ କମଳିନୀ'' । ଏଠି ନଟବରଙ୍କ ଉକ୍ତି ପ୍ରଣିଧାନ ଯୋଗ୍ୟ, ଯଥାଃ- ''କମଳିନୀ ନିଶାକର ଠାରେ ପ୍ରସନ୍ନ ନ ହୋଇପାରେ, କିନ୍ତୁ ମୁହଁ ମୋଡ଼ିଦେଇ ଯିବାରେ ସୌଜନ୍ୟ ତ ଆଦୌ ନାହିଁ ।'' ଇନ୍ଦୁମତୀଙ୍କ ଇପ୍‌ସିତ ଯୁବରାଜ ଅଜଙ୍କ ଦର୍ଶନଜନିତ କୂଳ କାମିନୀଙ୍କର ଚିତ୍ତ ଚାଞ୍ଚଲ୍ୟ କିମ୍ବା ଅଜ-ବିଳାପ ଭିତରେ ଥିବା ଅତୀତ ଜୀବନର ପ୍ରାଣପୂର୍ଣ୍ଣ ପ୍ରେମ ପରିଭୋଗ, କାଳିଦାସ ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ଯେପରି କବିତା- ସୌନ୍ଦର୍ଯ୍ୟର ମହନୀୟ କଳ୍ପନାରେ ରସାଣିତ କରିଛନ୍ତି ତା'ର ବହୁତ ଅଭାବ 'ଇନ୍ଦୁମତୀ'ରେ ଦେଖିବାକୁ ମିଳେ । ସେହିଭଳି ନଟବର 'ପ୍ରଣୟ ବଲ୍ଲରୀ'ରେ ଗଙ୍ଗାଧରଙ୍କୁ ନିର୍ଘାତ୍ ସମାଲୋଚନା କରିବାକୁ ପଛେଇ ନାହାନ୍ତି । କାଳିଦାସଙ୍କ ଶକୁନ୍ତଳା

ଆତ୍ମ ସଂଯତ ହୋଇ ନିଜକୁ ଯେପରି ବ୍ୟବହାର କରିଛି ମେହେରଙ୍କ ଶକୁନ୍ତଳା ସେପରି ଆଦୌ କରିନି । ବରଂ କବି ନାୟକ-ନାୟିକାକୁ ଶ୍ଳେଷମୂଳକ କଥୋପକଥୋନରେ ରତ କରାଇ ଶେଷରେ କହିଛନ୍ତି "ଏ ରୂପେ ବିବିଧେ କୌତୁକେ ବିନୋଦେ ବେଳ ହେଲା ଅବସାନ" । ବ୍ୟକ୍ତଗତ ଭାବେ ମୁଁ ଏଠି ନଟବରଙ୍କ ଏହି ଉଗ୍ର ଅଣକାବ୍ୟ ପ୍ରବାହିନୀ ମସ୍ତିଷ୍କର ଧାରାକୁ ସମର୍ଥନ କରିପାରୁ ନାହିଁ । କାରଣ କବିତାର ରସବଲ୍ଲରୀରେ ଗୁଡ଼େଇ ହୋଇଥିବା କବି-ମାନସର ପ୍ରତିଫଳନକୁ ନଟବର ସମାଲୋଚକ ସାଜି ସମ୍ପୂର୍ଣ୍ଣ ନିରେଖି ପାରି ନାହାନ୍ତି । କିନ୍ତୁ ତାଙ୍କ ଉପଲବ୍ଧି ଯେ କୌଣସି ଦୃଷ୍ଟିରୁ ଅଭିନନ୍ଦନୀୟ ନିଶ୍ଚୟ ।

କବିବର ରାଧାନାଥଙ୍କ କାବ୍ୟିକ ଜୀବନକୁ ଛାଡ଼ି ବ୍ୟକ୍ତିଗତ ଜୀବନର ସ୍ତରକୁ କର୍ମବୀର ଗୌରୀଶଙ୍କର 'ଉତ୍କଳ-ଦୀପିକା'ରେ ଯେଉଁଭଳି ତିରସ୍କାର କରିଛନ୍ତି, ତାକୁ ଆବିଷ୍କାର କରିଛନ୍ତି ନଟବର । ୩/୧୦/୧୮୯୧ରେ 'ଦୀପିକା'ରେ ସେ ଲେଖିଛନ୍ତି-"ରାଧାନାଥ ବାବୁ କେଉଁ ଉଦ୍ଦେଶ୍ୟ ସାଧନାକୁ ବୀରପ୍ରସୂ ଓଡ଼ିଶାର ବିସ୍ତୀର୍ଣ୍ଣ ଇତିହାସରୁ ଏହି ଜଘନ୍ୟ ପାପମୟ ବିଷୟ ଉଦ୍ଧାର କରି କବିତାମୟୀ ପୁସ୍ତିକାରେ ଲିପିବଦ୍ଧ କରିବାକୁ ପ୍ରୟାସ କରିଅଛନ୍ତି, ତାହା ଆମ୍ଭେମାନେ ଅନୁମାନ ସୁଦ୍ଧା କରିପାରୁ ନାହୁଁ । ଆମ୍ଭେମାନେ କେବଳ ଏତିକି କହିବୁ ଯେ ଏଭଳି ବିଷୟ ଲିପିବଦ୍ଧ କରିବାକୁ ଯାଇ ତାଙ୍କର ସୁନ୍ଦର ଲେଖନୀ କଳଙ୍କିତ ହୋଇଛି ।"ନଟବରଙ୍କ ଭାଷାରେ, "ପାଠ୍ୟ ପୁସ୍ତକ ପ୍ରଣୟନ, ସେମାନଙ୍କ ନିର୍ବାଚନ ଓ ବିଦ୍ୟାଳୟମାନଙ୍କରେ ପ୍ରଚଳନ ଏହି ତିନି ବିଷୟରେ ୮୦-୯୦ ସାଲ ଭିତରେ ଓଡ଼ିଶାର ବହୁ ବିଶିଷ୍ଟ ଲେଖକଦଳ ରାଧାନାଥଙ୍କ ବିରୁଦ୍ଧରେ ମାତି ଉଠିଥିଲେ ।" ନଟବରଙ୍କ ଆବିଷ୍କୃତ ଅନ୍ୟ ଦିଗଟି ହେଲା "ସ୍କୁଲ ସମୂହର ଜଏଣ୍ଟ ଇନିସ୍‌ପେକ୍ଟର ବାବୁ ରାଧାନାଥ ରାୟ କୁମାର ବୈକୁଣ୍ଠନାଥ ଦେ'ଙ୍କ ପ୍ରେସ୍‌ର ଶୁଭାକାଙ୍‌କ୍ଷୀ, ତେଣୁ କୁମାର ମହାଶୟ ଓଡ଼ିଶାର ଶିକ୍ଷା ବିଭାଗର ପ୍ରଧାନ ପୁସ୍ତକ ବ୍ୟବସାୟୀ । ଏଠାରେ ଏପରି ଜନରବ ଏବଂ ଅନେକଙ୍କର ଏପରି ବିଶ୍ୱାସ ଯେ ରାଧାନାଥ ବାବୁଙ୍କ ଲେଖା, ବୈକୁଣ୍ଠ ବାବୁଙ୍କ ନାମରେ ଭଣିତା ଅନେକ ପୁସ୍ତକ ଓଡ଼ିଆରେ ଚଳୁଛି ।"

ବହୁ ପରିଶ୍ରମ ମାଧ୍ୟମରେ ଡଃ ନଟବର ସାମନ୍ତରାୟ ଉପରୋକ୍ତ ବିଷୟ ବସ୍ତୁ ଗୁଡ଼ିକ ପୁରାତନ ଜୀର୍ଣ୍ଣ ଓଡ଼ିଆ ପତ୍ରପତ୍ରିକା ମାନଙ୍କରୁ ଉଦ୍ଧାର କରି ଆମର ସାରସ୍ୱତ ବିନୋଦନ ପାଇଁ ଭେଟି ଦେଇଛନ୍ତି । ଏଗୁଡ଼ିକ ବାସ୍ତବରେ ଓଡ଼ିଆ ସାହିତ୍ୟର ଅମୂଲ୍ୟ ସମ୍ପଦ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ରାଧାନାଥଙ୍କ କାବ୍ୟ-କୃତି, ଯାହା ଇତିହାସର ବସ୍ତୁ ଭାବେ ବାହ୍ୟତଃ ଜଣା ପଡୁଥିଲା, ସେଗୁଡ଼ିକ ବାସ୍ତବରେ ଇତିହାସର ବାସ୍ତବତାକୁ ନେଇ ତିଆରି ନ ହୋଇଥିବାର ପ୍ରାମାଣିକ ତଥ୍ୟ ନଟବର ବାବୁ ତାଙ୍କ ସମାଲୋଚନା ମାନଙ୍କରେ ଲିପିବଦ୍ଧ କରିଛନ୍ତି । ଯଥା- ଚୋରଗଙ୍ଗ (ନନ୍ଦିକେଶ୍ୱରୀ) ଗଙ୍ଗେଶ୍ୱର (ପାର୍ବତୀ) ଯଯାତି କେଶରୀ ପ୍ରମୁଖ ଐତିହାସିକ ବ୍ୟକ୍ତି କିନ୍ତୁ କବିବରଙ୍କ କାବ୍ୟ-ସୃଷ୍ଟିରେ ତାଙ୍କ ଐତିହାସିକ ମୂଲ୍ୟ ନିଷ୍ପ୍ରଭ, କାରଣ ଏମାନେ ଓଡ଼ିଆ ଇତିହାସର ବ୍ୟକ୍ତି ବିଶେଷ ନୁହନ୍ତି ।

ଓଡ଼ିଆ ଯୋଗ ସାହିତ୍ୟର ସୂତ୍ରଧର 'ଦେବନାଶନବଟ'ଠୁ ଆରମ୍ଭ କରି 'ଅବନା ଆଠ ଅକ୍ଷର' ପର୍ଯ୍ୟନ୍ତ ପ୍ରତିଟି ସ୍ତରରେ ଆମେ ଦେଖିବାକୁ ପାଉଁ ନଟବରଙ୍କ ବିପୁଳାତ

ପ୍ରଜ୍ଞାର ବାରିଧି । ଏଥିରେ ଅବଗାହନର ଏହି କିଞ୍ଚିତ ସୁଯୋଗକୁ ହାତଛଡ଼ା କରିବାର ମୋର ଅଭିପ୍ରାୟ ନଥିଲା । ଏ ପ୍ରବନ୍ଧଟିର ପ୍ରସ୍ତୁତି ତେଣୁ ସେଇଥି ପାଇଁ ।

ବୈଦିକ ପ୍ରଣବ ମନ୍ତ୍ରର ଓଁକାର ଧ୍ୱନିଠୁ ଆଧୁନିକ ସାହିତ୍ୟଯାଏ ସବୁଠି ଡଃ ନଟବର ସାମନ୍ତରାୟ ତାଙ୍କ ବ୍ୟୁପତ୍ତିର ପରାକାଷ୍ଠା ଦେଖାଇଛନ୍ତି । ସାଧନାର ସର୍ବ ବୃହତ୍ ଶିବିରର ବାସିନ୍ଦା ସିଏ । ଆଜି ଯେଉଁ ସମୟରେ ଅଧିକାଂଶ ମଣିଷ ସାରସ୍ୱତ ଅଧ୍ୟବସାୟରୁ ମୁହଁ ଫେରାଇ ଆଣୁଛନ୍ତି, ସେତେବେଳେ ଏହି ଯୋଗଜନ୍ମା ପୁରୁଷଙ୍କର ଜ୍ଞାନ ଚକ୍ଷୁର ଅପୂର୍ବ ଜ୍ୟୋତି ଆଗରେ ସ୍ୱତଃ ସେମାନେ କେଉଁଭଳି ମଳିନ ଦେଖାଯାନ୍ତି, ତାହା ଯେମିତି ବାସ୍ତବ ସତ୍ୟର ଏକ ପରିପୂର୍ଣ୍ଣ ରୂପ । ଏହାର ଦ୍ୱିରୁକ୍ତି କାହିଁ ।

*ଭି.ଏ ୧୦/୩*
*ୟୁନିଟ୍- ୨, ଭୁବନେଶ୍ୱର.*

## ନଟବର ବାଣୀ

ସ୍ୱାତନ୍ତ୍ର୍ୟ ଓ ଅଭିନବତ୍ୱ ହେଉଛି ପ୍ରତ୍ୟେକ ସାହିତ୍ୟ ସୃଷ୍ଟିର ପ୍ରାଣକେନ୍ଦ୍ର; ସାହିତ୍ୟ ସମାଲୋଚନାରେ ମଧ ଏ ଉପାଦାନ ନ ଥିଲେ ସମାଲୋଚନା ଅନ୍ଧ ସ୍ତାବକତା ଓ ବ୍ୟର୍ଥ ଅନୁକରଣରେ ପର୍ଯ୍ୟବସିତ ହୁଏ ।

*ଓଡ଼ିଆ ବୈଷ୍ଣବ ସାହିତ୍ୟ (୧୯୫୯) ନିଜକଥା*

ଜୀବନ ଓ ସାହିତ୍ୟ ପରସ୍ପର ସମ୍ବନ୍ଧାନ୍ୱିତ । ସାହିତ୍ୟ ହେଉଛି ଜୀବନର କଳାଗତ ଅଭିବ୍ୟକ୍ତି ମାତ୍ର । ଗୋଟିଏ ହେଉଛି ପ୍ରାଣବନ୍ତ ଘଟଣା ପ୍ରବାହ, ଅନ୍ୟଟି ସେଇ ପ୍ରାଣ ପ୍ରବାହର ଶୈଳ୍ପିକ ପରିପ୍ରକାଶ ।

*ଓଡ଼ିଆ ସାହିତ୍ୟର ଇତିହାସ (୧୯୬୪) ପୃ. ୩୭୨*

ସାହିତ୍ୟ ଜାତୀୟ ସଂସ୍କୃତିର ବାହକ, ଜାତୀୟ ଜୀବନବୋଧର ପରିପ୍ରକାଶକ; ସମାଲୋଚନା କିନ୍ତୁ, ଉନ୍ନତ ସାହିତ୍ୟର ପ୍ରଖ୍ୟାପକ, ତାର ଗତି ନିର୍ଦ୍ଧାରକ ମଧ ।

*ଓଡ଼ିଆ ସାହିତ୍ୟକୁ ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ଦାନ (୧୯୭୦)ପୃ. ୧*

# ଏକନିଷ୍ଠ ଜ୍ଞାନ ତପସ୍ୱୀ - ଡଃ ନଟବର ସାମନ୍ତରାୟ

ଡଃ ସଂଘମିତ୍ରା ମିଶ୍ର

ସମାଲୋଚନା ଏକାଧାରରେ କଳା ଓ ବିଜ୍ଞାନ, ଏହା ସୃଷ୍ଟି ସହିତ ଭୂମିଷ୍ଠ ହୁଏ ମାତ୍ର ସଚେତନ ଭାବରେ ତହିଁରୁ ସୃଷ୍ଟିର ଉତ୍‌କର୍ଷ ଅପକର୍ଷ ଉଭୟ ବାରି ହୋଇପଡ଼େ । ପରିବର୍ତ୍ତିତ ସାମାଜିକ ସ୍ଥିତି ଓ ଭାବପ୍ରବଣତା କିଭଳି ସୃଷ୍ଟି ପ୍ରକ୍ରିୟାକୁ ପ୍ରଭାବିତ କରେ, ତାହା ସମାଲୋଚକଟିଏ ହିଁ ପ୍ରଥମେ ପାଠକକୁ ଦେଖାଇଦିଏ । ସତେ ଯେମିତି ସାହିତ୍ୟର କାନନ ଭିତରକୁ ଆଗ୍ରହୀ ପାଠକଟିଏ ସମାଲୋଚକର ହାତଧରି ଅଗ୍ରସର ହୁଏ ଓ ବେଳେବେଳେ ସମାଲୋଚକଠାରୁ ପ୍ରାପ୍ତ ଦୃଷ୍ଟିଭଙ୍ଗୀ ଦେଇ ସାହିତ୍ୟକୁ ଅନୁଭବ କରିବାର ଚେଷ୍ଟା କରେ । ‘ Criticism may be broadly and provisionally defined as the intelligent appreciation of any work of art, and by consequence the just estimate of its value and rank . Literary critism is, of course, concerned only with literature; but the general nature of the functions of criticism is much the same whether the objects criticised be literature or painting or sculpture or music ’.(୧) ସାହିତ୍ୟର ସମାଲୋଚକ କେବେ ସାହିତ୍ୟର ଭାଷା ଶୈଳୀର ଆଲୋଚନା କରେ ତ କେବେ ତା’ର ଭାବଗତ ଆଲୋଚନା କରେ । କେବେ ସେ ସ୍ରଷ୍ଟାକୁ ଶତ କଣ୍ଠରେ ପ୍ରଶଂସା କରିବା ବେଳେ କେବେ ପୁଣି ତା’ର ତ୍ରୁଟି ପ୍ରତି ତର୍ଜନୀ ସଙ୍କେତ କରେ । ପୁଣି କବି/ଲେଖକଙ୍କୁ ନିର୍ଦ୍ଦିଷ୍ଟ ସମୟ ଖଣ୍ଡରେ ଅବସ୍ଥାପିତ କରି ସମକାଳୀନ ଅନ୍ୟାନ୍ୟ ସ୍ରଷ୍ଟାଙ୍କଠାରୁ ଆଲୋଚ୍ୟ ସ୍ରଷ୍ଟାଙ୍କର ସ୍ୱାତନ୍ତ୍ର୍ୟର ବିଚାର କରେ । ସମାଲୋଚକଟିଏ ପାଲଟିଯାଏ ସାହିତ୍ୟର କଷଟି ପଥର, ସେହି ପଥରରେ ପରଖ ହୋଇ ସାହିତ୍ୟର ମାନ ନିର୍ଦ୍ଦିଷ୍ଟ ହୁଏ । ତେଣୁ ବିବେକୀ ଗ୍ରାହକ, ଉତ୍ତମ ଆଲୋଚକ ତଥା ଭ୍ରାନ୍ତି ସୁଧାରକ ଭାବରେ ଲେଖକଟିଏ ସମାଲୋଚକଙ୍କୁ ନିଜର ବନ୍ଧୁ ଓ ଗୁରୁ ଭାବରେ ଗ୍ରହଣ କରିନିଏ । ନଟବର ସାମନ୍ତରାୟ ସେହିଭଳି ଓଡ଼ିଆ ସାହିତ୍ୟର ଜଣେ ସୁଯୋଗ୍ୟ ଜହୁରୀ, ଯାହାର ମୂଲ୍ୟାୟନରେ ସମଦର୍ଶିତା ହିଁ ଆକର୍ଷଣୀୟ । ନଟବର ସାମନ୍ତରାୟ ଓଡ଼ିଆ ସାହିତ୍ୟର ଗବେଷକ,ଅଧ୍ୟାପକ'ଓ ଛାତ୍ରଛାତ୍ରୀଙ୍କ ପାଇଁ ଏକ ନାମ ନୁହେଁ, ଏକ ଦିବ୍ୟ ଅନୁଭବ । ଏକ ଉଚ୍ଚାକାଙ୍‌କ୍ଷାର ଭିନ୍ନନାମ । ବିଦ୍ୟାଳୟରେ ଶିକ୍ଷକତା କରିବାଠାରୁ ଅଧ୍ୟାପକ ଭାବରେ ଅବସର ଗ୍ରହଣ କରିବା ଭିତରେ ନଟବର ସାମନ୍ତରାୟ ନିଜର ପ୍ରଜ୍ଞା ଓ ପ୍ରତିଭାର ଦ୍ୟୁତି ବିକିରଣ କରି ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ପରିପୁଷ୍ଟ କରିଛନ୍ତି ।

ସୃଷ୍ଟି ଓ ସମାଲୋଚନାର ସମ୍ପର୍କ ଯେ କିଭଳି ନିବିଡ଼ ତାହା ସେ ବହୁ ଭାବରେ ପ୍ରତିପାଦନ କରିଛନ୍ତି । ଯଶ ଲାଳସାଠାରୁ ବହୁ ଦୂରରେ ନିଜକୁ ଗବେଷଣାରେ ନିରତ

ନିୟୋଜିତ କରି ସେ ପାଲଟିଛନ୍ତି ଆମ ସମୟର ଉଦାହରଣଯୋଗ୍ୟ ଗବେଷକ । ଓଡ଼ିଆ ଭାଷାର ବହୁ ପ୍ରାଚୀନ କୃତିକୁ ସେ ଆଲୋଚନା ମାଧ୍ୟମରେ ନୂତନ ଭାବରେ ପ୍ରତିଷ୍ଠା ଦେଇଛନ୍ତି । ଆଧୁନିକ ଓଡ଼ିଆ ସାହିତ୍ୟର ବିଭିନ୍ନ ଦିଗକୁ ସେ ସୂକ୍ଷ୍ମ ଭାବରେ ଅନୁଧ୍ୟାନ କରି ତା'ର ଇତିହାସ ରଚନା କରିଛନ୍ତି । ଅନେକ ପୂର୍ବ ନିର୍ଦ୍ଦିଷ୍ଟ ମତବାଦକୁ ସେ ତ୍ରୁଟିପୂର୍ଣ୍ଣ ବୋଲି ପ୍ରମାଣ କରି ନିଜର ନିର୍ଦ୍ଦିଷ୍ଟ ମତ ଉପସ୍ଥାପନ କରିବାର ସତ୍‌ସାହସ ରଖିଛନ୍ତି ।

ଆଶ୍ଚର୍ଯ୍ୟର ବିଷୟର ଏହି ଯେ ଗଣିତ ଓ ଭୂଗୋଳର ଶିକ୍ଷକ ଭାବେ ଜୀବିକାର୍ଜନ ଆରମ୍ଭ କରିଥିବା ଏହି ମନସ୍ୱୀ ସ୍ରଷ୍ଟା ଘରୋଇ ଭାବରେ ଓଡ଼ିଆ ଏମ.ଏ ଦେବାକୁ ଆଗ୍ରହ କରନ୍ତି । ସେତେବେଳେ ପୂଜ୍ୟ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସହିତ ତାଙ୍କର ପରିଚୟ ତଥା ଘନିଷ୍ଠତା ହୋଇଥିଲା । ତତ୍‌କାଳୀନ ଅନ୍ୟ ଜଣେ ପ୍ରଚଣ୍ଡ ପ୍ରତିଭାଧର ସ୍ରଷ୍ଟା ପଣ୍ଡିତ ନୀଳକଣ୍ଠଙ୍କ ସାହିତ୍ୟ ସାଧନା ମଧ୍ୟ ନଟବର ସାମନ୍ତରାୟଙ୍କୁ ବହୁ ଭାବରେ ପ୍ରଭାବିତ କରିଥିଲା । ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ନିରଳସ ସାଧନା, ବ୍ୟାପକ ଅଧ୍ୟୟନ ଓ ପଣ୍ଡିତ ନୀଳକଣ୍ଠଙ୍କର ମୌଳିକ ଦୃଷ୍ଟିଭଙ୍ଗୀ ତାଙ୍କୁ ବେଶ ଅନୁପ୍ରାଣିତ କରିଥିଲା । ରାଧାମୋହନ ଗଡ଼ନାୟକଙ୍କ ନୂତନ ବିଚାରଧାରା ତଥା ଡଃ ମାୟାଧର ମାନସିଂହଙ୍କର ସଂସ୍ପର୍ଶରେ ଆସି ସେ ଟିକେ ଅଲଗା ଦୃଷ୍ଟିରେ ସାହିତ୍ୟର ଗତିକୁ ଲକ୍ଷ୍ୟ କରିଥିଲେ । ମାନସିଂହ ତାଙ୍କୁ ସମାଲୋଚନା ଲେଖିବା ପାଇଁ ବାରମ୍ବାର ଉତ୍ସାହିତ କରିଥିଲେ । ଏହି ଉତ୍ସାହ ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟଙ୍କ ସାହଚର୍ଯ୍ୟରେ ଆସି ପଲ୍ଲବିତ ହୋଇଥିଲା ଓ ଗଣିତର ଯୁକ୍ତିସଙ୍ଗତିକୁ ମୂଳଧନ କରି ଏକ ଯୁକ୍ତିଶୀଳ ସାହିତ୍ୟ ସମାଲୋଚକ ଭୂମିଷ୍ଠ ହୋଇଥିଲା । ପରମାନନ୍ଦ ଆଚାର୍ଯ୍ୟଙ୍କ ଗ୍ରନ୍ଥାଗାର ପାଲଟିଗଲା ସେହି ସମାଲୋଚକର ପ୍ରସୂତିକକ୍ଷ । କ୍ରମେ ବିଂଶାଧିକ ସମାଲୋଚନା ପୁସ୍ତକ ଏହି ଗବେଷକଙ୍କ ଲେଖନୀରୁ ଆତ୍ମପ୍ରକାଶ କରି ସୃଷ୍ଟି ସହିତ ସମାଲୋଚନାର ଶୋଣିତ ସମ୍ପର୍କକୁ ଦୃଢ଼ କରିବା ସହିତ ଓଡ଼ିଆ ସାହିତ୍ୟର ଭଭା ଓ ପୋତା ଉଭୟ ଦିଗକୁ ପରିପୁଷ୍ଟ କରିଥିଲା । ଡଃ ହରେକୃଷ୍ଣ ମହତାବଙ୍କ ସମ୍ପାଦିତ 'ଝଙ୍କାର' ହିଁ ତାଙ୍କର ପ୍ରବନ୍ଧଗୁଡ଼ିକୁ ସୁଧୀ ପାଠକମାନଙ୍କ ନିକଟରେ ପରିଚିତ କରାଇଥିଲା । ଫଳରେ ସେ ଅଧିକରୁ ଅଧିକ ଲେଖିବା ପାଇଁ ଉତ୍ସାହିତ ହୋଇଥିଲେ ।

'ଗବେଷକ' ଶବ୍ଦର ଯେଉଁ ଅର୍ଥ ମନରେ ସଂଭ୍ରମ ସୃଷ୍ଟିକରେ ସେହି ଅର୍ଥର ସେ ଥିଲେ ମୂର୍ତ୍ତିମନ୍ତ ପ୍ରତୀକ । ତାଙ୍କ ଭାଷାରେ, "ଆଲୋଚନା ଓ ଗବେଷଣାର ଥାଏ ମୁଖ୍ୟତଃ ଦୁଇଟି ପ୍ରଧାନ ଆବଶ୍ୟକତା । ପ୍ରଥମ, ଅଧ୍ୟବସାୟ ବଳରେ ନୂତନ ତଥ୍ୟ ବା ଉପାଦାନର ଆବିଷ୍କାର । ଦ୍ୱିତୀୟ, ଏହି ଆବିଷ୍କୃତ ତଥ୍ୟର ଯଥାର୍ଥ ଅଧ୍ୟୟନ ଓ ବିଚାର ଭିତ୍ତିରେ ବିଷୟର ତତ୍ତ୍ୱ-ନିରୂପଣ ଅଥବା ସତ୍ୟର ଦ୍ୱାର ଉଦ୍‌ଘାଟନ ।" (୧)

ତାଙ୍କ ରଚିତ ପ୍ରବନ୍ଧଗୁଡ଼ିକ ମଧ୍ୟରୁ ବ୍ୟାସକବି ଫକୀରମୋହନ(୧୯୫୭), ଆଧୁନିକ ଓଡ଼ିଆ ସାହିତ୍ୟର ଦିଗ୍‌ଦର୍ଶନ(୧୯୫୯), ଓଡ଼ିଆ ବୈଷ୍ଣବ ସାହିତ୍ୟ(୧୯୫୯), ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ(୧୯୬୦), ଗଙ୍ଗାଧର ସାହିତ୍ୟ ସମୀକ୍ଷା(୧୯୬୦), ଗଳ୍ପ ନୁହେଁ ସମାଲୋଚନା(୧୯୬୩), ଓଡିଆ ସାହିତ୍ୟର ଇତିହାସ(୧୯୬୩), ଆଧୁନିକ ଓଡିଆ ସାହିତ୍ୟର ଭିତ୍ତିଭୂମି(୧୯୬୪), ନନ୍ଦକିଶୋର ସାହିତ୍ୟ ସମୀକ୍ଷା(୧୯୬୪), ବଡ଼ଜେନା ସାହିତ୍ୟ ସମୀକ୍ଷା(୧୯୭୧), ସଖାହୀନ ପଞ୍ଚସଖା(୧୯୭୫), ଓଡ଼ିଆ

ସାହିତ୍ୟରେ କାଳ ଓ କଳା(୧୯୭୭), ଆଧୁନିକ ଓଡ଼ିଆ ସାହିତ୍ୟ ବିକାଶର ପୃଷ୍ଠଭୂମି (୧୯୭୯), ଓଡ଼ିଆ ଧର୍ମସାହିତ୍ୟରେ ପଞ୍ଚସଖା ପରିକଳ୍ପନା(୧୯୮୨) ପ୍ରଭୃତି ଦୃଷ୍ଟି ଆକର୍ଷଣକାରୀ। ମୁଁ କିପରି ଗବେଷଣା କଲି(୧୯୭୬) ତାଙ୍କର ସୁଖପାଠ୍ୟ ତଥା ତଥ୍ୟାଶ୍ରୟୀ ପୁସ୍ତକ । 'ପଲ୍ଲୀ ସାହିତ୍ୟ' ଶୀର୍ଷକ ପୁସ୍ତକରେ ସେ କହନ୍ତି ''ସ୍ୱକୀୟ ମହିମାରେ ଏହି ସ୍ୱତନ୍ତ୍ର 'ଗାଉଁଲୀ ଗୀତ'ର ବୁନିୟାଦୀ ନାମ ହେଉଛି ପଲ୍ଲୀ ସଙ୍ଗୀତ ।'' ଡଃ ଅସିତ କବିଙ୍କ ଭାଷାରେ ''ପଲ୍ଲୀ ସଙ୍ଗୀତ ଭିତରେ ଡକ୍ଟର ସାମନ୍ତରାୟ ଶୁଣି ପାରିଛନ୍ତି ପଲ୍ଲୀର ହୃଦବୀଣାର ଝଙ୍କାର ଯାହା ପ୍ରକଟିତ ହୋଇଛି ହଳିଆର ଗୀତରେ, ମାଇପିଙ୍କ ଥଟ୍ଟା ଓ ପରିହାସ ମୂଳକ ଗୀତିକାରେ ଓ ଝିଅକାନ୍ଦଣା ପ୍ରଭୃତି ଭିତରେ । ଗଭୀର ଆଗ୍ରହ ସଂଜାତ ଅନୁସନ୍ଧିତ୍ସା ଫଳରେ ସେ ପ୍ରବଚନ ଓ ପ୍ରହେଳିକାର ଆତ୍ମିକ ସୌନ୍ଦର୍ଯ୍ୟ ଉଲବ୍ଧି କରିବାରେ କେବଳ ସଫଳ ହୋଇ ନାହାନ୍ତି, ଅଧିକନ୍ତୁ ସଫଳ ହୋଇଛନ୍ତି ପଲ୍ଲୀ କାହାଣୀର ବୈଶିଷ୍ଟ୍ୟ ଗତିପ୍ରକୃତି ଓ ଶୈଳ୍ପିକ ସୌନ୍ଦର୍ଯ୍ୟ ପ୍ରଦର୍ଶନରେ ।'' (୧)

ପ୍ରାଚୀନ ସାହିତ୍ୟ ଧାରା ମଧ୍ୟରୁ ସେ ଓଡ଼ିଆ ବୈଷ୍ଣବ ସାହିତ୍ୟ, ସଖାହୀନ ପଞ୍ଚସଖା ଭଳି ପୁସ୍ତକ ରଚନା କରି ପଞ୍ଚସଖା ପରିକଳ୍ପନା କିଭଳି ଭ୍ରମାତ୍ମକ ତାର ଯୁକ୍ତି ବାଢ଼ିଛନ୍ତି । 'ବିଦଗ୍ଧ ଚିନ୍ତାମଣି' ଓ 'ଲଳିତା' ଭଳି ଆଲୋଚନାରେ ସେ ପ୍ରାଚୀନ ସାହିତ୍ୟର ନବୀନ ମୂଲ୍ୟାୟନ କରିଛନ୍ତି । ବହୁଶାସ୍ତ୍ରରେ ପ୍ରବୀଣ ଏହି ସ୍ରଷ୍ଟା ସମାଲୋଚକ ଚରିତ୍ରମାନଙ୍କର ମାନସିକ ଘାତ ପ୍ରତିଘାତର ଚିତ୍ରଣରେ ଯଥେଷ୍ଟ ମାନବୀୟ ସମ୍ବେଦନଶୀଳତାର ପରିଚୟ ଦେଇଛନ୍ତି ।

ଆଧୁନିକ ସାହିତ୍ୟ କହିଲେ ସାଧାରଣତଃ ରାଧାନାଥଙ୍କଠାରୁ ଆରମ୍ଭ ବୋଲି ଗ୍ରହଣ କରାଯାଇଛି । ଡଃ ସାମନ୍ତରାୟ ରାଧାନାଥ, ମଧୁସୂଦନ, ଫକୀର ମୋହନ ଓ ଗଙ୍ଗାଧର ସାହିତ୍ୟର ବହୁ ନୂତନ ଦିଗ ଉନ୍ମୋଚନ କରିଛନ୍ତି । ଉନବିଂଶ ଶତାବ୍ଦୀର ଶେଷପାଦର ଓଡ଼ିଶାରେ ସ୍ୱାଭିମାନ ପ୍ରତିଷ୍ଠାର ଅନୁପମ ଉଦ୍ଦେଶ୍ୟ ନେଇ ରଚିତ ଏହି ସମାଲୋଚନା ପୁସ୍ତକ ଗୁଡ଼ିକରେ ଅନେକ ନବୀନ ତଥା ଯୁକ୍ତି ସଙ୍ଗତ ଦିଗ ପାଠକର ଦୃଷ୍ଟି ଆକର୍ଷଣ କରିଥାଏ । ସେ 'ଆଧୁନିକ ଓଡ଼ିଆ ସାହିତ୍ୟର ଭିତ୍ତିଭୂମି' ଭଳି ପୁସ୍ତକ ରଚନା କରିବା ସହିତ 'ଗଳ୍ପ ନୁହେଁ ସମାଲୋଚନା' (୧୯୬୩), 'ଓଡ଼ିଆ ସାହିତ୍ୟକୁ ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ଦାନ' (୧୯୬୫) ଭଳି ପୁସ୍ତକର ସ୍ରଷ୍ଟା । ଏ ସବୁଥିରେ ଓଡ଼ିଆ ସାହିତ୍ୟର ଯୁଗ ବିଭାଜନ ସମ୍ପର୍କୀୟ ବହୁ ନୂତନ ତଥ୍ୟ ପ୍ରଦାନ କରାଯାଇଛି ଓ ପ୍ରତିଷ୍ଠିତ ସମସ୍ତ ତଥ୍ୟ ସମ୍ପର୍କରେ ପୁନର୍ବାର ଚିନ୍ତା କରିବାକୁ ଆହ୍ୱାନ ଦିଆଯାଇଛି । ଫଳରେ ପରବର୍ତ୍ତୀ ସମୟରେ ବହୁ ମନସ୍ୱୀ ସମାଲୋଚକ ଏଭଳି ଯୁକ୍ତି କରି ସାହିତ୍ୟର ପରିସୀମା ତଥା ଗଭୀରତା ବୃଦ୍ଧି ପାଇଁ ପ୍ରୟାସ କରିଛନ୍ତି । ନଟବର ସାମନ୍ତରାୟ ପାଲଟି ଯାଇଛନ୍ତି ଏହି ସମାଲୋଚକ ମାନଙ୍କର ଦିଗଦର୍ଶକ ।

'ଓଡ଼ିଆ ସାହିତ୍ୟର ଇତିହାସ '(୧୮୦୩ ରୁ ୧୯୨୦) ଡଃ ନଟବର ସାମନ୍ତରାୟଙ୍କ ସାରସ୍ୱତ ପରିଚୟ ପାଇଁ ଯଥେଷ୍ଟ । ଏହା ପ୍ରତ୍ୟେକ ଓଡ଼ିଆ ଛାତ୍ରଛାତ୍ରୀ, ଗବେଷକ ଓ ଅଧ୍ୟାପକମାନଙ୍କ ପାଇଁ ଅବଶ୍ୟ ସଂଗ୍ରହଣୀୟ ଗ୍ରନ୍ଥ । ଏହି ଗ୍ରନ୍ଥରେ ଯେଉଁ ତାରିଖ ବାର ଇତ୍ୟାଦିର ପରିଚ୍ଛନ୍ନ ବିବରଣୀ ସ୍ଥାନିତ ହୋଇଛି ତାହାକୁ ଅଗଣିତ ଗବେଷକ ଅଭ୍ରାନ୍ତ

ବୋଲି ଗ୍ରହଣ କରି ଗବେଷଣା କରୁଛନ୍ତି । ଗୋଟିଏ କଥାରେ କହିଲେ ଆଧୁନିକ ସାହିତ୍ୟର ଦିଗ ଓ ବାଗ ଜାଣିବା ପାଇଁ ଏହି ଗ୍ରନ୍ଥ ଏକ ଦିଗ ବାରେଣୀ ସଦୃଶ । ୧୩ ଟି ପରିଚ୍ଛେଦରେ ବିନ୍ୟସ୍ତ ଏହି ଗ୍ରନ୍ଥରେ ଓଡ଼ିଶାର ରାଜନୈତିକ, ସାମାଜିକ ଓ ଧର୍ମଗତ ଜୀବନଧାରା, ଆଧୁନିକ ଶିକ୍ଷାର ପ୍ରସାର ଓ ପରିଣତି, ଆଧୁନିକ ପାଠ୍ୟପୁସ୍ତକର ଆଦି ପରିଚୟ, ନବଜାଗରଣ ଓ ନୂତନ ଯୁବଶକ୍ତିର ଅଭ୍ୟୁଦୟ, ଓଡ଼ିଆ ଭାଷା ବିଲୋପ ଆନ୍ଦୋଳନ, ଆଧୁନିକ ଓଡ଼ିଆ ସାହିତ୍ୟ, ଯୁଗପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ, ଭକ୍ତକବି ଶ୍ରୀ ମଧୁସୂଦନ, ବ୍ୟାସକବି ଫକୀର ମୋହନ, ଓଡିଆ ନାଟ୍ୟ ସାହିତ୍ୟର ବିକାଶ ଧାରା, ଓଡ଼ିଆ ଗଦ୍ୟ ସାହିତ୍ୟର ବିକାଶଧାରା, ଆଧୁନିକ ପଦ୍ୟ ସାହିତ୍ୟର ବିକାଶ ଧାରା ଓ ଆଧୁନିକ ଓଡ଼ିଆ ସାହିତ୍ୟର ଇତିହାସ ସ୍ଥାନିତ ହୋଇଛି । ନବମ ପରିଚ୍ଛେଦ ପରେ ବାକିତକ ଅଧ୍ୟାୟ ପାଇଁ ସମାଲୋଚକ ବିଶେଷ ଗୁରୁତ୍ୱ ଦେଇନଥିବା ବହୁ ଆଲୋଚକ ସ୍ୱୀକାର କରିବା ସହିତ ଏହା ମଧ ସ୍ୱୀକାର କରନ୍ତି ଯେ ଏହି ପରିଚ୍ଛେଦ ଗୁଡ଼ିକ ପରବର୍ତ୍ତୀ ଆଲୋଚନମାନଙ୍କ ଆଲୋଚନା ପାଇଁ ଭିତ୍ତିଭୂମି ପ୍ରସ୍ତୁତ କରିଛି । ଇଂରେଜମାନଙ୍କ ଓଡ଼ିଶା ଆଗମନ, ସ୍କୁଲ ପାଠ୍ୟପୁସ୍ତକ, ଇଂରାଜୀ ଶିକ୍ଷା, ସଂସ୍କୃତ ଓ ଉର୍ଦ୍ଦୁ ଶିକ୍ଷାପାଇଁ ସୁଯୋଗ, ଭାଷା ବିଲୋପ ଆନ୍ଦୋଳନ ଓ ଭାଷା ସୁରକ୍ଷାର ପ୍ରଚେଷ୍ଟା ସମ୍ପର୍କରେ ଯେଉଁ ଆଲୋଚନାମାନ କରାଯାଇଛି ତାହା ବର୍ତ୍ତମାନ ପର୍ଯ୍ୟନ୍ତ ଅଭ୍ରାନ୍ତ ବିବେଚିତ ହୋଇଛି । ପ୍ରତ୍ୟେକ ପରିଚ୍ଛେଦ ଶେଷରେ ଆଲୋଚକ ନିଜର ସ୍ୱତନ୍ତ୍ର ମତ ଉପସ୍ଥାପନ କରିଛନ୍ତି । ଯେଉଁଥିରେ ସେହି ପରିଚ୍ଛେଦର ସାମଗ୍ରିକ ଭାବସତ୍ତା ନିହିତ । ଉଦାହରଣ ସ୍ୱରୂପ- ‘‘ଆଧୁନିକ ରୁଚିସମ୍ପନ୍ନ ଏଇ ଶିକ୍ଷିତ ଶ୍ରେଣୀ ପାଶ୍ଚାତ୍ୟ ସାହିତ୍ୟର ଆଦର୍ଶାନୁକରଣରେ ଯେଉଁ ନୂତନ ସାହିତ୍ୟ-ଭଣ୍ଡାର ସୃଷ୍ଟି କଲା ତାର ରସ-ବୈଚିତ୍ର୍ୟ ଅନୁଭବ କରିବା ସେଇପରି ଏକ ଶିକ୍ଷିତ ଶ୍ରେଣୀ ପକ୍ଷରେ ଏକମାତ୍ର ସମ୍ଭବପର । ଏ ଶ୍ରେଣୀର କ୍ରମ ଅଭ୍ୟୁଦୟ ପାଠଶାଳାଠାରୁ କଲେଜ ଶିକ୍ଷା ପର୍ଯ୍ୟନ୍ତ ପରିବ୍ୟାପ୍ତ । ପାଠଶାଳାର ନବୀକରଣ ହିଁ ପୁରାତନ ଚିତ୍ତବୃତ୍ତିର ପରିହାର ଓ ନୂତନ ଚିତ୍ତବୃତ୍ତିର ପ୍ରବର୍ତ୍ତନ ପାଇଁ ଉଦ୍ଦିଷ୍ଟ ଥିଲା । .....ଆଧୁନିକ ଶିକ୍ଷିତ ଶ୍ରେଣୀ ଏଇ ନୂତନ ରୁଚିବୋଧର ଏକ ବଳିଷ୍ଠ ପରିପ୍ରକାଶ । (ଓଡ଼ିଆ ସାହିତ୍ୟର ଇତିହାସ -ପୃ. ୯୪)

ଏଠାରେ ସୁଚନା ଦେବା ଉଚିତ ଯେ ‘ଓଡ଼ିଆ ସାହିତ୍ୟର ଇତିହାସ’ ଅନେକ ଆଧୁନିକ ପିଏଚ.ଡି ନିବନ୍ଧର ମୂଳସୂତ୍ର । ଯେଉଁମାନେ କବିତା, ନାଟକ ବା ରାଧାନାଥ, ମଧୁସୂଦନ, ଫକୀରମୋହନ, ନନ୍ଦକିଶୋର ପ୍ରଭୃତିଙ୍କ ସମ୍ପର୍କରେ ଗବେଷଣା କରନ୍ତି, ପ୍ରତ୍ୟେକ ନଟବର ସାମନ୍ତରାୟଙ୍କ ପ୍ରଜ୍ଞା ନିକଟରେ ନତମସ୍ତକ ହୋଇଥାଆନ୍ତି । ସାଧାରଣତଃ ପରୋକ୍ଷ ଉତ୍ସ (Secondary Source)କୁ ଉପଜୀବ୍ୟ କରି ପିଏଚ.ଡି ନିବନ୍ଧ ରଚନା କରାଯାଏ ନାହିଁ । ମାତ୍ର ଏହା ‘ଓଡ଼ିଆ ସାହିତ୍ୟର ଇତିହାସ’ ପାଇଁ ପ୍ରଯୁଜ୍ୟ ନୁହେଁ । କାରଣ କେବେ ବି ଉତ୍କଳ ଦୀପିକା, ଉତ୍କଳ ହିତୈଷିଣୀ, ଉତ୍କଳ ଦର୍ପଣ, ସମ୍ବାଦ ବାହିକା, ବିଭିନ୍ନ ଗେଜେଟ, ଉପନିଷଦ ସମୂହ, ବହୁ ଦୁଷ୍ପ୍ରାପ୍ୟ ନଥିପତ୍ର ନ ଦେଖିଥିବା ଗବେଷକ ନଟବର ସାମନ୍ତରାୟଙ୍କ ଓଡ଼ିଆ ସାହିତ୍ୟର ଇତିହାସରୁ ଦେଖି ସେଗୁଡ଼ିକ ଉଦ୍ଧାର କରିଦିଏ ଓ ତାହା ଭ୍ରମାତ୍ମକ ହୋଇପାରେ, ଏଭଳି ଧାରଣା ଗବେଷକ, ଦିଗ୍‌ଦର୍ଶକ ବା ପରୀକ୍ଷକ କାହାର ଆସେ ନାହିଁ । ଏତାଦୃଶ ପ୍ରାମାଣିକ ଗ୍ରନ୍ଥର ବିକଳ୍ପ ବର୍ତ୍ତମାନ ପର୍ଯ୍ୟନ୍ତ ସୃଷ୍ଟି ହୋଇନାହିଁ । ଏତେ

ବିରାଟ ଗ୍ରନ୍ଥରେ ମଧ୍ୟ କେଉଁଠି ସେ ପୁନରାବୃତ୍ତି କରିନାହାନ୍ତି । ଅପର ପକ୍ଷରେ ବହୁ ସିଦ୍ଧାନ୍ତକୁ ଗୋଟିଏ ଗୋଟିଏ ଶବ୍ଦରେ ବ୍ୟାଖ୍ୟା କରିଛନ୍ତି । ଉଦାହରଣ ସ୍ୱରୂପ ରାଧାନାଥଙ୍କ ସମ୍ପର୍କୀୟ ମତ-"ପ୍ରକୃତି ଚିତ୍ରଣ, ଅମିତ୍ରାକ୍ଷର ଛନ୍ଦ, ଇଂରାଜୀ ସାହିତ୍ୟରେ ଥିବା ବିଭିନ୍ନ ଭାବର ଅନୁବର୍ତ୍ତନ, ଜାତୀୟ ଭାବ, ସଂସ୍କାର ଭାବ ଇତ୍ୟାଦି ବିଭାଗ ମଧ୍ୟରୁ କେଉଁ ଗୋଟିକର ପ୍ରଥମ ପ୍ରବର୍ତ୍ତକ ସେ ନୁହନ୍ତି । କିନ୍ତୁ, କାବ୍ୟ-ଗଠନ-ପରିପାଟୀ ଭିତରେ ସେ ଏମାନଙ୍କୁ ଯେପରି ସଫଳତାର ସହିତ ବିନିଯୋଗ କରି ସେମାନଙ୍କୁ ବଳିଷ୍ଠ ରୂପ ଦେଇଛନ୍ତି ସେପରି ତାଙ୍କ ପୂର୍ବରୁ କେହି କରିପାରି ନଥିଲେ ।" (ଓଡ଼ିଆ ସାହିତ୍ୟର ଇତିହାସ, ପୃଷ୍ଠା -୫୬୧) ଏଭଳି ମତ ପୋଷଣ କରିବାର ସାମର୍ଥ୍ୟ ରଖୁଥିବା ସ୍ରଷ୍ଟା ଯେ ରାଧାନାଥଙ୍କ ପୂର୍ବର ସମସ୍ତ ସାହିତ୍ୟ ପାଠ କରିଛନ୍ତି, ଏହା ନିଃସନ୍ଦେହ । ଏପରିକି ଯୁଗୀୟ ସ୍ୱାତନ୍ତ୍ର୍ୟ ସମ୍ପର୍କରେ ମଧ୍ୟ ତାଙ୍କର ଧାରଣା ସ୍ପଷ୍ଟ ।

'ଲଳିତା' ଓ 'ନେତ୍ରମଣିର ଡାଏରୀ' ରଚନା ଦ୍ୱୟ ଓଡ଼ିଆ ସାହିତ୍ୟକୁ ପ୍ରାବନ୍ଧିକ ନଟବର ସାମନ୍ତରାୟଙ୍କର ଅନୁପମ ଅବଦାନ । ବୈଷ୍ଣବ ଧର୍ମ ଦର୍ଶନର ଶ୍ରୀରାଧାଙ୍କ ସଖୀ ଲଳିତାକୁ ସେ ନିଗୁଢ଼ ଆବେଗ ପ୍ରବଣା ନାରୀ ଭାବରେ ଚିତ୍ରଣ କରିଛନ୍ତି ଯାହା ମନସ୍ତତ୍ତ୍ୱ ସମର୍ଥିତ । ସେହିପରି 'ମାଟିର ମଣିଷ' ଭଳି କାଳଜୟୀ ଉପନ୍ୟାସର ଅନ୍ୟତମ ନାରୀ ଚରିତ୍ର ନେତ୍ରମଣିକୁ ସେ ବ୍ୟକ୍ତି ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠାର ଆଦ୍ୟସ୍ୱର ଭାବରେ ଉପସ୍ଥାପିତ କରିଛନ୍ତି । ଆତ୍ମକଥନ ଶୈଳୀରେ ରଚିତ ଏହି ରମ୍ୟ ରଚନା ଶ୍ରେଣୀର ସୃଷ୍ଟି ସ୍ରଷ୍ଟାଙ୍କର ଯୁକ୍ତିସମ୍ମତ ଓ ଭାବପ୍ରବଣତାର ସୁଷମ ସମନ୍ୱୟ ।

ପ୍ରାବନ୍ଧିକ ନଟବର ସାମନ୍ତରାୟଙ୍କର ଭାଷା ଶୈଳୀ ବେଶ୍ ସମୃଦ୍ଧ । ଏହା ସମାଲୋଚନାରେ ମଧ୍ୟ ସୁଖପାଠ୍ୟ ଓ ଅନେକତ୍ର ଆକର୍ଷଣୀୟ । ଓଡ଼ିଆ ସାହିତ୍ୟର ଇତିହାସରୁ କେତୋଟି ବାକ୍ୟ ଉଦ୍ଧାର କରିବାର ଆଗ୍ରହ ସମ୍ବରଣ କରିପାରୁ ନାହିଁ । "ପାଇକ ବିଦ୍ରୋହ ଜଗବନ୍ଧୁଙ୍କର ବିପ୍ଳବାତ୍ମକ ଚିତ୍ତବୃତ୍ତିର କେବଳ ଦ୍ୟୋତକ ନୁହେଁ, ଏହା ମଧ୍ୟ ତାଙ୍କର ସ୍ୱାର୍ଥ ପ୍ରସୂତ ଆତ୍ମ ଅସନ୍ତୋଷ ଓ ପ୍ରତିଶୋଧ ପ୍ରବୃତ୍ତିର ପରିଚାୟକ ନୁହେଁ; ଏହା ସମଗ୍ର ଜାତି ଉପରେ କରାଯାଉଥିବା ଅବିଚାର, ଅତ୍ୟାଚାର ଓ କୁଶାସନର ମୂର୍ତ୍ତ ପ୍ରତୀକ ମଧ୍ୟ ।" (ଓ.ସା.ଇ. ପୃ-୧୩) "ସ୍ରଷ୍ଟା, ସୃଷ୍ଟି ଓ ତା'ର ଗ୍ରହୀତା ସମସ୍ତେ ଏକ ସୂତ୍ରରେ ଗ୍ରଥିତ ।" (ଓ.ସା.ଇ. ପୃ-୯୪)"କଳାଗତ ସୌନ୍ଦର୍ଯ୍ୟ ପରିବେଷଣ ଯେଉଁ କବିତାର ମୌଳିକ ଲକ୍ଷ୍ୟ, ତା'ର ଭାଷା ସୌନ୍ଦର୍ଯ୍ୟ-ଶାଳିନୀ ହେବା ଏକାନ୍ତ ସ୍ୱାଭାବିକ ।" (ଓ.ସା.ଇ. ପୃ-୩୧୫) "ଇତିହାସ ଓ କଳ୍ପନାର ସମନ୍ୱୟରେ ଯେଉଁ ସୃଷ୍ଟି-ସୌଧର ବୈଚିତ୍ର୍ୟ ରୂପାୟିତ, ସେଇ ସୃଷ୍ଟି-ସୌଧର ଭିତ୍ତିଭୂମି-ଅନ୍ତଃସ୍ୱରର ଆରମ୍ଭ ଓ ପରିସମାପ୍ତି-ଅତୀବ ମୁଗ୍ଧକର ।" (ଓ.ସା.ଇ. ପୃ-୪୦୦) ଏହିଭଳି ଅସଂଖ୍ୟ କାବ୍ୟିକ ଭାଷାର ପ୍ରୟୋଗ ତାଙ୍କର ପ୍ରବନ୍ଧକୁ ବେଶ୍ ରୁଚିଶୀଳ ତଥା ସ୍ମରଣୀୟ କରିଛି । ଦିନ, ବାର, ତାରିଖର ଯଥାସମ୍ଭବ ଉପସ୍ଥାପନ, ଗଳ୍ପ, କବିତା ବା ପ୍ରବନ୍ଧ ପୁସ୍ତକର ମୁଦ୍ରଣ ତାରିଖଠାରୁ ତାହା ପ୍ରଥମେ ମୁଦ୍ରିତ ହୋଇଥିବା ପତ୍ରପତ୍ରିକା ବା ସମ୍ବାଦପତ୍ର ଉପରେ ଗୁରୁତ୍ୱ ଆରୋପ ଭଳି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପରବର୍ତ୍ତୀ କାଳର ପ୍ରତ୍ୟେକ ଆଲୋଚକଙ୍କୁ ଅନୁପ୍ରେରିତ କରିଛି ଓ ସାହିତ୍ୟରେ ସଠିକ କାଳନିର୍ଣ୍ଣୟ ପାଇଁ ସୁଯୋଗ ସୃଷ୍ଟି ହୋଇଛି ।

ଡଃ ସାମନ୍ତରାୟଙ୍କ ସମ୍ପର୍କରେ 'ପ୍ରବନ୍ଧ ସାହିତ୍ୟର ଇତିହାସ' ପୁସ୍ତକରେ ଡଃ ଅସିତ କବି କହନ୍ତି ''ଭାରତର ସ୍ୱାଧୀନତା ଘୋଷଣା (୧୯୪୭), ବିଶ୍ୱବିଦ୍ୟାଳୟ ସ୍ତରରେ ଉପାଧିଉତ୍ତର ଶ୍ରେଣୀରେ ଓଡ଼ିଆ ସାହିତ୍ୟ ଅଧ୍ୟୟନର ସ୍ୱୀକୃତି ପ୍ରଦାନ (୧୯୪୮), ବିଶେଷତଃ କଲେଜ ସ୍ତରରେ ବାଧ୍ୟତାମୂଳକ ଓଡ଼ିଆ ଅଧ୍ୟାପନାର ସୁବିଧା ସହିତ ଓଡ଼ିଆ ଅଧ୍ୟାପକଙ୍କ ନିଯୁକ୍ତି- ଏ ତିନୋଟି ଘଟଣା ହେତୁ ୧୯୫୦ ସାଲ ପରେ ଓଡ଼ିଆ ସମାଲୋଚନା ସାହିତ୍ୟ ଏକ ଅଭିନବ ଗତିରେ ବିକାଶ ଲାଭ କରିଅଛି । ସେଇ ସମୟରେ ପ୍ରଥମେ ଯେଉଁ କେତେଜଣ ଓଡ଼ିଆ ଅଧ୍ୟାପକ ନିଯୁକ୍ତି ପାଇଥିଲେ, ଅଧ୍ୟାପକ ସାମନ୍ତରାୟ ଥିଲେ ସେମାନଙ୍କ ଭିତରୁ ଅନ୍ୟତମ'' (ପ୍ରବନ୍ଧ ସାହିତ୍ୟର ଇତିହାସ - ପୃ. ୨୨୩) ସେ ସମୟରେ ଅଧିକାଂଶ ସାହିତ୍ୟ ଅଧ୍ୟାପକ ନିଜକୁ ସମାଲୋଚକ ଭାବେ ପ୍ରତିଷ୍ଠିତ କରିବାପାଇଁ ଯଥେଷ୍ଟ ଚେଷ୍ଟା କରିଥିଲେ । ଡଃ ସାମନ୍ତରାୟ କିନ୍ତୁ ଏକନିଷ୍ଠ ଭାବରେ ଗବେଷଣା ଓ ସମାଲୋଚନାରେ ନିଜକୁ ଆଜୀବନ ନିୟୋଜିତ କରିଛନ୍ତି । ତାଙ୍କ ଦ୍ୱାରା ପ୍ରତିଷ୍ଠିତ ନୂତନ ମତାମତ ଅନେକ ବିତର୍କର ସୂତ୍ରପାତ କରିଛି, ଯାହାକି ତାଙ୍କୁ ଅଧିକ ମନନଶୀଳ ଓ ସତ୍ୟାନ୍ୱେଷୀ ହେବାପାଇଁ ପ୍ରେରଣା ଦେଇଛି ।

ଆମେ ସମସ୍ତେ ଜାଣୁ ଯେ ପ୍ରବନ୍ଧ ରଚନା କଷ୍ଟସାଧ୍ୟ ବ୍ୟାପାର, ଏଥିରେ ଆଗ୍ରହ ସହିତ ମନନଶୀଳତା, ଗଭୀରତା ସହିତ ବହୁପାଠିତାର ସମନ୍ୱୟ ଦେଖାଯାଏ । ପ୍ରବନ୍ଧ ଆଧୁନିକ କାଳର ସଚେତନ ସ୍ରଷ୍ଟା ମାନସର ସାର୍ଥକ ପ୍ରତିନିଧି ଯାହା ସମୟର ସକଳ ସାମର୍ଥ୍ୟକୁ ଧରି ରଖିପାରେ । ଗଦ୍ୟ ଚିରକାଳ ସ୍ରଷ୍ଟା ମାନସର କଷଟି ପଥର । ସେହି ପଥରରେ କଷାଇ ହୋଇ ନଟବର ସାମନ୍ତରାୟ କାଳ ବକ୍ଷରେ ଚିର ଜାଜ୍ୱଲ୍ୟମାନ ରହିବେ ।

ପ୍ରାଥମିକ କାଳରେ ଯେଉଁମାନେ ସମାଲୋଚନାରେ ହାତ ଦେଇଛନ୍ତି ସେମାନେ ସାହିତ୍ୟର ବିଭିନ୍ନ ଦିଗକୁ ଆଗ୍ରହରେ ସ୍ପର୍ଶ କରିଛନ୍ତି । ନୂତନ ତଥ୍ୟ ଆବିଷ୍କାର ତଥା ପୁରାତନ ତଥ୍ୟର ପୁନର୍ମୂଲ୍ୟାୟନ ଏହି ସମୟରେ ହୋଇଛି । ଡଃ ସାମନ୍ତରାୟ ଓଡ଼ିଶାର ଧର୍ମୀୟ ସାହିତ୍ୟ, ପ୍ରାଚୀନ ସାହିତ୍ୟ ଓ ଅଧୁନିକ ସାହିତ୍ୟ ସମ୍ପର୍କରେ ବିଭିନ୍ନ ସମାଲୋଚନା କରିଛନ୍ତି । 'ସଖାହୀନ ପଞ୍ଚସଖା' ଭଳି ଫକୀର ମୋହନଙ୍କ ସମସ୍ତ ଗଦ୍ୟ ରଚନାକୁ ସମୟର ନିର୍ଦ୍ଦିଷ୍ଟ ପରିଧି ଭିତରେ ଅବସ୍ଥାପିତ କରି ସେ ସେଗୁଡ଼ିକର କଳାତ୍ମକ ଉତ୍କର୍ଷ ପ୍ରତିପାଦନ କରିଛନ୍ତି ।

ଆଜି ଓଡ଼ିଆ ସମାଲୋଚନା ସାହିତ୍ୟ ଅନେକ ପ୍ରତିଭାଧର ସମାଲୋଚକଙ୍କ ଆଲୋଚନାରେ ସମୃଦ୍ଧ । କିନ୍ତୁ ଏକଥା ବିନା ଦ୍ୱିଧାରେ ସ୍ୱୀକାର କରିବାକୁ ହେବ ଯେ ଆଧୁନିକ ଓଡ଼ିଆ ସାହିତ୍ୟରେ ବିଜ୍ଞାନଭିତ୍ତିକ ଆଲୋଚନା ତାଙ୍କଠାରୁ ହିଁ ଆରମ୍ଭ ହୋଇଛି । ପ୍ରାଚୀନ ସାହିତ୍ୟର ବିପୁଳ ସମ୍ଭାରକୁ ସେ ଯଥେଷ୍ଟ ଗୁରୁତ୍ୱ ଦେଇଛନ୍ତି । ଏଥି ସହିତ ପାଶ୍ଚାତ୍ୟ କାବ୍ୟ ସମ୍ପର୍କରେ ମଧ୍ୟ ତାଙ୍କର ଯଥେଷ୍ଟ ଅବଗାହନ ରହିଛି । ସୃଷ୍ଟିଶୀଳ ସାହିତ୍ୟ ରଚନା କରିଥିଲେ ହୁଏତ ଡଃ ସାମନ୍ତରାୟ ନିଜପାଇଁ ଅନେକ କୃତିତ୍ୱ ଅର୍ଜନ କରିପାରି ଥାଆନ୍ତେ, ମାତ୍ର ଅନେକ ସ୍ରଷ୍ଟାଙ୍କର ସୃଷ୍ଟି ସମୂହର ଆକଳନ କରି ସେ ସାହିତ୍ୟ ପାଇଁ ପଥ ପରିଷ୍କାର କରି ତହିଁରେ ଫୁଲ ଚନ୍ଦନ ବିଞ୍ଚି ଦେଇଛନ୍ତି ।

ଆଜି ସାହିତ୍ୟିକଟିଏ ପାଇଁ ଅନେକ ପ୍ରଲୋଭନ । ପଦେ ପଦେ ପଥଚ୍ୟୁତ ହେବାର

ସମ୍ଭାବନା । ମାତ୍ର ଆମ ସମୟରେ ବଞ୍ଚିଥିବା ଏକ ମହାନ ସ୍ରଷ୍ଟା ଯେ ଏ ସବୁଠାରୁ ଯଥେଷ୍ଟ ଦୂରତ୍ୱ ରକ୍ଷା କରି ଗବେଷକର ନିରବଚ୍ଛିନ୍ନ ସାଧନା କରି ଚାଲିଥିଲେ, ଭାବିଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ । ତାଙ୍କୁ ବହୁ ଅନୁଷ୍ଠାନ ସମ୍ମାନିତ କରି ନିଜେ ସମ୍ମାନିତ ହୋଇଛନ୍ତି, କିନ୍ତୁ ତାହା ତାଙ୍କ ପ୍ରତିଭାର ଯଥାର୍ଥ ମୂଲ୍ୟାୟନ ନୁହେଁ । ପ୍ରତ୍ୟେକ ଓଡ଼ିଆ ଅଧ୍ୟାପକର ପଢ଼ା ଟେବୁଲରେ ନିହାତି ଖଣ୍ଡିଏ 'ଓଡ଼ିଆ ସାହିତ୍ୟର ଇତିହାସ', ପ୍ରତ୍ୟେକ ଗବେଷକ ନିକଟରେ 'ମୁଁ କେମିତି ଗବେଷଣା କଲି' ଓ ପ୍ରତ୍ୟେକ ଓଡ଼ିଆ ଛାତ୍ରଛାତ୍ରୀଙ୍କ ନିକଟରେ ରାଧାନାଥ, ଫକୀରମୋହନ, ଗଙ୍ଗାଧର ଓ ବଡ଼ଜେନାଙ୍କ ସାହିତ୍ୟ ସମୀକ୍ଷା ଗ୍ରନ୍ଥଟିଏ ଯେଉଁଦିନ ଗୁରୁତ୍ୱର ସହିତ ସ୍ଥାନିତ ହେବ, ସେହିଦିନ ଡଃ ସାମନ୍ତରାୟଙ୍କ ପ୍ରତିଭାର ଯଥାର୍ଥ ସମ୍ମାନ କରାଯାଇ ପାରିବ, କିନ୍ତୁ ସେ ଦିନ ଆସିବ କେବେ ?

*ପ୍ରଫେସର, ଓଡ଼ିଆ ବିଭାଗ*
*ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର*
*ଭୁବନେଶ୍ୱର*

## ନଟବର ବାଣୀ

ଗିରିନିର୍ଝର ଝର୍ଝର ନାଦରେ ଅବତରଣ କରେ ଶୃଙ୍ଗରୁ ପାଦଦେଶକୁ ବହୁ ଶିଳାଘାତ ଅତିକ୍ରମ କରି । ତା'ର ଶରୀରର ପରିବର୍ତ୍ତନ ଘଟେ ସମତଳ ପ୍ରଦେଶରେ ଗତି କଲାବେଳେ । ନିର୍ଝର ହୁଏ ସ୍ରୋତସ୍ୱିନୀ, ତୀର ତା'ର ମୁଖରିତ ଅପୂର୍ବ କଳକଳ ନିନାଦ ଦ୍ୱାରା । ନିକଟସ୍ଥ ଜଳ ସ୍ରୋତସ୍ୱିନୀର ବିପୁଳ ଅଙ୍ଗରେ ନିଜର ସତ୍ତା ହରାଇ ବସେ, ବ୍ୟକ୍ତିତ୍ୱ ପ୍ରକାଶ କରିବାର ଗର୍ବ ତାର ଆଦୌ ନଥାଏ ।

କବିର କୃତି- ଠିକ୍ ଏହିପରି । ବହୁ ଶାସ୍ତ୍ରଦର୍ଶିତା ଯୋଗୁଁ କବିର କୃତିରେ ବହୁ କବିଙ୍କ ପ୍ରଭାବର ନିଦର୍ଶନ ମିଳିଥାଏ । କିନ୍ତୁ କବିର ବିରାଟ ବ୍ୟକ୍ତିତ୍ୱ ନିକଟରେ ସେଗୁଡ଼ିକ ହୁଅନ୍ତି ତାଙ୍କ କୃତିରେ ଗର୍ଭୀଭୂତ, ସ୍ୱତନ୍ତ୍ର ସତ୍ତା ନଥାଏ ତାଙ୍କର । ଏଠି କବିକୃତିରେ ପରସ୍ୱଗୁଡ଼ିକ ପାନ୍ତି ପୁନର୍ଜନ୍ମ ।

*ଓଡ଼ିଆ ବୈଷ୍ଣବ ସାହିତ୍ୟ (୧୯୫୯) ପୃ.୨୮*

ଉତ୍କୃଷ୍ଟ କାବ୍ୟର ଉତ୍କୃଷ୍ଟତା ତା'ର ବିଷୟବସ୍ତୁ ନିର୍ବାଚନ ଓ ସୃଷ୍ଟି-ପରିକଳ୍ପନାଠାରେ କେବଳ ସୀମିତ ନୁହେଁ । ବଳିଷ୍ଠ ରୂପାୟନ କୌଶଳରେ ସେଇ ସୃଷ୍ଟି- ପରିକଳ୍ପନା ସାର୍ଥକ ରୂପ ସମ୍ପଦରେ ଉପାଣିତ ହେବା ଉଚିତ ।

*ଓଡ଼ିଆ ସାହିତ୍ୟର ଇତିହାସ (୧୯୬୪) ପୃ.୨୯୨*

# ଡଃ ସାମନ୍ତରାୟଙ୍କର ସାରସ୍ୱତ ସାଧନାରେ ସଂସ୍କୃତ ପ୍ରଜ୍ଞା ଓ ତା'ର ପ୍ରଭାବ

*ଡଃ ହରେକୃଷ୍ଣ ଶତପଥୀ*

ବର୍ତ୍ତମାନ ଭାରତବର୍ଷରେ କାହିଁକି, ସମଗ୍ର ବିଶ୍ୱରେ ମଧ୍ୟ ଯେ କୌଣସି ଭାଷାରେ ଯାହା କିଛି ସାହିତ୍ୟ ସୃଷ୍ଟି ହେଉଛି ବା ଏହା ପୂର୍ବରୁ ହୋଇଛି ସେ ସମସ୍ତ ସୃଷ୍ଟିର ଅନ୍ତରାଳରେ କିଛି ନା କିଛି ସାମଞ୍ଜସ୍ୟ ଅବଶ୍ୟ ପରିଲକ୍ଷିତ ହୋଇଥାଏ । ସେଥିପାଇଁ ସମାଲୋଚନା ସାହିତ୍ୟର ତୁଳନାତ୍ମକ ଦିଗଟି ବିଶ୍ୱର ସାହିତ୍ୟିକମାନଙ୍କ ନିକଟରେ ବେଶ୍ ଆଦୃତ ଓ ପ୍ରଶଂସିତ ହୋଇଥାଏ । ଏହାର ଅର୍ଥ ନୁହେଁ ଯେ ଜଣେ ସାହିତ୍ୟିକ ବା ସମାଲୋଚକ ଅନ୍ୟାନ୍ୟ ଭାଷାରେ ରଚିତ ସାହିତ୍ୟ ଓ ସମାଲୋଚନାକୁ ଅଧ୍ୟୟନ କରି ସାରିବା ପରେ ନିଜ ଭାଷାରେ ସାହିତ୍ୟ ବା ସମାଲୋଚନାର ସର୍ଜନା କରିଥାଏ । ଏଭଳି ହେଲେ ପରବର୍ତ୍ତୀ କାଳରେ ସୃଷ୍ଟି ହେଉଥିବା ବିଶାଳ ସାରସ୍ୱତ ଭଣ୍ଡାରର ମୌଳିକତା କ୍ଷୁର୍ଣ୍ଣ ହେବାର ଆଶଙ୍କା ଥାଏ ।

ତଥାପି ପୁରାତନ ସୃଷ୍ଟି ଓ ସ୍ରଷ୍ଟା ଉଭୟ ଆଧୁନିକ ବା ସାମ୍ପ୍ରତିକ ସମୟରେ ସାରସ୍ୱତ ସ୍ଥପତିମାନଙ୍କୁ ଅନେକ ପରିମାଣରେ ଉତ୍ସାହ ଓ ପ୍ରେରଣା ଯୋଗାଇବା ସଙ୍ଗେ ସଙ୍ଗେ ପ୍ରଚଳିତ ପାରମ୍ପରିକୀ ଧାରାର ଉଭୟ ପାର୍ଶ୍ୱ ବିଷୟରେ ସମ୍ୟକ୍ ଧାରଣା ଦେଇଥାଏ; ଯାହାକି ସାମ୍ପ୍ରତିକ ସ୍ରଷ୍ଟାର ଅନୁଭୂତିକୁ ସୁଦୃଢ଼, ସୁସଂଗଠିତ ଏବଂ ପରିବୃଂହିତ କରିଥାଏ । ବିଶ୍ୱର ଏହି ସାହିତ୍ୟ ବାଙ୍ମୟ ପ୍ରତି ଧ୍ୟାନଦେଲେ ଜଣାଯାଏ ଯେ ମାନବ ସଭ୍ୟତାର ଉଷା କାଳରୁ ହିଁ ଯେଉଁ ସୃଷ୍ଟିର ଅପ୍ରତିମ ଅରୁଣିମା ଏ ବିଶାଳ ଜାତିର ଉଭୟ ମାନସିକ ଓ ଶାରୀରିକ ପ୍ରକ୍ରିୟାକୁ ଚେତନା ଚର୍ଚ୍ଚିତ ଓ ପ୍ରଜ୍ଞାଦୀପ୍ତ କରି ପାରିଥିଲା ତାହା ହେଉଛି ଆଜକୁ ପ୍ରାୟ ପାଞ୍ଚ ହଜାର ବର୍ଷ ତଳର ରଚନା - ସଂସ୍କୃତ ବାଙ୍ମୟର ବୈଦିକ ବିଭବ । ସେହି ଦିନଠାରୁ ଯୁଗ ଯୁଗ ଧରି ବିଶ୍ୱର ସର୍ବ ପ୍ରାଚୀନ ସାହିତ୍ୟର ଏହି ଅବିଶ୍ରାନ୍ତ ଓ ଅପରିଚ୍ଛିନ୍ନ ସଂସ୍କୃତ ମନ୍ଦାକିନୀର ଧାରା ପ୍ରାୟ ପ୍ରତ୍ୟେକ ସାହିତ୍ୟର ଅନ୍ତଃସ୍ରୋତକୁ ସ୍ପର୍ଶ କରିଛି - ଏହା କହିବା ବାହୁଲ୍ୟ ମାତ୍ର ।

ପ୍ରତିଟି ସାହିତ୍ୟର ସମସ୍ତ ମୌଳିକତାକୁ ଯଥୋଚିତ ସମ୍ମାନ ପ୍ରଦର୍ଶନ ପୂର୍ବକ ଏହା ମଧ୍ୟ କୁହାଯାଇ ପାରେ ଯେ ବିଶେଷ କରି ଭାରତବର୍ଷର ବା ଭାରତୀୟ ଭାଷାରେ ରଚିତ ଯେଉଁ ସାହିତ୍ୟର ଅନ୍ତଃସ୍ୱର ଏହି ସୁରଭାରତୀ ମନ୍ଦାକିନୀର ଅସ୍ଖଳିତ ପ୍ରବାହର ପ୍ରଭାବରୁ ଯେ କୌଣସି କାରଣରୁ ହେଉନା କାହିଁକି ଦୂରେଇ ଯାଇଛି - ସେ ସାହିତ୍ୟ ମଧ୍ୟ ପୂର୍ଣ୍ଣତା ଠାରୁ ଦୂରରେ ରହିଯାଇଛି । ବିଶେଷ କରି ଓଡ଼ିଆ ସାହିତ୍ୟର ଉଦାହରଣ ନିଆଯାଇପାରେ ।

ଉଭୟ ସଂସ୍କୃତ ଭାଷା ଏବଂ ଏଥିରେ ରଚିତ ବେଦ, ବେଦାନ୍ତ, ଉପନିଷଦ୍, ରାମାୟଣ, ମହାଭାରତ, କାବ୍ୟ- ଇତ୍ୟାଦି ବିଶାଳ ସାହିତ୍ୟ ସହିତ ଓଡ଼ିଆ ଭାଷା ଓ ସେଥିରେ ରଚିତ ବିଶାଳ ବାଙ୍‌ମୟର ଯଥେଷ୍ଟ ସମ୍ପର୍କ ରହିଛି—ଏହା କହିବା ନିଷ୍ପ୍ରୟୋଜନ । ବିଶେଷ କରି ଓଡ଼ିଆ ଭାଷାରେ ପ୍ରବନ୍ଧ ଓ ସମାଲୋଚନା ସାହିତ୍ୟ ସୃଷ୍ଟି ସମୟରେ ବିଶ୍ୱର ସର୍ବ ପୁରାତନ ସଂସ୍କୃତ ସାହିତ୍ୟ ବିଷୟରେ ସାମାନ୍ୟ ଭାବରେ ହେଉନା କାହିଁକି - ଅବଗତ ହେବା ଏକାନ୍ତ ବାଞ୍ଛନୀୟ । ନହେଲେ ଯେ ଓଡ଼ିଆରେ ସୃଷ୍ଟି ଅସମ୍ଭବ ହୋଇଯିବ- ଏକଥା ସର୍ବାଦୌ ଅଗ୍ରହଣୀୟ । ତଥାପି ସେ ସାହିତ୍ୟର ଅନ୍ତଃସ୍ରୋତ ପୂର୍ଣ୍ଣତା ଠାରୁ ଦୂରେଇ ଯିବ- ଏହା ନିଃସନ୍ଦେହରେ କୁହାଯାଇ ପାରେ । ପ୍ରଜ୍ଞାଦୀପ୍ତ ପ୍ରାବନ୍ଧିକ ଡଃ ନଟବର ସାମନ୍ତରାୟ ଓଡ଼ିଆ ସାହିତ୍ୟର ଜଣେ ଶାଶ୍ୱତ ଓ ସ୍ମରଣୀୟ ଶିଳ୍ପୀ । ତାଙ୍କ ନୀରବଚ୍ଛିନ୍ନ ସାରସ୍ୱତ ସାଧନାର ଅନ୍ତଃସ୍ରୋତ କେବେହେଲେ ପୂର୍ଣ୍ଣତାଠାରୁ ଦୂରେଇ ଯାଇନାହିଁ ବା ଯିବାପାଇଁ ମଧ୍ୟ ଚେଷ୍ଟା କରିନାହିଁ । ତା'ର ଅନେକ କାରଣ ଥାଇପାରେ କିନ୍ତୁ ଅନ୍ୟତମ ପ୍ରମୁଖ କାରଣ ହେଉଛି - ଡଃ ସାମନ୍ତରାୟଙ୍କର ସଂସ୍କୃତ ଜ୍ଞାନ ଏବଂ ତାଙ୍କର ସଂସ୍କୃତର ପାରମ୍ପରିକୀ ଧାରା ପ୍ରତି ରହିଥିବା ଅଗାଧ ଶ୍ରଦ୍ଧା ଓ ଦୃଢ଼ ଭକ୍ତି । ଏହା ହିଁ ତାଙ୍କୁ ବିଂଶ ଶତାବ୍ଦୀର ବିଜ୍ଞାନର ଜୟଯାତ୍ରାର ଆଲୁଆଳରେ ବି ପ୍ରାଚୀନ ଓଡ଼ିଆ ସାହିତ୍ୟକୁ ଆଧାର କରି ମାନବ ଜାତିକୁ ମାର୍ଗଦର୍ଶନ କରିବା ନିମନ୍ତେ ଏକ ମୂଲ୍ୟବୋଧ ଭିତ୍ତିକ, ଧର୍ମଚେତନାଦୀପ୍ତ ଆଧ୍ୟାତ୍ମିକ ପ୍ରବନ୍ଧ ସାହିତ୍ୟର ଧାରା ପ୍ରବାହ ସୃଷ୍ଟି କରିବା ପାଇଁ ପ୍ରେରଣା ଯୋଗାଇ ପାରିଛି ।

ପ୍ରାବନ୍ଧିକ ଡଃ ସାମନ୍ତରାୟ ଓଡ଼ିଆ ସାହିତ୍ୟ ଓ ସମାଜର ଯେ କୌଣସି ବିଭବ ବା ସମସ୍ୟାର ଆଲୋଚନା କରୁଥିବା ସମୟରେ ସେ ସମ୍ପର୍କରେ ସଂସ୍କୃତ ଶାସ୍ତ୍ରରେ ଲିଖିତ ମତବାଦକୁ ଅନେକ ସମୟରେ ଆଧାର କରି ନିଜର ସମୀକ୍ଷା ଆରମ୍ଭ କରିଥାନ୍ତି । ଏ ପ୍ରସଙ୍ଗରେ ଅନେକ ଦୃଷ୍ଟାନ୍ତ ରହିଛି । ଅନେକ ଗ୍ରନ୍ଥ ସେ ରଚନା କରିଛନ୍ତି; ଯେଉଁଥିରୁ ମଧ୍ୟ ଏ ବିଷୟରେ ଯଥେଷ୍ଟ ପ୍ରମାଣ ମିଳିଥାଏ । ତେବେ ଏ ପ୍ରସଙ୍ଗରେ ଏକ ନିର୍ଦ୍ଦିଷ୍ଟ ଉଦାହରଣ ଦିଆଯାଇ ପାରେ । ଆଜକୁ ପ୍ରାୟ ୬/୭ ବର୍ଷ ତଳର କଥା । ପୁରୀ ଧାମର ପୂର୍ବାମ୍ନାୟ ଗୋବର୍ଦ୍ଧନ ପୀଠର ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ଶ୍ରୀ ଶ୍ରୀ ନିରଞ୍ଜନ ତୀର୍ଥସ୍ୱାମୀ ଏକ ବିବାଦର ସୂତ୍ରପାତ କଲେ । ଅବଶ୍ୟ ଏକ ଶାସ୍ତ୍ରୀୟ ପରମ୍ପରାକୁ ଆଧାର କରି ଜଗଦ୍‌ଗୁରୁ କହିଲେ ଯେ ସ୍ତ୍ରୀମାନଙ୍କର ବେଦ ପାଠରେ ଅଧିକାର ନାହିଁ । (୧) ସେମାନଙ୍କୁ ବେଦ ଉଚ୍ଚାରଣ କରିବାକୁ ମନା । ଏ ବିଷୟରେ ବିଶିଷ୍ଟ ବେଦ ଭାଷ୍ୟକାର ଆଚାର୍ଯ୍ୟ ସାୟଣ ମଧ୍ୟ ଋକ୍‌ବେଦ ଭାଷ୍ୟ ଭୂମିକାରେ କହନ୍ତି ଯେ ସ୍ତ୍ରୀ ଏବଂ ଶୂଦ୍ରର ବେଦାଧ୍ୟୟନରେ ଅଧିକାର ନାହିଁ । ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟଙ୍କର ଏହି ଏକ ପ୍ରକାର ଶାସ୍ତ୍ରୀୟ ମତାମତକୁ ନେଇ ଓଡ଼ିଶାର ସର୍ବତ୍ର ବିତର୍କର ଝଡ଼ ସୃଷ୍ଟି ହେଲା । ଏକବିଂଶ ଶତାବ୍ଦୀର ଅୟମାରମ୍ଭରୁ ଏଭଳି ଏକ ନାରୀ ବିରୋଧୀ ବାତାବରଣକୁ ସ୍ୱାଧୀନ ସମାଜ ସହ୍ୟ କରନ୍ତା ବା କିପରି ? ଯେତେବେଳେ ନାରୀ ସମାଜର ମୁକ୍ତି ପାଇଁ ସମଗ୍ର ବିଶ୍ୱ ସଂଗ୍ରାମରତ ଏବଂ ଏହି ସଂଗ୍ରାମର ସଫଳତା ଅନେକ ପରିମାଣରେ ଉପଲବ୍ଧ ହୋଇ ସାରିଲାଣି; ସେତେବେଳେ ବସ୍ତୁତଃ ଜଗଦ୍‌ଗୁରୁଙ୍କର ବକ୍ତବ୍ୟର କୌଣସି ପ୍ରାସଙ୍ଗିକତା ନଥିଲା ବୋଲି ଅନେକ ହୃଦୟଙ୍ଗମ କରିଥିଲେ । ଏହି ସାମୂହିକ ଚିନ୍ତନକୁ ଡଃ ନଟବର ସାମନ୍ତରାୟ ଖୁବ୍ ସୁନ୍ଦର ଭାବରେ ଦୈନିକ 'ସମାଜ'ରେ ବିଶ୍ୱକବି କାଳିଦାସଙ୍କର 'କୁମାର ସମ୍ଭବ'ର ପଞ୍ଚମ ସର୍ଗରୁ ଏକ ପଦ୍ୟକୁ ଉଦ୍ଧାର କରି

ବ୍ୟକ୍ତ କରିଥିଲେ । ସେ ଉପସ୍ଥାପନ କରିଥିଲେ ଯେ ଭାରତର ପ୍ରାଚୀନ କାଳରେ ସ୍ତ୍ରୀମାନେ ବେଦ ଅଧ୍ୟୟନ କରୁଥିଲେ । 'ବେଦ'ରେ ବର୍ଣ୍ଣିତ 'ବ୍ରହ୍ମବାଦିନୀ'ଙ୍କ କଥା ସେ ଉଲ୍ଲେଖ କରିଥିଲେ । ବିଶ୍ୱକବି କାଳିଦାସଙ୍କର ଯେଉଁ ଶ୍ଳୋକଟିକୁ ସେ ନାରୀମାନଙ୍କ ବେଦପାଠ ସପକ୍ଷରେ ଉଦ୍ଧାର କରିଥିଲେ ତାହା ହେଲା-

କୃତାଭିଷେକାଂ ହୁତଜାତବେଦସଂ
ତ୍ୱଗୁତ୍ତରସଙ୍ଗବତୀମଧୀତିନୀମ୍ ।
ଦିଦୃକ୍ଷବସ୍ତାମୃଷୟୋଽଭ୍ୟୁପାରମତ୍
ନ ଧର୍ମବୃଦ୍ଧେଷୁ ବୟଃ ସମୀକ୍ଷ୍ୟତେ ।

(କୁମାର ସମ୍ଭବମ୍-୫ମ ସର୍ଗ-୧୬ ଶ୍ଳୋକ)

ଅର୍ଥାତ ପାର୍ବତୀ ତପସ୍ୟା କରିବା ସମୟରେ ସ୍ନାନାନ୍ତେ ଅଗ୍ନିରେ ଆହୁତି ଦେଉଥିଲେ; ବଲ୍କଳ ପରିଧାନ କରୁଥିଲେ ଏବଂ ନିତ୍ୟ ବେଦାଦି ସ୍ତୁତିପାଠ ମଧ କରୁଥିଲେ । ଏହିଭଳି କଠୋର ବ୍ରତ ଆଚରଣ କରୁଥିବା ପାର୍ବତୀଙ୍କୁ ଦେଖିବା ପାଇଁ ଋଷିମାନେ ମଧ ଆଶ୍ରମରେ ପହଞ୍ଚିଥିଲେ । କାରଣ ଧର୍ମ ଆଚରଣରେ ଯେଉଁମାନେ ବର୍ଷୀୟାନ୍; ସେମାନେ ହିଁ ବାସ୍ତବରେ ବର୍ଷୀୟାନ୍ । ଏହାଦ୍ୱାରା ଡଃ ସାମନ୍ତରାୟ ପ୍ରତିପାଦନ କରି ପାରିଥିଲେ ଯେ ଏହି ପୂଣ୍ୟ ଭାରତବର୍ଷର ନାରୀମାନେ ବେଦପାଠ କରିବାରେ ଏକଦା ବିଚକ୍ଷଣା ଥିଲେ । ତେଣୁ ପରମ୍ପରାକୁ ସମ୍ମାନ ପ୍ରଦର୍ଶନ କରି ସାମ୍ପ୍ରତିକ ଯୁଗରେ ମଧ ନାରୀମାନଙ୍କୁ ଏହି ଅଧିକାର ଦେବା ଯୁକ୍ତିସଙ୍ଗତ ଓ ଶାସ୍ତ୍ରସମ୍ମତ ହେବ ।

ଏହିଭଳି ସେ ଅନ୍ୟ କେତକ ଯୁକ୍ତି ମଧ ଉପସ୍ଥାପନ କରି ଏକ ସାମାଜିକ ସମସ୍ୟାକୁ ସମାଧାନ୍ କରିବା ଦିଗରେ ସଂସ୍କୃତ କିଭଳି ସହାୟକ ତାହା ପ୍ରତିପାଦନ କରି ପାରିଥିଲେ । ଏହା ହେଉଛି ତାଙ୍କର ରଚନା ଓ ସମାଲୋଚନାର ବିଶେଷତ୍ୱ ।

ଡଃ ସାମନ୍ତରାୟ ଅନେକ ଗ୍ରନ୍ଥ ରଚନା କରି ଶାଶ୍ୱତ ଯଶର ଅଧିକାରୀ ହୋଇଛନ୍ତି । ବିଶେଷ କରି ପ୍ରାଚୀନ ସାହିତ୍ୟ ଏବଂ ଧର୍ମମୂଳକ ଆଧାତ୍ମିକ ସାହିତ୍ୟ ସୃଷ୍ଟିରେ ତାଙ୍କର ପାରଦର୍ଶିତା ଓ ବିଚକ୍ଷଣତା ସର୍ବବିଦିତ । ସଂସ୍କୃତରେ ରଚିତ ଅଳଙ୍କାର ଶାସ୍ତ୍ରରେ ବର୍ଣ୍ଣିତ ସମୀକ୍ଷା ଓ ସମାଲୋଚନା ଶୈଳୀର ମର୍ମକୁ ହୃଦୟଙ୍ଗମ ନକରି ଓଡ଼ିଆ ସାହିତ୍ୟର ପୂର୍ଣ୍ଣାଙ୍ଗ ଅନୁଶୀଳନ କରିବା ସମ୍ଭବ ନୁହେଁ । ତେଣୁ ଡଃ ସାମନ୍ତରାୟଙ୍କର ଗଭୀର ସଂସ୍କୃତ ଜ୍ଞାନ ହିଁ ତାଙ୍କୁ ଏକ ବିକଳ୍ପବିହୀନ ଗଦ୍ୟ ଓ ସମାଲୋଚନା ସାହିତ୍ୟ ସୃଷ୍ଟି କରିବାପାଇଁ ଉପଯୁକ୍ତ ପ୍ରେରଣା ଯୋଗାଇଛି - ଏଥିରେ ସନ୍ଦେହର ଅବକାଶ ନାହିଁ ।

ପାଦଟୀକା

*(୧) ତଦୁଭୟଜ୍ଞାନାର୍ଥୀ ବେଦେଽଧିକାରୀ । ସ ଚ ତ୍ରୈବର୍ଣ୍ଣିକଃ ପୁରୁଷଃ । ସ୍ତ୍ରୀଶୂଦ୍ରୟୋସ୍ତୁ ସତ୍ୟାମପି ଜ୍ଞାନାପେକ୍ଷାୟାମୁପନୟନାଭାବେନ ଅଧ୍ୟୟନଗ୍ରହିତ୍ୟାତ୍ ବେଦେଽଧିକାରଃ ପ୍ରତିବଦ୍ଧଃ । ଧର୍ମବ୍ରହ୍ମଜ୍ଞାନଂତୁ ପୁରାଣାଦିମୁଖେନୋତ୍ପଦ୍ୟତେ ।(ଋଗ୍‌ବେଦ ଭାଷ୍ୟଭୂମିକା-ପୃ୯୭ ପ୍ରକାଶକ, ମୋତିଲାଲ୍ ବନାରସୀ ଦାସ -୧୯୯୦)*

*ପ୍ରଫେସର ଓ ସାହିତ୍ୟ ବିଭାଗ ମୁଖ୍ୟ ତଥା ପୂର୍ବତନ କୁଳପତି,*
*ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ, ପୁରୀ*

# ନଟବର ବାଣୀ

ଯେଉଁ ଦେଶରେ ଏକ ଧାରାବାହିକ ଇତିହାସ ଲେଖାଯାଏ ନାହିଁ, କି ଏପରି ଇତିହାସ ନିର୍ମାଣ ପାଇଁ ଯେଉଁ ଆବଶ୍ୟକୀୟ ଉପାଦାନ ସର୍ବାଦୌ ପ୍ରୟୋଜନ ତା'ର ସଂରକ୍ଷଣ ଦିଗରେ କୌଣସି ଉଦ୍ୟମ ହୁଏ ନାହିଁ, ସେ ଦେଶରେ 'ଫିକ୍‌ସନ'ବା କାଳ୍ପନିକ କାହାଣୀ, ଜନଶ୍ରୁତି, ଲୋକବିଶ୍ୱାସ ଅଥବା ପରମ୍ପରା ହୋଇଥାଏ ଏକ ମାତ୍ର ଇତିହାସ । ଯେତେବେଳେ ଇତିହାସ ଲେଖାର ଶ୍ରୀଗଣେଶ ହୁଏ, ସେତେବେଳେ ପ୍ରଥମ ଐତିହାସିକମାନେ ଯଥାର୍ଥ ଉପାଦାନର ଅଭାବରୁ ଏଇ 'ଫିକ୍‌ସନ' ବା କାଳ୍ପନିକ କାହାଣୀକୁ ନେଇ ଇତିହାସ ଲେଖିବାକୁ ବାଧ ହୋଇଥା'ନ୍ତି ।

*ଓଡ଼ିଆ ସାହିତ୍ୟରେ ସ୍ୱର ପରିବର୍ତ୍ତନ (୧୯୭୬) ପୃ. ୧୩*

ଗୋଟିଏ ଗୋଟିଏ ବିଶେଷ ପରିସ୍ଥିତି ବା ପରିବେଶ ଭିତରୁ କାହାଣୀ ବା ଜନଶ୍ରୁତିର ପ୍ରଥମ ଆବିର୍ଭାବ ହୁଏ । ଥରେ ଏହା ଲୋକଚିତ୍ତରେ ସ୍ୱୀକୃତି ପାଇଗଲେ ପରବର୍ତ୍ତୀ ସମୟରେ ଅନ୍ୟମାନେ ତାକୁ ସତ୍ୟ ବୋଲି ଗ୍ରହଣ କରିଥାନ୍ତି । ଦରକାରବେଳେ ଏଇ ଭ୍ରାନ୍ତ ପରମ୍ପରାକୁ ଯୁକ୍ତିର ଏକମାତ୍ର ଅମୋଘ ଅସ୍ତ୍ରରୂପେ ମଧ୍ୟ ସେମାନେ ବ୍ୟବହାର କରନ୍ତି । ଦେଖିବାର କଥା, ଏପରି ଭ୍ରାନ୍ତି ଅତି ଅଜ୍ଞାତସାରରେ ହୋଇଥାଏ; କିନ୍ତୁ ବହୁ ଭ୍ରାନ୍ତିର ପଶ୍ଚାତରେ ଥାଏ ଗୋଟିଏ ଗୋଟିଏ ନିଶ୍ଚିତ 'ମତଲବ' । ଏଇପରି ସଜ୍ଞାନ - ପ୍ରସୂତ 'ମତଲବ' ଦିନେ ଯେଉଁ 'ମିଥ୍ୟା' ସୃଷ୍ଟି କରେ, ପରବର୍ତ୍ତୀ ସମୟରେ ତାହା ଏକାନ୍ତ ସତ୍ୟରୂପେ ସମ୍ମାନିତ ହୋଇଥାଏ ।

*ଓଡ଼ିଆ ସାହିତ୍ୟରେ ସ୍ୱର ପରିବର୍ତ୍ତନ (୧୯୭୬) ନିଜକଥା ପୃ. ୧୪*

ଗବେଷଣା ହିଁ ସମାଲୋଚନା ଜନ୍ମର ଆଦି କାରଣ । ଅତୀତ ସମ୍ପଦର ବହୁ ରତ୍ନ ମଧ୍ୟରୁ ଗବେଷଣା ଯାହା ଆବିଷ୍କାର କରେ, ଯେଉଁ ନୂତନ ତଥ୍ୟ ଲୋକଲୋଚନ ସମ୍ମୁଖରେ ଉପସ୍ଥାପନ କରେ, ଅଧ୍ୟୟନରେ ନୂତନତା ସମ୍ପାଦନ ପାଇଁ ଯେଉଁ ନୂତନ ଉପାଦାନମାନ ସଂଗ୍ରହ କରେ, ଅତୀତର ସେଇ ଆବିଷ୍କୃତ ସମ୍ପଦ ସେଇ ନୂତନ ତଥ୍ୟ, ସେଇ ନୂତନ ଉପାଦାନ ବଳରେ ସମାଲୋଚକ ସୃଷ୍ଟିର ଅନ୍ତଃସୌନ୍ଦର୍ଯ୍ୟକୁ ନୂତନ ଦୃଷ୍ଟିକୋଣରୁ ନିରୀକ୍ଷଣ କରି ନୂତନ ଭାବେ ପରିବେଷଣ କରିଥାଏ ।

*ଓଡ଼ିଆ ସାହିତ୍ୟକୁ ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ଦାନ (୧୯୭୦) ପୃ ୨*

# କବି ରାଧାନାଥଙ୍କ କାବ୍ୟ ସାହିତ୍ୟ: ଡଃ ସାମନ୍ତରାୟଙ୍କର ମନସ୍ତାତ୍ତ୍ୱିକ ବିଚାର

ଡଃ ତ୍ରିଲୋଚନ ବେହେରା

ଓଡ଼ିଆ ସମାଲୋଚନା ସାହିତ୍ୟରେ ଯଦି କାହାର ମୌଳିକତା, ଗମ୍ଭୀରତା, ସୂକ୍ଷ୍ମତା, ଦୃଢ଼ତା, ପରିବେଷଣ ଅଭିନବତା ତଥା ସର୍ବୋପରି ସହୃଦୟ ଭାଷାର ପ୍ରଶ୍ନ ଉଠେ, ତେବେ ଡଃ ସାମନ୍ତରାୟଙ୍କ ନାମଟି ସଚେତନ ପାଠକ ତୁଣ୍ଡରେ ଛାଏଁ ଛାଏଁ ଉଚ୍ଚାରିତ ହୋଇଯାଏ । ତାଙ୍କର ସମଗ୍ର ଆଲୋଚନାରେ ଆମେ ମୌଳିକ ଚିନ୍ତନର ଯେପରି ସ୍ୱଷ୍ଟ ପରିଚୟ ପାଉ, ତଦ୍ରୂପରି ଅଧ୍ୟୟନର ବ୍ୟାପକତା, ଅନୁଭୂତିର ତୀବ୍ରତା ଏବଂ ସୂକ୍ଷ୍ମ ବିଚାର କୌଶଳର ସହୃଦୟତା ମଧ୍ୟ ଅନୁଭବ କରିଥାଉଁ । ଏହି ଅନନ୍ୟ କାଳଜୟୀ ପ୍ରତିଭାର ଏକ ବିଶେଷ ରୂପ ସାହିତ୍ୟ କୃତିକୁ ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ବିଚାର କରିବାରେ, ଅର୍ଥାତ ମାନସିକ ପକ୍ଷ ଉପରେ ଗୁରୁତ୍ୱ ଆରୋପ କରି କାବ୍ୟାସ୍ୱାଦନ କରିବାରେ ପ୍ରକାଶ ପାଇଛି । ଓଡ଼ିଆ ସମାଲୋଚନା ସାହିତ୍ୟ ଇତିହାସରେ ତାଙ୍କର ଏହା ଏକ ଅଭିନବ ପ୍ରୟାସ । ସେ ଅନୁଭବ କରିଥିଲେ ଆଧୁନିକ କାବ୍ୟ ସାହିତ୍ୟକୁ ବୁଝିବାକୁ ହେଲେ, ତା'ର ରସାସ୍ୱାଦନ କରିବାକୁ ହେଲେ କେବଳ ସ୍ଥୂଳ କାବ୍ୟାଙ୍ଗ ଉପରେ ଗୁରୁତ୍ୱ ଦେଇ ନୁହେଁ, କି କବିଙ୍କ ଅଭିମତ ଉପରେ ସମ୍ପୂର୍ଣ୍ଣ ବିଶ୍ୱାସ କରି ନୁହେଁ; ବରଂ କବିର ମସ୍ତିଷ୍କ ଉପରେ ନିର୍ଭର କରିବାକୁ ପଡ଼ିବ । ପୂର୍ବରୁ ରମଣୀୟ ଶବ୍ଦର ଅର୍ଥ ବୁଝିଗଲେ କାବ୍ୟର ରସାସ୍ୱାଦନ ହୋଇଯାଉଥିଲା, ପାଠକ ଜଣେ ସହୃଦୟ ପାଠକ ହୋଇଯିବା ସହଜ ଥିଲା । ରଚୟିତାର ସାଧାସିଧା ସରଳ ବକ୍ତବ୍ୟ ବୁଝିବା ପାଇଁ କୌଣସି ବୌଦ୍ଧିକ ପରିଶ୍ରମ କରିବାକୁ ପଡୁନଥିଲା । ଶବ୍ଦର ଅର୍ଥରେ ବକ୍ତବ୍ୟ ଧରା ପଡୁଥିଲା । ପରନ୍ତୁ ଆଧୁନିକ ସଭ୍ୟତାର ବିକାଶରେ ମଣିଷର ମନ ସର୍ବଦା ରହସ୍ୟମୟ ହୋଇପଡ଼ିଲା । ସାଧାରଣ ସରଳ ଜୀବନ କ୍ରମେ ଜଟିଳରୁ ଜଟିଳତର ହେଲା । ପୂର୍ବରୁ ସାହିତ୍ୟିକର ମନରେ ନଥିଲା ଜଟିଳତା, କି ପାଠକ ବା ସାଧାରଣ ଜନତାଙ୍କ ମଧ୍ୟରେ ନଥିଲା କୁଟିଳତା । ଆଉ ସେଥିପାଇଁ ପାଠକର ଅର୍ଥଗ୍ରହଣ ଓ ସାହିତ୍ୟିକ ଅଭିବ୍ୟକ୍ତି ମଧ୍ୟରେ କୌଣସି ଶଙ୍କା ନଥିଲା, କି ଆପତ୍ତି ନଥିଲା । ଆଧୁନିକ ସଭ୍ୟତାର ଅଗ୍ରଗତି କେବଳ ପାଠକକୁ ସନ୍ଦେହୀ କରିନାହିଁ; ରଚୟିତାକୁ ବି କୁଟିଳ କରିଦେଇଛି । ରଚୟିତାର ଭାବିବା, ଅନୁଭବ କରିବା ଏବଂ କହିବାର ଢ଼ଙ୍ଗକୁ ବି ବଦଳାଇ ଦେଇଛି । ତେଣୁ ଏପରି ଏକ ବୈଚିତ୍ର୍ୟପୂର୍ଣ୍ଣ ବାତାବରଣ, ଜଟିଳ ମାନସିକ କ୍ଷେତ୍ରରୁ ଉତ୍ପନ୍ନ ସାହିତ୍ୟର ଅଧ୍ୟୟନ ପାଇଁ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ପଦ୍ଧତିର ଯେ ଆବଶ୍ୟକତା ରହିଛି ତାହା ନିଃସନ୍ଦେହ ।

ଜଣେ ଉତ୍ତମ ପାଠକ ତଥା ବିଜ୍ଞ ସମାଲୋଚକ ଭାବରେ ସେ ହୃଦୟଙ୍ଗମ କରିଥିଲେ,

କାବ୍ୟ ସର୍ଜନା କବିର ସଦାସର୍ବଦା ବିଶୁଦ୍ଧ ମାନସିକ ବ୍ୟାପାର । ସାହିତ୍ୟ ସର୍ଜନାର ବିଭିନ୍ନ କ୍ରିୟା ପ୍ରକ୍ରିୟା ଏକ ଶୁଦ୍ଧ ମାନସିକ ପ୍ରକ୍ରିୟା । ଯଦିଓ ତାହା ସହଜ ସରଳ ନହୋଇ ଏକ ଜଟିଳ ପ୍ରକ୍ରିୟାର ଫଳ । ସ୍ରଷ୍ଟା ମନ ହିଁ ସାହିତ୍ୟ ସୃଷ୍ଟିକରେ । ଏହି ମନ ବିଭିନ୍ନ ଭାବାବେଗ ତଥା ଅନୁଭୂତିର ଏକ ଜୀବନ୍ତ କୋଷ । ସେହି ଭାବାବେଗ ତଥା ଅନୁଭୂତିର କଳାତ୍ମକ ପ୍ରକାଶ ହେଉଛି ସାହିତ୍ୟ । ମାନବ ମନ ମନୋବିଜ୍ଞାନରେ ବିଶ୍ଳେଷିତ ହୁଏ । ମାନବ ମନର ପ୍ରକାଶ ସାହିତ୍ୟ ହୋଇଥିବାରୁ ଏହା ସାହିତ୍ୟ ଅଧ୍ୟୟନର ଏକ ମାଧ୍ୟମ । ସାହିତ୍ୟ ସର୍ବଦା ଏକ ଶୈଳୀଆତ୍ମକ ଏବଂ କଳାତ୍ମକ ପ୍ରଣାଳୀର ବିଷୟ । ମନୋବିଜ୍ଞାନୀ ସ୍ରଷ୍ଟାର ସର୍ଜନ ପ୍ରକ୍ରିୟା, ପ୍ରେରଣା ସ୍ରୋତ, ପାଠକ ପ୍ରତିକ୍ରିୟା ଏବଂ ତତ୍‌ସହିତ ସାହିତ୍ୟିକର ସୃଷ୍ଟିଜନିତ ମନୋଦଶାକୁ ମଧ୍ୟ ବ୍ୟକ୍ତ କରେ । ସାହିତ୍ୟର ବିଚାର ପକ୍ଷ କାବ୍ୟ ତଥା ଶିଳ୍ପଗତ ବୈଶିଷ୍ଟ୍ୟର ଅଧ୍ୟୟନ କରି କୃତିର ମନୋବିଜ୍ଞାନ ଜାଣିବାରେ ସହାୟକ ହୁଏ । ଅଧିକନ୍ତୁ କବିଙ୍କର ବ୍ୟକ୍ତିତ୍ୱ, କାବ୍ୟଶିଳ୍ପ ଓ କବିତା ରସ ଗ୍ରହଣ ସମ୍ବନ୍ଧରେ ଅନେକ ସମସ୍ୟାର ଉଚିତ୍ ବ୍ୟାଖ୍ୟାକରେ । କବିର ଚିନ୍ତା ଚେତନା, ପରିବେଶ ପରିସ୍ଥିତି, ଅନୁଭବ-ଅନୁଭୂତିର ସାମଗ୍ରୀ ନେଇ କାବ୍ୟ ଅଭିବ୍ୟକ୍ତି ଲାଭ କରେ । କବି ଯାହା ଦେଖେ, ଯାହା ନିଜେ ଭାବେ, ଯାହା ତାକୁ ଉତ୍ସାହିତ କରେ ଓ ପ୍ରେରଣା ଦିଏ, ସେ ସବୁ ସମ୍ପର୍କରେ କବି ଭାଷା ମାଧ୍ୟମରେ ପ୍ରକାଶ କରେ । ତେବେ ଏଇଠି ସ୍ପଷ୍ଟ ହୁଏ, ପ୍ରତ୍ୟେକ କଳା ଚେତନ ଜଗତରେ ଆତ୍ମପ୍ରକାଶ ପୂର୍ବରୁ ସ୍ରଷ୍ଟାର ଅବଚେତନ ସ୍ତରରେ ସୁପ୍ତ ଅବସ୍ଥାରେ ଥାଏ । ସ୍ଥୂଳତଃ ଏହି ଅବଚେତନ ହିଁ ପ୍ରତ୍ୟେକ କଳା ସୃଷ୍ଟିର ଉତ୍ପତ୍ତି ସ୍ଥଳ, ସାହିତ୍ୟ ପ୍ରେରଣାର ମୂଳପିଣ୍ଡ, କଳାକାରର ସର୍ଜନଶୀଳତାର ଉତ୍ସ । ସବୁ ମନୋବିଶ୍ଳେଷକ ଏହି ଅବଚେତନ ମନ ଉପରେ ବିଶେଷ ଗୁରୁତ୍ୱ ଦେଇଥାନ୍ତି । କବିର ବୈଚାରିକ ଅନୁଭୂତି କଳା କୃତିରେ ରୂପାନ୍ତରିତ ହେବା ପୂର୍ବରୁ ପ୍ରଥମେ ତାହା ସ୍ରଷ୍ଟାର ମାନସିକ ଚେତନାର ଅଂଶ ହୋଇଥାଏ ।

ବସ୍ତୁତଃ ସ୍ରଷ୍ଟାର ଅବଚେତନ ମନରେ ନିତ୍ୟ ସଂଘର୍ଷରତ ଦ୍ୱନ୍ଦର ବାହ୍ୟ ପରିଣାମ ହେଉଛି କଳାକାରର ପରିପୁଷ୍ଟ ସୃଷ୍ଟି । ଏହି ଚେତନାରେ କବିଙ୍କ ଅନୁଭୂତିର ପ୍ରାଧାନ୍ୟ ରହେ ଏବଂ ସେହି ଅନୁଭୂତି ସବୁ ଅନାୟାସରେ ରଚନା ପ୍ରକ୍ରିୟାରେ ଆତ୍ମସ୍ଥ ହୋଇଥା'ନ୍ତି । ତେଣୁ ଏଥିରୁ ଜଣାଯାଏ, କବିର ଚେତନ ସ୍ତରର ପ୍ରକ୍ରିୟା ଅବଚେତନ ସ୍ତରରେ ହିଁ ନିର୍ଦ୍ଧାରିତ ହୋଇଥାଏ । ଏହି ପ୍ରକ୍ରିୟାରେ ସାହିତ୍ୟ ସମାଲୋଚକ ଡଃ ସାମନ୍ତରାୟ ରାଧାନାଥଙ୍କ ମନଃ ଅନ୍ତଃପୁରକୁ ପ୍ରବେଶ କରି ରାଧାନାଥଙ୍କ ମାନସିକତାକୁ ନେଇ ତାଙ୍କ ସାହିତ୍ୟ ପ୍ରତିଭା କିପରି ଉତ୍‌ଥାନ ପତନ ଦେଇ ଗତି କରିଛି, ତା'ର ସଠିକ୍ ବିଚାର କରିଛନ୍ତି । ରାଧାନାଥଙ୍କ ଅବଚେତନ ମନକୁ ତାଙ୍କ କାବ୍ୟ ପରିପ୍ରେକ୍ଷୀରେ ଡଃ ସାମନ୍ତରାୟ କିପରି ଚିହ୍ନି ଆମକୁ ଚିହ୍ନାଇଛନ୍ତି, ତାହାର ବିଚାର କରିବା ବର୍ତ୍ତମାନ ପ୍ରବନ୍ଧଟିର ଲକ୍ଷ୍ୟ ।

ତେବେ ଏଇଠି ଜଣେ ନିରୋଳା ସାହିତ୍ୟ ସମାଲୋଚକ ଏବଂ ଜଣେ ସାହିତ୍ୟର ମନସ୍ତାତ୍ତ୍ୱିକ ସମାଲୋଚକ ମଧ୍ୟରେ ଥିବା ସାଧାରଣ ପାର୍ଥକ୍ୟକୁ ସୂଚାଇ ଦେବା ଉଚିତ୍ ମନେ କରୁଛି । ସାହିତ୍ୟ ସମାଲୋଚକ ସୃଷ୍ଟିପ୍ରକାଶ ପରର ଦୃଶ୍ୟକୁ ବିଚାର କରୁଥିଲା ବେଳେ ମନସ୍ତାତ୍ତ୍ୱିକ ସମାଲୋଚକ ସୃଷ୍ଟି ପ୍ରକାଶ ପୂର୍ବର ଅବସ୍ଥାକୁ ବିଚାର କରିଥାଏ । ଜଣେ କାର୍ଯ୍ୟକୁ ନିରୀକ୍ଷଣ କରେ ତ, ଅନ୍ୟ ଜଣେ କାରଣକୁ ବିଚାର କରେ । ତେଣୁ, ଜଣେ ସାହିତ୍ୟ ସମାଲୋଚକ ଅପେକ୍ଷା ମନସ୍ତାତ୍ତ୍ୱିକ ସମାଲୋଚକର ଦାୟିତ୍ୱ ବେଶି,

ପରିଶ୍ରମ ଅଧିକ, ସେତିକି ବିଷୟ ପ୍ରବେଶ, ଅଧ୍ୟୟନ, ମନନ, ସୂକ୍ଷ୍ମ କଳ୍ପନା, ତୀକ୍ଷ୍ଣ ବିଚାର ସମ୍ପନ୍ନ ହୋଇନଥିଲେ ଏପ୍ରକାର ସମାଲୋଚନା ସାର୍ଥକ ହୋଇପାରେନା । କାରଣ ଯେପରି କୁଶଳୀ ବୁଡ଼ାଳି ହୋଇନଥିଲେ ସମୁଦ୍ରରେ ବୁଡ଼ି ରତ୍ନ ଉଦ୍ଧାରକରିବା ଅସମ୍ଭବ ।

ଏହି ପରିପ୍ରେକ୍ଷୀରେ ଡଃ ସାମନ୍ତରାୟ ରାଧାନାଥ ସାହିତ୍ୟ ବିଶ୍ଳେଷଣ କରିବାକୁ ଯାଇ ପ୍ରଥମେ ପାଠକକୁ ସତର୍କ କରାଇବା ସଙ୍ଗେ ସଙ୍ଗେ ନିଜେ ମଧ୍ୟ ସଚେତନ ହୋଇଛନ୍ତି । ତେଣୁ ପ୍ରଥମରୁ ସେ ରାଧାନାଥଙ୍କ କାବ୍ୟଧାରା ଅନୁଶୀଳନ କରିବା ଅତୀବ ବିପଦ ସଙ୍କୁଳ ବୋଲି ସ୍ପଷ୍ଟ କରିଦେଇଛନ୍ତି । କାରଣ ସାଧାରଣ କବି ନୁହେଁ, ଶତ୍ରୁ(?) ପରିବେଷ୍ଟିତ ଜଣେ ପଣ୍ଡିତ ଜ୍ଞାନୀ-କବି ତା'ର ସୃଷ୍ଟି ନିର୍ମାଣରେ ଯେଉଁ ସୂକ୍ଷ୍ମବୁଦ୍ଧିର କସରତ କରିଥାଏ, ତାକୁ ତଦ୍ରୂପରି ଜଣେ ଧୂରୀଣ ସମାଲୋଚକ ନହେଲେ ଠିକ୍ ରୂପେ ବୁଝିବା ଏକ କଷ୍ଟସାଧ୍ୟ ବ୍ୟାପାର । ଜଣେ ପଣ୍ଡିତ, ବହୁପାଠୀ, ବହୁଦର୍ଶୀ ସ୍ରଷ୍ଟାର ଅବଚେତନ ମନ ପ୍ରକାଶ ପୂର୍ବରୁ କିପରି ଆନ୍ଦୋଳିତ ହେଉଥିବ, ତାକୁ ଠିକ୍ ରୂପେ ଅନୁମାନ କରିବା ନିଶ୍ଚୟ ଏକ ବିପଦ ସଙ୍କୁଳ କାର୍ଯ୍ୟ । ପୁନଶ୍ଚ ରଚନା ପ୍ରକ୍ରିୟା ଥରେ ଆରମ୍ଭ ହୋଇଯିବା ପରେ ସ୍ରଷ୍ଟା ପୂର୍ଣ୍ଣ ସାବଧାନତାର ସହ ଚିତ୍ର ଗ୍ରହଣ କରେ, ଶବ୍ଦ ଚୟନ କରେ, ଭାବବସ୍ତୁ ଗ୍ରହଣ ଓ ପରିତ୍ୟାଗ ବି କରେ । କାରଣ ସୁନିର୍ଦ୍ଦିଷ୍ଟ କଳାତ୍ମକ ଉଦ୍ଦେଶ୍ୟ ସିଦ୍ଧିପାଇଁ ସ୍ରଷ୍ଟା କଳ୍ପନାର ନିୟନ୍ତ୍ରିତ ପ୍ରୟୋଗ କରେ । ଯେଉଁ ଚିତ୍ର କବିତାରେ ରୂପପାଏ, ତା'ର ଅର୍ଥବତ୍ତା ଏବଂ ସୌନ୍ଦର୍ଯ୍ୟ ସଦାସର୍ବଦା ଏକ ନିଶ୍ଚିତ-ଯୋଜନା ବିକାଶର ପରିଣାମ ମାତ୍ର । ସ୍ରଷ୍ଟାର ଅବଚେତନ ମନର ଶୀତଳ ଭଣ୍ଡାରରେ ବହୁ ଦିନରୁ ପଡ଼ିରହିଥିବା ବିଭିନ୍ନ ଭାବଧାରା ସେହି କଳାସୃଷ୍ଟିର ସାମଗ୍ରୀ ପ୍ରସ୍ତୁତି କରିବାରେ ମୁଖ୍ୟ ଭୂମିକା ନେଇଥାଏ । ଯଦିଓ ଏ ସାମଗ୍ରୀ ସବୁ ସଚେତନ ଭାବରେ କବି ସ୍ୱ କୃତିରେ ପ୍ରୟୋଗ କରେ । ସ୍ରଷ୍ଟାକୁ ଶ୍ରମ ନୁହେଁ, କଠୋର ପରିଶ୍ରମ କରିବାକୁ ପଡ଼େ । ଯାହାକି କାବ୍ୟ ରୂପାୟନ କୌଶଳରେ ପ୍ରକାଶ ପାଇଥାଏ । ସେଥିପାଇଁ ସ୍ରଷ୍ଟା ତା'ର ବିଭିନ୍ନ କଳାକୃତିରେ ଭିନ୍ନ ଭିନ୍ନ ଅଭିନବ ଜ୍ଞାନ ତଥା ଶିଳ୍ପଚାତୁରୀ ପ୍ରୟୋଗ କରି କାବ୍ୟ ସୌନ୍ଦର୍ଯ୍ୟ ପ୍ରତିଷ୍ଠା କରିଥାଏ । ସେହି ସୂତ୍ରରେ ପ୍ରତ୍ୟେକ କଳାକୃତି ପଛରେ ବିଭିନ୍ନ ମାନସିକ ପ୍ରକ୍ରିୟାର ଆଧାର ନିହିତ । ଡଃ ସାମନ୍ତରାୟ ଏହି ପ୍ରକ୍ରିୟାକୁ ଉତ୍ତମ ରୂପେ ବିଶ୍ଳେଷଣପୂର୍ବକ କବି ରାଧାନାଥଙ୍କୁ ବିଚାରକରି ପାଠକଙ୍କର ନିକଟତର କରାଇଛନ୍ତି । ରାଧାନାଥଙ୍କ ପ୍ରମୁଖ କାବ୍ୟ ସମୂହ କେଉଁ କେଉଁ ମାନସ ପ୍ରକ୍ରିୟାରୁ ଉଦ୍ଭୁତ, ଭିନ୍ନଭିନ୍ନ କାବ୍ୟ କିପରି ଭିନ୍ନଭିନ୍ନ କଥ୍ୟ ତଥା ଶିଳ୍ପଗତ ବୈଶିଷ୍ଟ୍ୟ ଧାରଣକରି କାବ୍ୟଶୋଭାରେ ବିଭୂଷିତ, ତା'ର ଏକ ସହଜ ବ୍ୟାଖ୍ୟା କରିଛନ୍ତି । ଫଳତଃ କବିଙ୍କ ସମ୍ପର୍କରେ ପାଠକକୁ ରୋଚକ ତଥ୍ୟରାଜି ସହ ଘନିଷ୍ଠ କରାଇ ପାଠକୀୟ ଉଚ୍ଚଧାରଣାକୁ ପରିପୁଷ୍ଟ କରିଛନ୍ତି ।

ଡଃ ସାମନ୍ତରାୟ ରାଧାନାଥଙ୍କ ଅବଚେତନ ମନର ପୃଷ୍ଠପଟକୁ ଯେପରି ବିଚାର କରିଛନ୍ତି ତାକୁ ଦୁଇଟି ବିଭାଗରେ ବିଭକ୍ତ କରାଯାଇପାରେ । ପ୍ରଥମଟି ସୃଷ୍ଟି ସର୍ଜନଶୀଳତାର କାରଣ, ଦ୍ୱିତୀୟଟି ତା'ର ଶିଳ୍ପ କୌଶଳ । କେଉଁ ପରିସ୍ଥିତିରେ ଜଣେ ବଙ୍ଗଳା କବିତା ଲେଖକ ଓଡ଼ିଆ କାବ୍ୟକାର ରୂପେ ରୂପାନ୍ତରିତ ହେବାପାଇଁ ସମସ୍ତ ସୁଯୋଗଲାଭ କରିଛନ୍ତି, ତାହା, ପ୍ରଥମ ପର୍ଯ୍ୟାୟରେ ବିଚାର କରାଯାଇଛି ।

ଦ୍ୱିତୀୟ ପର୍ଯ୍ୟାୟରେ ଭିନ୍ନ ଭିନ୍ନ ମାନସିକତାକୁ ନେଇ ରାଧାନାଥଙ୍କ କାବ୍ୟରେ ଯେଉଁ ବିଭିନ୍ନ ରୂପାୟନ କୌଶଳର ପ୍ରୟୋଗ କରାଯାଇଛି ତା'ର ଆଲୋଚନା କରାଯାଇଛି ।

ପ୍ରଥମ ପର୍ଯ୍ୟାୟ:- 'ଆମେ ଯେଉଁ କବି ରାଧାନାଥଙ୍କୁ ଜାଣୁ, ସେ ହେଉଛନ୍ତି Joint Inspector ରାଧାନାଥ । ପ୍ରାଥମିକ ସ୍ତରରେ ସେ ଓଡ଼ିଆରେ ଲେଖିବା ପାଇଁ ଆସ୍ଥାବାନ ନଥିଲେ । କିନ୍ତୁ ତାଙ୍କର ଯେ କବି ପ୍ରତିଭା ଥିଲା ତାହା ତାଙ୍କ ରଚିତ ବଙ୍ଗଳା କବିତାରେ ଅନୁଭୂତ ହୁଏ । ଏହି ପ୍ରତିଭା ହେଉଛି ଦିବ୍ୟ କରୁଣା । କିନ୍ତୁ ଉଚ୍ଚତର ସୃଷ୍ଟିପାଇଁ କିଛି କଳା ନୈପୁଣ୍ୟ ଦରକାର । ଏହି କଳା ହେଉଛି ଆହରଣ ଜ୍ଞାନ ଏବଂ ଶିଳ୍ପକୌଶଳ । ବଙ୍ଗଳା କବିତାବଳୀ(୧୮୬୮)ପ୍ରକାଶ କାଳରୁ 'କେଦାରଗୌରୀ' ଲେଖିବା ପର୍ଯ୍ୟନ୍ତ ଏ ଦୀର୍ଘ ସମୟ ଭିତରେ ତାଙ୍କ କବି ପ୍ରତିଭା ସୃଷ୍ଟି କୌଶଳରେ ଖୁବ୍ ଉନ୍ନତ କରିଥିବା ପରିଲକ୍ଷିତ ହୁଏ । ଏହାର ବିଚାର ପୂର୍ବକ ଡଃ ସାମନ୍ତରାୟ ସ୍ୱ ଗବେଷଣା ନିବନ୍ଧର ୨୭୩ ପୃଷ୍ଠାରେ ୫ଟି କାରଣ ଦର୍ଶାଇଛନ୍ତି । ବିଶେଷତଃ ଦୁଇଟି ବର୍ଷର ଅନୁଭୂତିକୁ ପାଥେୟକରି ସେ ୫ଟି ବିଭାଗରେ ତାକୁ ସଜାଇ ଦେଇଛନ୍ତି । ଯେପରି(୧) ପୁରୀ, କଟକ, ବାଲେଶ୍ୱର ଭ୍ରମଣ(୨) ରାଧାନାଥଙ୍କ ଅଧ୍ୟୟନ ପରିସର ଅତ୍ୟନ୍ତ ବ୍ୟାପକ (୩) ଆଧୁନିକ ଯୁଗରେ ପୁରାତନ ବିଷୟରେ ଶକ୍ତି କ୍ଷୟ ନକରି ନୂତନ କିଛି ଗଢ଼ିବା ଉଚିତ୍ ବୋଲି ଭୂଦେବଙ୍କ ଉପଦେଶ(୪) ରାଧାନାଥଙ୍କର ଏ ବିଷୟରେ ଅକ୍ଷମତା (୫) ଭୂଦେବଙ୍କ ଉଦାହରଣ । ତେବେ ଏଇଠି ଦେଖନ୍ତୁ, ରାଧାନାଥଙ୍କ ଗଭୀର ପାଣ୍ଡିତ୍ୟ ରହିଛି, ନୂତନ କିଛି ଗଢ଼ିବାର ଆଗ୍ରହ ରହିଛି ଅଥଚ ସମ୍ପୂର୍ଣ୍ଣ ନୂତନ ସୃଷ୍ଟି ପାଇଁ ଅକ୍ଷମତା ରହିଛି । ''ନୂତନ ଘଟଣା କଳ୍ପନାରୁ ଉଦ୍ଭାବନ କରି ଲେଖିବା ମୋ ଭଳି ଲୋକର ସାଧ୍ୟାତୀତ'' (ରାଧାନାଥଙ୍କ ଉକ୍ତି) ଠିକ୍ ଏତିକି କେବଳ ଗୋଟିଏ ଅଭାବ ପରିଲକ୍ଷିତ ହୁଏ, ତାହା ହେଉଛି ''ନୂଆ କିପରି ଗଢ଼ିବାକୁ ହୁଏ ।'' ତା'ର ଏକ ଚମତ୍କାର ଦୃଷ୍ଟାନ୍ତ, ଭୂଦେବଙ୍କ ଉପଦେଶରେ କଳାମେଘରେ ବିଜୁଳି ଭଳି ପ୍ରତୀୟମାନ ହୋଇଛି । ଆରୋପ ସମନ୍ୱୟର ରୂପାୟନ କୌଶଳରେ ସ୍ରଷ୍ଟାଙ୍କ ଅନ୍ତଃ ପ୍ରଦେଶ ଆଲୋକିତ ହୋଇଛି । ତାଙ୍କ ଅବଚେତନ ମନରେ ଘମାଘୋଟ କଳାମେଘ ବିଜୁଳି ପରେ କାବ୍ୟଧାରା ରୂପେ ବରଷି ଯାଇଛି । ମୂଳତଃ ଭୂଦେବଙ୍କ ଦୃଷ୍ଟାନ୍ତ, ଓଡ଼ିଶାରେ ଏପରି ଉପାଦାନର ପ୍ରାବଲ୍ୟ, ମନୋହର ପ୍ରାକୃତିକ ଦୃଶ୍ୟ ସର୍ବୋପରି ଭୂଦେବଙ୍କ ପ୍ରେରଣା କାବ୍ୟକାର ରାଧାନାଥ ହେବାପାଇଁ ସମସ୍ତ ଇନ୍ଧନ ଯୋଗାଇଛି । ଓଡ଼ିଶାର ଉପାଦାନକୁ ନେଇ କିପରି ନୂଆ ସୃଷ୍ଟି କରାଯାଇପାରେ Joint Inspector ରାଧାନାଥ ଭୂଦେବଙ୍କ ସହ ଦ୍ୱିତୀୟ ବର୍ଷ ଯାତ୍ରାବେଳେ ତାହା ତାଙ୍କ ମନ୍ତବ୍ୟରେ ଉଦ୍‌ଘାଟିତ ହୋଇଛି । ଉପଯୁକ୍ତ ଗୁରୁଙ୍କ ଉପଯୁକ୍ତ ଶିଷ୍ୟ ଭାବରେ ରାଧାନାଥଙ୍କୁ ଯେଉଁ ଉପଦେଶ ମିଳିଥିଲା, କୋଣାର୍କ ପରିଦର୍ଶନ ବେଳେ ତା'ର ଚରମ ପରୀକ୍ଷା କରିଛନ୍ତି ଭୂଦେବଙ୍କ ଆଗରେ । ପରନ୍ତୁ ଭୂଦେବଙ୍କ ଉତ୍ତର ଏ ପରିପ୍ରେକ୍ଷୀରେ ଯେତେ ତୀବ୍ର ହେଉନା କାହିଁକି ଏ ସମୟ ବେଳକୁ ଜଏଣ୍ଟ ଇନ୍‌ସପେକ୍ଟର ରାଧାନାଥ କାବ୍ୟକାର ରାଧାନାଥ ହେବାକୁ ସମ୍ପୂର୍ଣ୍ଣ ମାନସିକ ପ୍ରସ୍ତୁତି କରିସାରିଛନ୍ତି । କାରଣ ଭୂଦେବଙ୍କ ତୀବ୍ରବାକ୍ୟ ରାଧାନାଥଙ୍କ ମାନସ ପଟ୍ଟକୁ ସାମାନ୍ୟ ଚିନ୍ତିତ କରିନଥିବା ହେତୁ ଗ୍ରୀକ୍ ସାହିତ୍ୟ ଆଧାରରେ ସେ ପାଞ୍ଚଟି କାବ୍ୟ (କେଦାରଗୌରୀ, ଚନ୍ଦ୍ରଭାଗା, ନନ୍ଦିକେଶରୀ, ଉଷା, ପାର୍ବତୀ) ରଚନା କରିଛନ୍ତି । ତେଣୁ ଡଃ ସାମନ୍ତରାୟ ଯଥାର୍ଥରେ ଲେଖିଛନ୍ତି , ''ଭଞ୍ଜ ଭୂଦେବ ପ୍ରଶଂସା ସମୟରେ ତାଙ୍କ ଅବଚେତନ ମନରେ ଅତି ଗୋପନରେ ଲୁକ୍କାୟିତ ହେଇଥିବା ନିଜ କାବ୍ୟର ବିଷୟବସ୍ତୁ ଅତି ଅସତର୍କ ଭାବରେ ପ୍ରକାଶ ପାଇଛି ।''

ପାଞ୍ଚଟି କାବ୍ୟରେ ଥିବା ଶିଳ୍ପ କୌଶଳ, ଗଠନ ପରିପାଟୀ ଏକ ଏବଂ ଅଭିନ୍ନ, ମନେ ହୁଏ ଯେପରି ଏମାନେ ଗୋଟିଏ ପ୍ରେରଣାରୁ ଉତ୍‌ଥିତ । ଏ'ତ ଗଳ୍ପ କବିଙ୍କ ଅବଚେତନକୁ ଜାଣିବାର ଏକ ଅବଲମ୍ବନ ।

ରାଧାନାଥଙ୍କ ଅବଚେତନ ମନକୁ ବୁଝିବା ପାଇଁ ଡଃ ସାମନ୍ତରାୟ ଆଉ ଏକ ବିଷୟର ଉଲ୍ଲେଖ କରିଛନ୍ତି । ଯାହା କି କବି ଗଙ୍ଗାଧରଙ୍କୁ ରାଧାନାଥ ଲେଖିଥିବା ଚିଠିରେ ସ୍ପଷ୍ଟ ହୋଇଛି । ରାଧାନାଥଙ୍କ ପ୍ରଥମ ଚିଠିରେ ଅଛି "ପୁରାତନକୁ ନୂତନ କରି ଗଢ଼ିବାରେ ଏବଂ ଆହୃତରେ ମୌଳିକତା ପ୍ରତିଫଳିତ କରିବାରେ ପ୍ରତିଭାର ବିଧି- ପ୍ରତିପାଦିତ କରିବାର ଅଧିକାର ଅଟେ ।" ଅଥଚ ପର ଚିଠିରେ ସେ ତାକୁ ପରିବର୍ତ୍ତନ କରି ଲେଖିଛନ୍ତି, "ପୁରାତନରେ ନୂତନତା...ଆଦି ।" ତାଙ୍କ ମତରେ ପ୍ରତିଭାର ବିଧି ପ୍ରତିପାଦିତ ଅଧିକାର' ହେଉଛି 'ପୁରାତନକୁ ନୂତନ କରି ଗଢ଼ିବା' କିମ୍ବା 'ପୁରାତନରେ ନୂତନତା ସମ୍ପାଦନ କରିବା । ଏ ଉଭୟର ଭାବ ଏକ ବୋଲି ବାହ୍ୟତଃ ଜଣା ଯାଉଥିଲେ ହେଁ ପ୍ରକୃତରେ ତାହା ଏକ ନୁହେଁ । ପ୍ରଥମଟିରେ ପୁରାତନକୁ ନୂତନ କରି ଗଢ଼ିବା ଅର୍ଥ ଭିତରେ ପୁରାତନର ସ୍ଥିତି ସ୍ୱୀକାର ସମ୍ପୂର୍ଣ୍ଣ ଗୌଣ ଓ ଅପ୍ରଧାନ । ଦ୍ୱିତୀୟଟିରେ ପୁରାତନର ସ୍ଥିତି ସ୍ୱୀକାର ସଙ୍ଗେ ସଙ୍ଗେ ତା'ର ନୂତନତା ସୁସ୍ପଷ୍ଟ । ରାଧାନାଥଙ୍କ ପ୍ରତିଭା ପୁରାତନକୁ ନୂତନ କରି ଗଢ଼ିବାର ପ୍ରତୀକ । "ନିଜ ସୃଷ୍ଟି କୌଶଳରେ ସତତ ନିମଜ୍ଜିତ ରାଧାନାଥଙ୍କ ଅବଚେତନ ମନ ଅତି ଅଜ୍ଞାତ ଭାବେ ମେହେରଙ୍କ ନିକଟକୁ ଏହି ସତ୍ୟ କଥା ଲେଖି ପକାଇଥିଲେ ମାତ୍ର । ଯେଉଁ ମନର କୌଣସି ପରିଚୟ ସେ ଜୀବନବ୍ୟାପୀ କାହା ନିକଟରେ ପ୍ରକାଶ କରି ନଥିଲେ ତାହା ଏକ ଦୁର୍ବଳ ମୁହୂର୍ତ୍ତରେ ମେହେରଙ୍କ ପତ୍ରରେ ଧରା ପଡ଼ିଯାଇଛି । ରାଧାନାଥଙ୍କ ଅବଚେତନ ମନର ଏହି ଗୋପନ ପ୍ରବୃତ୍ତି ହୋଇଛି ତାଙ୍କ ସାହିତ୍ୟ ସୌଧ ଅବବୋଧର ପ୍ରଧାନ ଦ୍ୱାର ସ୍ୱରୂପ । ଯେଉଁ ରାଧାନାଥ ନୂତନ ଗଢ଼ିବାକୁ ନିଜର ସାଧ୍ୟାତୀତ ବୋଲି ଦିନେ ମଣୁଥିଲେ, ସେ କିପରି ନିଜକୁ ପ୍ରସ୍ତୁତ କରିନେଲେ ପୁରାତନକୁ ନୂତନ କରି ଗଢ଼ିବା ପାଇଁ ଯେଉଁଥିରେ କି ପୁରାତନ ଅପେକ୍ଷା ନୂତନତା ପ୍ରଧାନ ସ୍ଥାନ ଅଧିକାର କରି ବସିଛି । ପୁନଶ୍ଚ ଏହି ନୂତନତା ସମ୍ପର୍କରେ ଯେତେବେଳେ ଖୁବ୍ ଜୋର୍‌ରେ ପାଠକ ପ୍ରତିକ୍ରିୟା ପ୍ରକାଶ ପାଇଛି, ସେତେବେଳେ ସେ ଅତି ଚତୁରତାର ସହ ତା'ର ସମ୍ମୁଖୀନ ହୋଇଛନ୍ତି । ପାଠକଙ୍କ ନିକଟରେ ମିଥ୍ୟାକୁ ସତ୍ୟ ବୋଲି ପ୍ରଚାର କରିବା ପାଇଁ ସେ ସମସ୍ତ ଉଚିତ୍ କୌଶଳ ପ୍ରୟୋଗ କରିଛନ୍ତି । ଏହି ଉଚିତ୍ କୌଶଳ ବା ଅସରଳତା ତାଙ୍କ କାବ୍ୟର ନିର୍ଭୁଲ ଗଠନ ପରିପାଟୀ ପାଇଁ ସମସ୍ତ ସୁଯୋଗ ଦେଇଛି । କାରଣ ଶତ୍ରୁମାନଙ୍କ ସମ୍ମୁଖରେ ସମ୍ପୂର୍ଣ୍ଣ ମିଥ୍ୟାକୁ ସତ୍ୟ ବୋଲି ପ୍ରଚାର କରାଇ ନେବା ପାଇଁ ଯେଉଁ ସୂକ୍ଷ୍ମ ଚମତ୍କାରିତା ଦରକାର, ରାଧାନାଥ ତାହା ହିଁ କରିଛନ୍ତି । ତେଣୁ ବିଷୟବସ୍ତୁ ଲୋକଙ୍କୁ ନ ଜଣାଇ ଦେବାକୁ ସେ ଯେତେ ଆତ୍ମସଚେତନ ହୋଇଉଠିଛନ୍ତି, କାବ୍ୟର ଗଠନ ପରିପାଟୀକୁ ନିର୍ଭୁଲ ଓ ବିଶ୍ୱାସଯୋଗ୍ୟ କରିବା ପାଇଁ ସେ ସେତେ ବଦ୍ଧପରିକର ହୋଇଛନ୍ତି । ଅତଏବ ରାଧାନାଥଙ୍କ କାବ୍ୟଗଠନ ପରିପାଟୀକୁ ବୁଝିବା ପାଇଁ ଗଲେ ତାଙ୍କର ଏହି ଆତ୍ମସଚେତନା ବା ଅବଚେତନ ମନ ସହ ପରିଚିତ ହେବା ସ୍ୱାଭାବିକ ।

ତୃତୀୟତଃ ରାଧାନାଥ ସାହିତ୍ୟ ଅବବୋଧ ପାଇଁ ବଙ୍ଗଳା କବିତା ଲେଖକ ରାଧାନାଥଙ୍କୁ ମଧ୍ୟ ଜାଣିବା ଅତି ଜରୁରୀ । କାରଣ ଡଃ ସାମନ୍ତରାୟ ଲେଖିଛନ୍ତି :-'ବଙ୍ଗଳା

ଲେଖକ ରାଧାନାଥ କାବ୍ୟର ଗଠନ ଚାତୁର୍ଯ୍ୟ ଓ ଅନ୍ତଃସୌନ୍ଦର୍ଯ୍ୟ ସୃଷ୍ଟି ଦିଗରେ ପ୍ରଥମେ ଯେଉଁ ମନୋବୃତ୍ତି ଗଢ଼ି ନେଇଥିଲେ ସେହି ମନୋବୃତ୍ତି ଓଡ଼ିଆ ସାହିତ୍ୟକୁ ଦେଇଛି କବିବର ରାଧାନାଥ ରାୟଙ୍କୁ । ତାଙ୍କ କାବ୍ୟକୃତି ପଛରେ ବଙ୍ଗଳା କବିତାବଳୀ ଓ ଲେଖାବଳୀ ନଥିଲେ ଏସବୁ ସାର୍ଥକ ସୃଷ୍ଟିରେ ପରିଣତ ହୋଇଥାନ୍ତେ ବୋଲି ମନେ ହୁଏ ନାହିଁ ।' ବସ୍ତୁତଃ ରାଧାନାଥଙ୍କ ବଙ୍ଗଳା ରଚନା ହିଁ ତାଙ୍କ ଓଡ଼ିଆ ରଚନାର ଏକ ବଳିଷ୍ଠ ଭିତ୍ତିଭୂମି । ବିଶେଷକରି, ଲେଖାବଳୀରେ ରାଧାନାଥ ଯେଉଁ ଚିନ୍ତା ଚେତନାର ବିଷୟବସ୍ତୁ ପ୍ରକାଶ କରିଛନ୍ତି, ତା'ର ସର୍ବୋତ୍ତମ ପ୍ରକାଶ ତାଙ୍କ କାବ୍ୟମାନଙ୍କରେ ଦେଖିବାକୁ ମିଳେ । ''ଏହି ବଙ୍ଗଳା କବିତା ଗୁଡ଼ିକରେ ନୂତନତ୍ୱ ରହିଛି ସତ୍ୟ ପରନ୍ତୁ ଆଦି ରସର ପ୍ରାବଲ୍ୟ ରହିଛି ଯାହାକି ନୈତିକ ସ୍ୱାସ୍ଥ୍ୟର ପ୍ରତିକୂଳ ।'' ରାଧାନାଥଙ୍କୁ ଭୂଦେବଙ୍କ ଏ ଉପଦେଶ ତାଙ୍କ କାବ୍ୟକୁ ତିଳେହେଲେ ନିୟନ୍ତ୍ରିତ କରିନାହିଁ । କାରଣ ସଭ୍ୟମାନବର କଳ୍ପନାତୀତ କାହାଣୀ ରଚନା କରିବାକୁ କବି ରାଧାନାଥ ସାମାନ୍ୟ ବି କୁଣ୍ଠା କରିନାହାନ୍ତି । ତେଣୁ ସ୍ପଷ୍ଟ ହୁଏ ଯେ ବଙ୍ଗଳା ରଚନାର ବହିଃସ୍ୱର ଓ ଅନ୍ତଃସ୍ୱର ତାଙ୍କ ପରବର୍ତ୍ତୀ ରଚନାରେ ଫୁଟିଉଠିଛି । ଅତଏବ ରାଧାନାଥ ଯେଉଁ କାବ୍ୟାଦର୍ଶ ଅନୁସରଣ କରିଛନ୍ତି, ସେଥିପାଇଁ ସମ୍ଭବତଃ କବିତାବଳୀ ଓ ଲେଖାବଳୀ ରଚନା ଦିନରୁ ଠିକ୍ କରିସାରିଛନ୍ତି । କବି କେବଳ ଉପଯୁକ୍ତ ସମୟକୁ ଅପେକ୍ଷା କରିଥିଲେ, ଯାହାକି ଜଏଣ୍ଟ୍ ଇନ୍‌ସପେକ୍ଟର ରାଧାନାଥଙ୍କ ସମୟରେ ପୂର୍ଣ୍ଣ ସାକାର ରୂପ ନେଇଛି । ଅତଏବ ରାଧାନାଥଙ୍କ କାବ୍ୟାଲୋଚନା ପରିପ୍ରେକ୍ଷୀରେ ତାଙ୍କର ଏହି ଅବଚେତନ ମନର ସ୍ୱରୂପକୁ ଜାଣିଲେ ପାଠକ ଏକ ସହୃଦୟ କାବ୍ୟଗ୍ରାହୀ ହୋଇପାରିବ ଯେଉଁଥିପାଇଁ ଡଃ ସାମନ୍ତରାୟ ରାଧାନାଥଙ୍କ କାବ୍ୟର ଶ୍ରେଷ୍ଠ ସମାଲୋଚକ ହୋଇପାରିଛନ୍ତି । ସେକ୍‌ସପିଅରଙ୍କୁ ବୁଝିବାପାଇଁ ଗଲେ ଯେପରି Bradleyଙ୍କ ସମାଲୋଚନା ପଢିବା ଦରକାର, ତଦ୍ରୂପରି ରାଧାନାଥଙ୍କ କାବ୍ୟ ପ୍ରତିଭା ସହ ପରିଚିତ ହେବାକୁ ହେଲେ ଡଃ ସାମନ୍ତରାୟଙ୍କ ସମାଲୋଚନା ପଢ଼ିବା ଜରୁରୀ କହିଲେ ବୋଧହୁଏ ଅତ୍ୟୁକ୍ତି ହେବନାହିଁ । ଏ'ତ ଗଲା ପ୍ରଥମ ପର୍ଯ୍ୟାୟର ଆଲୋଚନା । ଏବେ ଆସନ୍ତୁ ତାଙ୍କ କାବ୍ୟଶିଳ୍ପ କୌଶଳର କବିଙ୍କ ମାନସିକତା ସହ ଘନିଷ୍ଠ ହେବା ।

ଦ୍ୱିତୀୟ ପର୍ଯ୍ୟାୟ:- 'ରାଧାନାଥ ଜାତୀୟ କର୍ତ୍ତବ୍ୟ ସାଧନପାଇଁ ତୁଚ୍ଛ- ବାଦ ବିସମ୍ବାଦରେ ଶକ୍ତିକ୍ଷୟ ନକରି ସାହିତ୍ୟ ସୃଷ୍ଟିରେ ମନଃପ୍ରାଣ ଢ଼ାଳି ଦେଇଥିଲେ ।' ସେହି ସୃଷ୍ଟି ଶୁଭଯାତ୍ରାର ପ୍ରଥମ ସାର୍ଥକ ସଙ୍କେତ ହେଉଛି 'କେଦାରଗୌରୀ'। ତାଙ୍କର ପ୍ରଥମ ପାଞ୍ଚଟି ରଚନାର ସୃଷ୍ଟି କୌଶଳ ଓ ଶିଳ୍ପ-ପରିପାଟୀ ଏକ ଏବଂ ଅଭିନ୍ନ । ମନେହୁଏ ଏମାନେ ଗୋଟିଏ ସୃଷ୍ଟି ପ୍ରେରଣାରୁ ଅଭ୍ୟୁତ୍‌ଥିତ । ପରିସ୍ଥିତି ପରିବେଶର ପ୍ରଭେଦରେ ସର୍ବୋପରି କବି ପ୍ରତିଭାର କ୍ରମିକ ଅଭିବୃଦ୍ଧି ହେତୁ ଏମାନଙ୍କ ଅନ୍ତର୍ନିହିତ ସୃଷ୍ଟି ବୈଚିତ୍ର୍ୟରେ କେବଳ କ୍ରମୋନ୍ନତି ପରିଲକ୍ଷିତ ହୁଏ । ରାଧାନାଥଙ୍କ ମାନସିକ ପରିବେଶ ତାଙ୍କ କାବ୍ୟ ଗଠନ ପରିପାଟୀର ପ୍ରଧାନ ପୃଷ୍ଠଭୂମି । ନିଜ ଅବଚେତନ ମନର ଗୋପନ ବାଣୀକୁ ସେ ଯେପରି ସମସ୍ତଙ୍କଠାରୁ ଲୁକ୍‌କାୟିତ କରି ରଖିଥିଲେ, ସେହି ମନୋବୃତ୍ତିଟି ସେଇପରି ତାଙ୍କ କାବ୍ୟକଳାରେ ମଧ୍ୟ ଫୁଟି ଉଠିଥିଲା । ଗ୍ରୀକ୍ ସାହିତ୍ୟର ବିଷୟବସ୍ତୁ ଆହରଣ ତାଙ୍କ ସାହିତ୍ୟର ପରମ କୃତିତ୍ୱ ନୁହେଁ, ଏ ଆହୃତ ଉପାଦାନକୁ ସଜ୍ଞାନ ଚିତ୍ତରେ ଏକ ସମଗ୍ର ସୌନ୍ଦର୍ଯ୍ୟରେ ବିଭୂଷିତ କରିବା ହେଉଛି ତାଙ୍କର ସାର୍ଥକ କବି ପ୍ରତିଭା । ବିଦେଶୀ କଥାବସ୍ତୁ ଆହରଣ

ପ୍ରକ୍ରିୟାର ତିନୋଟି ବିଶିଷ୍ଟ ବିଭାଗ ବସ୍ତୁତଃ ପରିଲକ୍ଷିତ ହୁଏ । ଯଥା: ୧-ବିଦେଶୀ କଥାବସ୍ତୁର ଆହରଣ, ୨-ଏଦେଶର ଉପାଦାନ ଭିତରେ ଆହୃତ ଉପାଦାନର ସାମ୍ୟ ଅନୁସନ୍ଧାନ, ୩-ଏଇ ଉଭୟ ଉପାଦାନର ସାର୍ଥକ ସମୀକରଣ । ଉପରୋକ୍ତ କଥିତ ପାଞ୍ଚଟି କାବ୍ୟପାଇଁ ଯେଉଁ ବିଦେଶୀ କଥାବସ୍ତୁ ଆହରଣ କରିଛନ୍ତି ତାହା ରାଧାନାଥଙ୍କ ସଜ୍ଞାନ ଚିତ୍ତର ଏକ ଅଭିନବ ଉଦ୍ୟମ । ଗ୍ରୀକ୍ ସାହିତ୍ୟର ଅନେକ କାହାଣୀ ଭିତରୁ ଓଡ଼ିଶା ମାଟିରେ ସହଜରେ ମିଶିଯିବା ଭଳି କେତୋଟି ସୌନ୍ଦର୍ଯ୍ୟମୂଳକ କାହାଣୀ ବାଛିଛନ୍ତି । ଯେଉଁ ସବୁ କାହାଣୀ ସ୍ଥାନୀୟ ପରିବେଶ, ଇତିହାସ, ପୁରାଣ, କିମ୍ବଦନ୍ତୀ ଓ ଲୋକ ବିଶ୍ୱାସ ସଙ୍ଗେ ସଙ୍ଗେ ଓଡ଼ିଶାର ଭୌଗୋଳିକ ପରିସ୍ଥିତି ଓ ପ୍ରକୃତି ସହ ପୂର୍ଣ୍ଣ ସମୀକରଣ ହେଉଥିବ । ସେଥିପାଇଁ କବିଙ୍କ କାବ୍ୟସମୂହ ପାଠକଙ୍କ ନିକଟରେ ସର୍ବାଙ୍ଗ ସୁନ୍ଦର ଓ ବିଶ୍ୱାସଯୋଗ୍ୟ ହୋଇପାରିଛି । ତେବେ ଭୂଦେବ ବାବୁଙ୍କ ପରାମର୍ଶ ଓ ପୁରାତନକୁ ନୂତନ କରି ଗଢ଼ିବା ବିଷୟରେ ମେହେରଙ୍କ ନିକଟକୁ ଲିଖିତ ପତ୍ରରେ ରାଧାନାଥଙ୍କ ଶିଳ୍ପ ଚାତୁର୍ଯ୍ୟ ଆଭିମୁଖ୍ୟ ପ୍ରତିଫଳିତ । କାରଣ କବି ପୁରାତନରେ ନୂତନତାର ଅନୁସରଣ ଅପେକ୍ଷା ପ୍ରାଚୀନତାକୁ ଅସ୍ୱୀକାର କରି ପୁରାତନକୁ ଯେଉଁ ସମ୍ପୂର୍ଣ୍ଣ ରୂପ ଦେଇଛନ୍ତି, ତା'ର ଏକ ଅଭିନବ ପ୍ରକାଶ ହେଉଛି ପ୍ରାଥମିକ ସୃଷ୍ଟି 'କେଦାରଗୌରୀ' । ଏଥିରେ ରାଧାନାଥଙ୍କ କୃତିତ୍ୱ ଓ ସମୀକରଣ ସାର୍ଥକତା ସ୍ୱତଃ ପ୍ରତିପାଦିତ ।

ପରନ୍ତୁ 'ଚନ୍ଦ୍ରଭାଗା' ଲେଖିଲା ବେଳକୁ କବିଙ୍କର ଅନୁଭବ ଭିନ୍ନ ମୋଡ଼ରେ ଠିଆ ହେଉଛି । ଆହୃତ ଉପାଦାନରେ ସ୍ୱାତନ୍ତ୍ର୍ୟ ଓ ବ୍ୟତିକ୍ରମ ସମ୍ପାଦନ ନକଲେ ରଚନା ଯେ ଉଚ୍ଚକୋଟୀର ହୁଏ ନାହିଁ, ଏହି ସଚେତନତା(ଯାହାକି 'କେଦାରଗୌରୀ'ରେ ଅଭାବ) ହେତୁ ସେ 'ଚନ୍ଦ୍ରଭାଗା'ରେ କଥାବସ୍ତୁ ଭିତରେ ବ୍ୟତିକ୍ରମ ସହିତ ନୂତନ ଉପାଦାନ ସଂଯୋଗ କରିବାକୁ ବାଧ ହୋଇଛନ୍ତି । ପ୍ରଥମଟିରେ କିମ୍ବଦନ୍ତୀ ବା ଲୋକ ବିଶ୍ୱାସ ନଥିଲା, ଦ୍ୱିତୀୟଟିରେ ପୁରାଣର ଅନୁମୋଦନ ଓ ଇତିହାସର ଅବତାରଣା କରି ଆଦ୍ୟପ୍ରାନ୍ତ ଘୋର ମିଥ୍ୟାରେ ପରିପୂର୍ଣ୍ଣ କାବ୍ୟସୌଧ ନିର୍ମାଣ କରିଛନ୍ତି । ଅଥଚ ତୃତୀୟ କାବ୍ୟବେଳକୁ ଇତିହାସକୁ ନୂତନ ରୂପ ଦେବା ସଙ୍ଗେ ସଙ୍ଗେ ସ୍ଥାନ ବିଶେଷକୁ ନୂତନ ଅର୍ଥରେ ବିନିଯୋଗ କରିଛନ୍ତି । କାବ୍ୟସୃଷ୍ଟିର ଏହି କୌଶଳ ପ୍ରଥମ ଥର ପାଇଁ 'ନନ୍ଦିକେଶ୍ୱରୀ'ରେ ପ୍ରୟୋଗ କରିଛନ୍ତି । 'କେଦାରଗୌରୀ' ଓ 'ଚନ୍ଦ୍ରଭାଗା' ପଶ୍ଚାତରେ ଇତିହାସ, ପୁରାଣ କିମ୍ବା କିମ୍ବଦନ୍ତୀ କୌଣସିଟି ନଥିଲା । କିନ୍ତୁ ସେମାନଙ୍କୁ କବି ଯଥାକ୍ରମେ ଇତିହାସମୁଖୀ ଓ ପୁରାଣମୁଖୀ କରି ଦେଇଛନ୍ତି । ଅଥଚ 'ନନ୍ଦିକେଶ୍ୱରୀ'ରେ ସମ୍ପୂର୍ଣ୍ଣ ମିଥ୍ୟାକୁ ଇତିହାସର ଅଖଣ୍ଡ ସତ୍ୟ ବର୍ଣ୍ଣରେ ସମୁଜ୍ଜ୍ୱଳ କରି ଦେଇଛନ୍ତି । ଏପରି କାବ୍ୟପ୍ରକାଶରେ ପାଠକ ମହଲରେ ତୀବ୍ର ପ୍ରତିକ୍ରିୟା ପ୍ରକାଶ ପାଇଛି । ତେଣୁ ରାଧାନାଥ ତାଙ୍କ ଶିଳ୍ପ କୌଶଳକୁ ବଦଳାଇ ଦେଇଛନ୍ତି । ଏଠାରୁ ସମ୍ଭବତଃ କବି ବିଦେଶୀ କଥାବସ୍ତୁର ଆହରଣ ଉପରେ ଆଉ ପ୍ରାଧାନ୍ୟ ଦେଇନାହାଁନ୍ତି । କାରଣ ଏସବୁ ଆହରଣରେ ମୂଳଉତ୍ସ ସ୍ୱୀକୃତ ହୋଇଥିଲେ ପାଠକ ଚିତ୍ତରେ କୌଣସି ଅବାଞ୍ଛନୀୟ ପ୍ରତିକ୍ରିୟା ସୃଷ୍ଟି କରି ନଥାନ୍ତା । ପାଠକେ ଏପରି ସୃଷ୍ଟିର ଶିଳ୍ପ କୌଶଳ ଅନୁଭବ ନକରି କାବ୍ୟର ବାହ୍ୟରୂପ ପ୍ରତି ବୀତଶ୍ରଦ୍ଧ ହୋଇ ପଡ଼ିଛନ୍ତି । ମୂଳ ଉତ୍ସ ସ୍ୱୀକାର ନକରି ତାକୁ ଇତିହାସ, କିମ୍ବଦନ୍ତୀ କିମ୍ବା ପୁରାଣ ବୋଲି ପ୍ରଚାର କରିନେବା ସର୍ବାଦୌ ବିପଦସଙ୍କୁଳ । ରାଧାନାଥଙ୍କ ପ୍ରଥମ ପାଞ୍ଚଟି କାବ୍ୟ ଭାଗ୍ୟରେ ତାହା ହିଁ ଘଟିଛି । ଏଥିରେ ଏ ଦେଶ

ମାଟିରେ ବିଦେଶୀ ବିଷୟର ଆରୋପ ଥିଲା କବିଙ୍କ ସୃଷ୍ଟିର ଚରମ ଲକ୍ଷ୍ୟ । ଏହି ପାଞ୍ଚଟିରେ ଦେଶୀୟ ବାତାବରଣ ଯାହା ଅଛି ତାହା ତାଙ୍କ ସୃଷ୍ଟି ଲକ୍ଷ୍ୟରେ ସର୍ବାଦୌ ଅପ୍ରଧାନ । ସମୟକ୍ରମେ ତା'ର ବି ପରିବର୍ତ୍ତନ କରିଛନ୍ତି । ଫଳତଃ କବି ପୁରାଣସମ୍ମତ 'ଉଷା' କାବ୍ୟ ରଚନା କରିବାକୁ ପ୍ରୟାସୀ ହୋଇଛନ୍ତି । ଏଥିରେ ପୁରାଣ ପ୍ରେମାଖ୍ୟାନକୁ ନୂତନ ରୂପେ ଗଢ଼ିବା ସଙ୍ଗେ ସଙ୍ଗେ ପୁରାଣ ପ୍ରତିଷ୍ଠିତ ନାମର ନୂତନ ଅର୍ଥ ପ୍ରକାଶ କରିଛନ୍ତି । ଏଥିରେ ଆହରଣରେ ବ୍ୟତିକ୍ରମ ତଥା ସ୍ୱାତନ୍ତ୍ର୍ୟ କାବ୍ୟକୁ ଚମତ୍କାରିତା ଆଣି ଦେଇଛି । 'କେଦାରଗୌରୀ' ଓ 'ଚନ୍ଦ୍ରଭାଗା'ରେ ମୂଳଗଳ୍ପର ଅବିକଳ ଅନୁସରଣ ବେଳେ ଏଥିରେ ସୁନ୍ଦର ପରିକଳ୍ପନାରେ ଗଳ୍ପଟି ନିର୍ମିତ ହୋଇଛି । 'କେଦାରଗୌରୀ'ଠାରୁ 'ଉଷା' ପର୍ଯ୍ୟନ୍ତ ପ୍ରତ୍ୟେକ କାବ୍ୟ ପ୍ରଣୟମୂଳକ । ଏଥିରେ କବି ଚରିତ୍ର ଚିତ୍ରଣ ଉପରେ ବିଶେଷ ଧ୍ୟାନ ଦେଇନାହାଁନ୍ତି । ନିୟତି କିପରି ମଣିଷ ଜୀବନ-ପ୍ରବାହକୁ ନିୟନ୍ତ୍ରିତ କରି ସାର୍ଥକ କଳା ତିଆରି କରିପାରେ 'ପାର୍ବତୀ' କାବ୍ୟରେ ତା'ର ପ୍ରଥମ ପରୀକ୍ଷା କରିଛନ୍ତି । ଏହି କାବ୍ୟର ବିଷୟବସ୍ତୁ, ସୃଷ୍ଟିକୌଶଳ, ଗଠନ ପରିପାଟୀ ଆଦି ଗ୍ରୀକ୍ ସୃଷ୍ଟି ଆଦର୍ଶରେ ନିରୂପିତ ଓ ନିୟନ୍ତ୍ରିତ । ଅନ୍ୟାନ୍ୟ କାବ୍ୟ ପରି ଏହା ଘଟଣାବହୁଳ ନୁହେଁ ; ଏହା ମୁଖ୍ୟତଃ ଚରିତ୍ରମୂଳକ । ପାର୍ବତୀ କାବ୍ୟର ରୂପାୟନ କୌଶଳ ହିଁ କବିଙ୍କର ସାର୍ଥକ ପ୍ରତିଭାର ପରିଚୟ ଦିଏ ।

କବି ଅନୁଭବ କରିଥିଲେ ଉତ୍କୃଷ୍ଟ କାବ୍ୟ କେବଳ ବିଷୟ ବା ସୃଷ୍ଟି ପରିକଳ୍ପନାରେ ନୁହେଁ ରୂପାୟନ କୌଶଳରେ ହିଁ ଅଧିକ ନିର୍ଭର କରେ । ତେଣୁ ତା'ର ଉପଯୁକ୍ତ ପରୀକ୍ଷା 'ପାର୍ବତୀ'ରେ କରିଛନ୍ତି । ବିଦେଶୀ କଥାବସ୍ତୁ ସହ ବିଦେଶୀ ସାହିତ୍ୟ ସୃଷ୍ଟି ଆଦର୍ଶ ସମାନ ସ୍ଥାନ ଅଧିକାର କରିଛି ଏ କାବ୍ୟରେ । ବିଦେଶୀ କଥାବସ୍ତୁର ପୂର୍ଣ୍ଣ ଅନୁସରଣ ସର୍ବଦା ନିରାପଦ ନୁହେଁ । ତେଣୁ ଲୋକ ଚିତ୍ତରେ ଏ କାବ୍ୟ ନେଇ ପ୍ରତିକ୍ରିୟା ହେବା ସ୍ୱାଭାବିକ । ଏ ସମୟ ବେଳକୁ ରାଧାନାଥଙ୍କ ବିରୁଦ୍ଧରେ ୧୮୮୦ ଖ୍ରୀଷ୍ଟାବ୍ଦରୁ ଚାଲି ଆସୁଥିବା ଆନ୍ଦୋଳନ ଚରମ ସୀମାରେ ପହଞ୍ଚିଛି । 'ପାର୍ବତୀ' ଏ ସମୟରେ ଅଗ୍ନିରେ ଘୃତଭଳି ଯୋଗ ଦେଇଛି । ଫଳରେ କବିଚିତ୍ତ ଅଶାନ୍ତି ଓ ଅସୁସ୍ଥତାରେ ପୂର୍ଣ୍ଣ ହୋଇଛି । ଯେଉଁଥି ପାଇଁ 'ପାର୍ବତୀ' କାବ୍ୟ ଅସମ୍ପୂର୍ଣ୍ଣ ହୋଇ ରହିଛି । ତେଣୁ ତା'ପରେ କବି ଏ ଦେଶ ଭୂମିରୁ କଥାବସ୍ତୁ ସଂଗ୍ରହ କରି ବିଦେଶୀ ସାହିତ୍ୟ ସୃଷ୍ଟି ଆଦର୍ଶରେ ପରବର୍ତ୍ତୀ କାବ୍ୟକୁ ଲେଖିଛନ୍ତି । 'ଚିଲିକା' ତା'ର ପ୍ରଥମ ପରୀକ୍ଷା । କବିଙ୍କ ସୌନ୍ଦର୍ଯ୍ୟ ପିପାସାର ଏକ ସାର୍ଥକ ନିଦର୍ଶନ । ଏ କାବ୍ୟର ବିଷୟବସ୍ତୁ ପୂର୍ଣ୍ଣତଃ ଏ ଦେଶର, କିନ୍ତୁ ତା'ର ସୃଷ୍ଟି ପରିକଳ୍ପନା ଏ ଦେଶର ନୁହେଁ । ଏ ଦିଗରେ କବିଙ୍କର ଅନ୍ୟ ଏକ ସ୍ୱତନ୍ତ୍ର ପରୀକ୍ଷା ହେଉଛି 'ମହାଯାତ୍ରା' । ଏହାର କଥାବସ୍ତୁ ଏ ଦେଶର ହେଲେ ମଧ୍ୟ ବିଦେଶୀ କଥାବସ୍ତୁର ଆରୋପ ଅତି ବିଚକ୍ଷଣତାରେ କରିଛନ୍ତି । ଆମ ସାହିତ୍ୟରେ ପୁରାଣର ଇତିହାସ ବା ଇତିହାସରେ ପୁରାଣର ଆବିର୍ଭାବ ସର୍ବାଦୌ କଳ୍ପନାତୀତ । ଅଥଚ 'ମହାଯାତ୍ରା'ରେ ପୁରାଣ ଓ ଇତିହାସର ଏକତ୍ର ସମାବେଶ ବିଦେଶୀ ସୃଷ୍ଟି କଳ୍ପନାରୁ ସଞ୍ଜାତ ହେତୁ ସମ୍ଭବ ହୋଇଛି । ଅବଶ୍ୟ ପାଠକୀୟ ସନ୍ଦେହୀ ଚକ୍ଷୁ ଏ କାବ୍ୟକୁ ମଧ୍ୟ ସମାଲୋଚନା କରିଛି । ମହାଭାରତର ବିଷୟକୁ ନାମତଃ ଗ୍ରହଣ କରି ତା'ରି ଆଶ୍ରୟରେ ବିଦେଶୀ ସାହିତ୍ୟ ସୃଷ୍ଟିର ଆଦର୍ଶରେ ଏକ ସ୍ୱତନ୍ତ୍ର ଅଭିନବ କାବ୍ୟସୌଧ ନିର୍ମାଣ କରିଛନ୍ତି । ରାଧାନାଥଙ୍କ ବିରୁଦ୍ଧରେ ଲାଗିଥିବା ମସୀଯୁଦ୍ଧ 'ମହାଯାତ୍ରା'କୁ ମଧ୍ୟ ଅସଂପୂର୍ଣ୍ଣ କରିଛି । ତପ୍ରେ କବି 'ଯଯାତି' ଓ 'ଦରବାର' ଲେଖିଛନ୍ତି । 'ମସୀଯୁଦ୍ଧ' ହେତୁ

ସ୍ରଷ୍ଟା 'ଯଯାତି'ରେ ପୂର୍ବ ଅନୁସୃତ ସୃଷ୍ଟି କୌଶଳକୁ ପୁନଃ ଅବଲମ୍ବନ କରିବାକୁ ବାଧ ହୋଇଛନ୍ତି । ଏ କାବ୍ୟ କବିଙ୍କ ପ୍ରତିଭାର ବିପର୍ଯ୍ୟୟ ରୂପେ ପରିଚୟ ବହନ କରିଛି । ଏ ସମୟରେ ବି କବି ବ୍ୟଙ୍ଗ କାବ୍ୟ 'ଦରବାର' ଲେଖିଛନ୍ତି । ବ୍ୟଙ୍ଗ କବିତା ଅନେକ ସମୟରେ ଅସୁସ୍ଥ ମନର ପରିଚାୟକ । କବି ମାନସିକ ଗ୍ଲାନିରେ, ମାନସିକ ତିକ୍ତତାରେ ଏ କାବ୍ୟ ରଚନା କରିଛନ୍ତି । ବିଦେଶୀ ସାହିତ୍ୟ ଆଦର୍ଶରେ ଏ ଆଙ୍ଗିକ ଓଡ଼ିଆ ସାହିତ୍ୟକୁ ଆଣିଛନ୍ତି । ବ୍ୟକ୍ତିଗତ ବା ସାମାଜିକ ପୃଷ୍ଠଭୂମି ଉପରେ ସମାଲୋଚନା ଲକ୍ଷ୍ୟରେ ବ୍ୟଙ୍ଗ ବିଦ୍ରୂପ ପରିବେଷଣ କରିବା ଏ ପ୍ରକାର ସାହିତ୍ୟର ଲକ୍ଷ୍ୟ । ଉପେନ୍ଦ୍ର-ରାଧାନାଥ ବିବାଦବେଳେ ରାଧାନାଥଙ୍କର ତୀବ୍ର ଚିତ୍ତ ବିକ୍ଷୋଭ ଏଥିରେ ଲିପିବଦ୍ଧ । କବିଙ୍କର ତୀବ୍ର ଜାତୀୟବୋଧ ଓ ସାମାଜିକ ଅଧଃପତନର ଚିତ୍ର ଏଥିରେ ମଧ ପ୍ରକାଶିତ ।

ସ୍ଥୂଳତଃ ଉଭୟ ସର୍ଜନ ତଥା ଶିଳ୍ପ କୌଶଳ ପଛରେ ଥିବା କବିଙ୍କର ମାନସିକତାକୁ ଡଃ ସାମନ୍ତରାୟ ଯେପରି ବିଚାର କରିଛନ୍ତି, ତାହା ରାଧାନାଥ ସାହିତ୍ୟ ଅବବୋଧର ଏକ ନୂତନ ଅଧ୍ୟାୟ ଆରମ୍ଭ କରିଛି । ସେଥିପାଇଁ କବିଙ୍କ ସାହିତ୍ୟ ଆଲୋଚନା ପରିପ୍ରେକ୍ଷୀରେ ଆଲୋଚକଙ୍କ ସ୍ଥାନ ସ୍ୱତନ୍ତ୍ର । ଆଧୁନିକ ସାହିତ୍ୟ ସୃଷ୍ଟି କରିବା ଏବଂ ତା'ର ବହୁଳ ପ୍ରଚାର ପ୍ରସାର କରିବାରେ କବିଙ୍କର ଯେଉଁ ଅପାର କର୍ମଶକ୍ତି, ପ୍ରଖରମେଧା, ଆକର୍ଷକ ବ୍ୟକ୍ତିତ୍ୱ, ଏକାଗ୍ରତା ଏବଂ ନିଷ୍ଠା ଡଃ ସାମନ୍ତରାୟଙ୍କ ରାଧାନାଥୀୟ ସମାଲୋଚନା ପଢ଼ିଲେ ଅନୁଭବ କରିହୁଏ । ବିଭିନ୍ନ ଦୃଷ୍ଟିକୋଣରୁ କବିଙ୍କ ସାହିତ୍ୟ ଆଲୋଚନା କରି ତାଙ୍କ ସମ୍ବନ୍ଧରେ ସମସ୍ତ ଦ୍ୱନ୍ଦ୍ୱକୁ ସହୃଦୟତାର ସହ ସମାଧାନ କରି କବିଙ୍କ ପ୍ରତିଭାର ଜୟଗାନ କରିଛନ୍ତି । ଡଃ ସାମନ୍ତରାୟଙ୍କର କବିଙ୍କ ସର୍ମକୀୟ ଆଲୋଚନା ପଢ଼ିଲେ ପାଠକ ଯେପରି ମନେକରେ କବି ରାଧାନାଥ ଡଃ ସାମନ୍ତରାୟ ରୂପରେ ଜନ୍ମଲାଭ କରି ତାଙ୍କର କାବ୍ୟଜନିତ ମନକଥା ପ୍ରକାଶ କରି ଦେଇଛନ୍ତି ।

*ଓଡ଼ିଆ ଅଧ୍ୟାପକ,*
*ସରକାରୀ ଜନିଷ୍ଠ ମହାବିଦ୍ୟାଳୟ, ଅନୁଗୁଳ*

## ନଟବର ବାଣୀ

ମୌଳିକ ସୃଷ୍ଟି, ଉନ୍ନତ ସମାଲୋଚନା ଓ ଗଭୀର ଗବେଷଣା-ଏ ସମସ୍ତଙ୍କ ଏକୀଭୂତ ପରିପ୍ରକାଶ ଭିତରେ ଗୋଟିଏ ଜାତିର ସାହିତ୍ୟ ଯଥାର୍ଥତଃ ସୁପ୍ରତିଷ୍ଠିତ ହୋଇଥାଏ ।

*ଓଡ଼ିଆ ସାହିତ୍ୟକୁ ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ଦାନ (୧୯୭୦) ପୃ ୨*

# ସାହିତ୍ୟିକ ଗବେଷଣା : ବିପ୍ଳବର ଅଗ୍ରଦୂତ

## (‘ଓଡ଼ିଆ ସାହିତ୍ୟର ଇତିହାସ’ର ଆଲୋଚନା)

*ଡଃ ପ୍ରସନ୍ନ କୁମାର ମହାନ୍ତି*

ସ୍ୱାଧୀନତା ପରବର୍ତ୍ତୀ କାଳରେ ଓଡ଼ିଆ ସାହିତ୍ୟର ଗବେଷଣା ଓ ସମାଲୋଚନା କ୍ଷେତ୍ରରେ ସର୍ବାଧିକ ସମ୍ମାନିତ ନାମଟି ଯେ ଡଃ ନଟବର ସାମନ୍ତରାୟଙ୍କର ଏଥିରେ ଦ୍ୱିରୁକ୍ତି ନାହିଁ । ସାହିତ୍ୟିକ ଗବେଷଣା - ସମାଲୋଚନାର ଦୁଇଟି ସବୁଠାରୁ ତାତ୍ପର୍ଯ୍ୟପୂର୍ଣ୍ଣ ବୈଜ୍ଞାନିକ ବିଭାବ ଡଃ ସାମନ୍ତରାୟଙ୍କ ସାଧନାରେ ସୁପ୍ରତିଷ୍ଠିତ ହୋଇଥିଲା । ସଂକ୍ଷେପରେ ସେ ଦୁଇଟି ହେଉଛି : ଇତିହାସ ଅନୁସନ୍ଧାନରେ ମୌଳିକ ଉପାଦାନ ଓ ପ୍ରାମାଣିକ ତଥ୍ୟ ସମୂହକୁ ଆଧାର କରି ସତ୍ୟର ନିକଟତର ହେବା ଏବଂ ତଥ୍ୟମାନଙ୍କୁ କେବଳ ସଂଗ୍ରାହକ ପରି ନୀରବରେ ଉପସ୍ଥାପିତ ନକରି ସେ ସବୁ ଆଧାରରେ ନିଜର ଗଭୀର ମନନଶୀଳତା ଦ୍ୱାରା ଅନ୍ୟାନ୍ୟ ତାତ୍ପର୍ଯ୍ୟପୂର୍ଣ୍ଣ ଆନୁଷଙ୍ଗିକ ପ୍ରସଙ୍ଗର ସ୍ୱରୂପ ସନ୍ଧାନ କରି ନିଷ୍କର୍ଷରେ ଉପନୀତ ହେବା ।

ଲୋକ ସାହିତ୍ୟଠାରୁ ଆରମ୍ଭ କରି ପ୍ରାଚୀନ, ମଧ୍ୟଯୁଗୀୟ ଓ ଆଧୁନିକ ସାହିତ୍ୟର ଗବେଷଣାତ୍ମକ ଆଲୋଚନା ତଥା ଓଡ଼ିଆ ସାହିତ୍ୟର ଇତିହାସ ସଙ୍କଳନ ପରି ସାହିତ୍ୟର ଆମୂଳାନ୍ତ ଆୟତନ ଅକଳନରେ ଡଃ ସାମନ୍ତରାୟଙ୍କ ଲେଖନୀ ସ୍ୱକୀୟ ସ୍ୱାତନ୍ତ୍ର୍ୟର ସ୍ପଷ୍ଟ ପରିଚୟ ଲିପିବଦ୍ଧ କରିଯାଇଛି । ତାଙ୍କର ରଚିତ ପ୍ରତ୍ୟେକଟି ପୁସ୍ତକ ଉଚ୍ଚକୋଟୀର ଗବେଷଣା ଓ ସମାଲୋଚନାର ଯେ କୌଣସି ମାନଦଣ୍ଡରେ ଅନନ୍ୟ ହୋଇଥିଲେ ହେଁ ‘ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩-୧୯୨୦)’ ଗ୍ରନ୍ଥଟିରେ ତାଙ୍କ ଗବେଷକୀୟ ପ୍ରତିଭା ଓ ମନନଶୀଳତାର ସର୍ବଶ୍ରେଷ୍ଠ ପ୍ରତିଫଳନ ସଂରକ୍ଷିତ ହୋଇଛି ବୋଲି କୁହାଯାଇ ପାରେ ।

୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜମାନଙ୍କ ଦ୍ୱାରା ଓଡ଼ିଆ କବଳିତ ହେବା ଆମ ଜାତିର ଇତିହାସରେ କେବଳ ଏକ ରାଜନୈତିକ ଘଟଣା ଭାବରେ ସୀମାବଦ୍ଧ ହୋଇ ଆଦୌ ରହିନଥିଲା । ଆମ ଭାଷା, ସାହିତ୍ୟ, ଶିକ୍ଷା, ସଂସ୍କୃତି, ଧର୍ମ, ଦର୍ଶନ ଆଚାର ବିଚାର ତଥା ସାମାଜିକ ଜୀବନଚର୍ଯ୍ୟାକୁ ମଧ୍ୟ ଏହା ପ୍ରଶସ୍ତ ଭାବେ ପ୍ରଭାବିତ କରିଥିଲା । ଇଂରେଜମାନଙ୍କର ଓଡ଼ିଶା ଅଧିକାରଠାରୁ ପରବର୍ତ୍ତୀ ଏକ ଶହ ବର୍ଷର ଓଡ଼ିଆ ସାହିତ୍ୟ ଏ ଦୃଷ୍ଟିରୁ ଏକାନ୍ତ ଗୁରୁତ୍ୱପୂର୍ଣ୍ଣ । ଡଃ ସାମନ୍ତରାୟ ଏହି ସମୟର ସାହିତ୍ୟିକ ଇତିହାସ ଅନୁଶୀଳନ କରିବାକୁ ଯାଇ ଅତ୍ୟନ୍ତ ଯୋଜନାବଦ୍ଧ ଭାବେ ସମଗ୍ର ପ୍ରେକ୍ଷାପଟର ତନ୍ନ ତନ୍ନ ପରୀକ୍ଷଣ କରିଛନ୍ତି ଏବଂ ପ୍ରଥମେ ମୌଳିକ ତଥ୍ୟମାନ ସଂଗ୍ରହ କରି ନିଜ ବିଶ୍ଳେଷଣର ଆଧାର ଭାବେ ସେସବୁକୁ ଅବସ୍ଥାପିତ କରିଛନ୍ତି ।

'ଓଡ଼ିଆ ସାହିତ୍ୟର ଇତିହାସ' ଗ୍ରନ୍ଥଟି ଡଃ ନଟବର ସାମନ୍ତରାୟଙ୍କ ପିଏଚ୍.ଡି. ଗବେଷଣା ସନ୍ଦର୍ଭ । ଏହାକୁ ଗବେଷକ ସମୁଦାୟ ତେରଟି ପରିଚ୍ଛେଦରେ ବିଭକ୍ତ କରିଛନ୍ତି । ପ୍ରଥମ ପାଞ୍ଚଟି ପରିଚ୍ଛେଦରେ ଓଡ଼ିଶାର ରାଜନୈତିକ, ସାମାଜିକ ଓ ଧର୍ମଗତ ଜୀବନଧାରା, ଆଧୁନିକ ଶିକ୍ଷାର ପ୍ରସାର ଓ ପରିଣତି, ଆଧୁନିକ ପାଠ୍ୟପୁସ୍ତକ ରଚନା, ଇଂରାଜୀ ଶିକ୍ଷିତ ନୂତନ ସମ୍ପ୍ରଦାୟର ଅଭ୍ୟୁଦୟ, ଓଡ଼ିଆ ଭାଷା ଉଚ୍ଛେଦ ଚକ୍ରାନ୍ତ ଆଦି ସମ୍ବନ୍ଧରେ ନାନା ପ୍ରାମାଣିକ ତଥ୍ୟ ଆଧାରିତ ଯୁକ୍ତିନିଷ୍ଠ ମନନଶୀଳ ଆଲୋଚନା କରି ପରବର୍ତ୍ତୀ ପରିଚ୍ଛେଦ ମାନଙ୍କରେ ଆଧୁନିକ ଓଡ଼ିଆ ସାହିତ୍ୟର ବିକାଶର ବିଭିନ୍ନ ପର୍ଯ୍ୟାୟର ବିଚାର କ୍ରମେ ଗଳ୍ପ, ଉପନ୍ୟାସ, ନାଟକ, କବିତା, ପ୍ରବନ୍ଧ, ସମାଲୋଚନା ଆଦି ସାହିତ୍ୟିକ ବିଭାଗମାନଙ୍କର ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନା କରିଛନ୍ତି । ଆଧୁନିକ କାଳର ସାରସ୍ୱତ ସ୍ରଷ୍ଟାମାନଙ୍କ ମଧ୍ୟରୁ ତିନି ପ୍ରମୁଖ ସାରସ୍ୱତ ସାଧକ ରାଧାନାଥ, ମଧୁସୂଦନ ଓ ଫକୀରମୋହନଙ୍କୁ ତିନୋଟି ସ୍ୱତନ୍ତ୍ର ପରିଚ୍ଛେଦରେ ବିସ୍ତୃତ ଭାବେ ନଟବର ଆଲୋଚନା କରିଥିବା ସ୍ଥଳେ ଅନ୍ୟ ସମକାଳୀନ ଲେଖକଙ୍କ ସମ୍ବନ୍ଧିତ ଆଲୋଚନା ଅପେକ୍ଷାକୃତ ସୀମିତ ପରିସରରେ ସମ୍ପନ୍ନ କରିଛନ୍ତି । ଉପର୍ଯ୍ୟୁକ୍ତ ତିନିଜଣ ସାହିତ୍ୟିକଙ୍କ ବ୍ୟତୀତ ନାଟ୍ୟକାର ରାମଶଙ୍କର ରାୟଙ୍କ ସମ୍ପର୍କରେ ମଧ୍ୟ ତାଙ୍କର ଆଲୋଚନା ବେଶ୍ ସମ୍ପ୍ରସାରିତ । ତାଙ୍କ ଆଲୋଚନାରେ ସର୍ବତ୍ର ଗଭୀର ଅନୁସନ୍ଧିତ୍ସା, ଶାଣିତ ବିଚାରବୋଧ ତଥା ଯୁକ୍ତିସିଦ୍ଧ ଅନୁଶୀଳନର ଔଜ୍ଜ୍ୱଲ୍ୟ ପ୍ରକଟିତ ହୋଇଛି ।

ଇଂରେଜମାନଙ୍କର ଓଡ଼ିଶା ଅଧିକାର ଏବଂ ଓଡ଼ିଆ ସାହିତ୍ୟରେ ଆଧୁନିକ ଯୁଗ ପ୍ରତିଷ୍ଠାର ଇତିହାସ ଖୁବ୍ ବେଶିଦିନ ତଳର କଥା ନୁହେଁ । ଅଥଚ ଓଡ଼ିଆ ସାହିତ୍ୟର ପ୍ରାଚୀନ ଓ ମଧ୍ୟଯୁଗୀୟ ସାହିତ୍ୟର ପୃଷ୍ଠଭୂମି ତଥା କବି ଓ କବିକୃତି ସମୂହର ଆଲୋଚନାର ବ୍ୟାପକତା ତୁଳନାରେ ଆଧୁନିକ ସାହିତ୍ୟର ଆଲୋଚନା ଡଃ ସାମନ୍ତରାୟଙ୍କ ପର୍ଯ୍ୟନ୍ତ ଥିଲା ଅତି ସୀମିତ । ଆଧୁନିକ ଯୁଗ ପ୍ରତିଷ୍ଠାର ପୃଷ୍ଠଭୂମି ଓ ସେ ଯୁଗୀୟ ସାହିତ୍ୟର ବିକାଶଧାରା ନାନା ତାତ୍ପର୍ଯ୍ୟପୂର୍ଣ୍ଣ ଐତିହାସିକ ଘଟଣା-ଦୁର୍ଘଟଣାରେ ଏକାନ୍ତ ଜଟିଳ । ପୂର୍ବବର୍ତ୍ତୀ ଯୁଗମାନଙ୍କର ସାହିତ୍ୟିକ ଆଙ୍ଗିକ ଆତ୍ମିକ ବିଚାରରେ ପାଶ୍ଚାତ୍ୟ ସାହିତ୍ୟ ପ୍ରଭାବିତ ଆଧୁନିକ ଯୁଗର ସାହିତ୍ୟ ଥିଲା ସଂପୂର୍ଣ୍ଣଭାବେ ନାନା ନୂତନତା ମଣ୍ଡିତ ଏବଂ ବହୁବିଧ ବୈଚିତ୍ର୍ୟରେ ପରିପୂର୍ଣ୍ଣ । ନୂତନ ଭାବଭୂମି, ନୂତନ ଆଙ୍ଗିକ, ନୂତନ ସୃଷ୍ଟିକୌଶଳ ତଥା ବହୁ ନୂତନ ସାହିତ୍ୟିକ ବିଭାଗର ଉପୋଦ୍‌ଘାତର ସମୟ ଥିଲା ଓଡ଼ିଆ ସାହିତ୍ୟର ଆଧୁନିକ ଯୁଗ । ସର୍ବୋପରି ଓଡ଼ିଆ ଭାଷାର ସୁରକ୍ଷା ମଧ୍ୟ ନାନା ଭାବରେ ଏହି ସମୟରେ ବିପନ୍ନ ହୋଇ ପଡ଼ିଥିଲା ଏବଂ ବହୁ ଘାତ ପ୍ରତିଘାତ ମଧ୍ୟରେ ନିଜର ଅସ୍ତିତ୍ୱ ଓ ସ୍ୱାତନ୍ତ୍ର୍ୟ ଜାହିର୍ କରିବାକୁ ଏହା ସମର୍ଥ ହୋଇଥିଲା । କେତେକ ବଙ୍ଗୀୟ ଓ ଇଂରେଜଙ୍କ ଦ୍ୱାରା ଓଡ଼ିଆ ଭାଷା ସଙ୍କଟର ଆବର୍ତ୍ତରେ ଶ୍ୱାସରୁଦ୍ଧ ହୋଇ ପଡ଼ିଥିବା ବେଳେ ଆଉ କିଛି ବଙ୍ଗୀୟ ଓ ଇଂରାଜୀ ଓଡ଼ିଆମାନଙ୍କ ସହ ହାତ ମିଳାଇ ଏ ଭାଷାକୁ ଉକ୍ତ ସଙ୍କଟ କବଳରୁ ଉଦ୍ଧାର ମଧ୍ୟ କରିଥିଲେ । ଏସବୁ ଘଟଣାବହୁଳତା କେବଳ କାହାଣୀତୁଲ୍ୟ ବର୍ଣ୍ଣନା କରାଯିବାର ବିଷୟ ନଥିଲା । ନାନା ତଥ୍ୟ ଓ ଅନ୍ୟାନ୍ୟ ଉପାଦାନ ଯୋଗେ ଏସବୁ ଘଟଣାର ଐତିହାସିକ ସତ୍ୟତା ଓ ଗ୍ରହଣଯୋଗ୍ୟତା ପ୍ରତିଷ୍ଠିତ କରାଯିବାର କୌଣସି ବିକଳ୍ପ ନଥିବା ସ୍ୱାଭାବିକ । ଗବେଷକ ଡଃ ସାମନ୍ତରାୟ ଯେପରି ପୂର୍ଣ୍ଣାଙ୍ଗ ଭାବେ ଉକ୍ତ ଐତିହାସିକ ପ୍ରେକ୍ଷାପଟର

ସଂଶ୍ଳେଷଣ ଓ ଆକଳନ କରିଛନ୍ତି ତାହା ପ୍ରକୃତରେ ବିସ୍ମୟକର ଓ ପ୍ରଶଂସନୀୟ ।

'ଆଧୁନିକ ଓଡ଼ିଆ ସାହିତ୍ୟର ଇତିହାସ' ପ୍ରଣୟନ କରିବା ଲାଗି ଡଃ ସାମନ୍ତରାୟ ୧୯୫୧ ମସିହାରୁ ୧୯୬୩ ମସିହା ବ୍ୟାପୀ ଦୀର୍ଘ ୧୨ ବର୍ଷଧରି ଗଭୀର ଏକାଗ୍ରତାର ସହ ଗବେଷଣା ମଗ୍ନ ଥିଲେ ଓ ବିଭିନ୍ନ ପ୍ରକାର ଉପାଦାନ ସଂଗ୍ରହରେ ଲାଗି ପଡ଼ିଥିଲେ । ଐତିହାସିକ ପରମାନନ୍ଦ ଆଚାର୍ଯ୍ୟଙ୍କର ବାରିପଦାସ୍ଥିତ ବାସଭବନ ପାଠାଗାରରୁ ଉତ୍କଳ ସାହିତ୍ୟ, ଉତ୍କଳ ପ୍ରଭା, ମୁକୁର, ସହକାର, ନବଭାରତ ପ୍ରଭୃତି ପତ୍ରିକାର ପୁରୁଣା ସଂଖ୍ୟାମାନ ପଢ଼ିବାର ସୁଯୋଗ ନଟବର ପାଇଥିଲେ । ତା'ଛଡ଼ା ଭୁବନେଶ୍ୱରସ୍ଥିତ ଓଡ଼ିଶା ମ୍ୟୁଜିୟମ୍ ପାଠାଗାର, କଟକ ରେଭିନ୍ୟୁ ବୋର୍ଡ ପାଠାଗାର ଓ ଅଭିଲେଖାଗାର, କଟକ ଟ୍ରେନିଂ କଲେଜ ଓ ଟ୍ରେନିଂ ସ୍କୁଲ ପାଠାଗାର, ଉତ୍କଳ ସାହିତ୍ୟ ସମାଜ ପାଠାଗାର ପ୍ରଭୃତି ବହୁ ଗ୍ରନ୍ଥାଗାର ତାଙ୍କର ଗବେଷଣାଗାରରେ ପରିଣତ ହୋଇଥିଲା ।

ଡଃ ନଟବର ସାମନ୍ତରାୟ ଭାଷା-ସାହିତ୍ୟର ଗବେଷଣାରେ ଯେଉଁସବୁ ନୂତନ ଦିଗନ୍ତ ଉନ୍ମୋଚନ କରି ନିଜର ବହୁ ସଂଖ୍ୟକ ଗ୍ରନ୍ଥମାନଙ୍କରେ ପ୍ରଦର୍ଶିତ କରିଥିଲେ ସେ ସମସ୍ତ ତାଙ୍କର 'ଓଡ଼ିଆ ସାହିତ୍ୟର ଇତିହାସ' ଗ୍ରନ୍ଥରେ ଯୁଗପତ୍ ପ୍ରତିଫଳିତ ହୋଇଛି ବୋଲି କୁହାଯାଇପାରେ । ପ୍ରଥମତଃ ଗବେଷଣା ଲାଗି ଚିହ୍ନିତ ସମୟାତନର ରାଜନୈତିକ ଓ ପ୍ରାକୃତିକ ପରିସ୍ଥିତିର ଗଭୀର ଅନୁଶୀଳନ ଆବଶ୍ୟକତା ଅନୁଯାୟୀ ଅପରିହାର୍ଯ୍ୟ ବୋଲି ଡଃ ସାମନ୍ତରାୟ ଏଥିରେ ଦେଖାଇ ଦେଇଛନ୍ତି । କାରଣ ଏସବୁ ଘଟଣା ପ୍ରବାହ ଓ ପ୍ରେକ୍ଷାପଟ ସାହିତ୍ୟ ଓ ତା'ର ବିକାଶଧାରାକୁ ବିଭିନ୍ନ ପ୍ରକାରେ ପ୍ରଭାବିତ କରିଥାଏ । ଦ୍ୱିତୀୟତଃ ଉକ୍ତ ଐତିହାସିକ ସଂଶ୍ଳେଷଣ କେବଳ ଜନଶ୍ରୁତି ବା ଅନ୍ୟାନ୍ୟ ଲେଖକଙ୍କ ଲେଖାକୁ ଭିତ୍ତିକରି ସମ୍ପନ୍ନ ନକରି ଡଃ ସାମନ୍ତରାୟ ସେ ସବୁ ତାତ୍ପର୍ଯ୍ୟପୂର୍ଣ୍ଣ ଘଟଣାକ୍ରମର ବ୍ୟବଚ୍ଛେଦ ଲାଗି ମୌଳିକ ପ୍ରାମାଣିକ ତଥ୍ୟ ସମୂହକୁ ପ୍ରଧାନ ଉପାଦାନ ଭାବେ ସନ୍ଧାନ କରିଥିଲେ । ତୃତୀୟରେ କେବଳ ମୌଳିକ ତଥ୍ୟାବଳୀ ସଂଗ୍ରହ କରି ସେ ସନ୍ତୁଷ୍ଟ ହେଉ ନଥିଲେ ଏବଂ ସେଗୁଡ଼ିକର ସାଧାରଣ ଗ୍ରାହ୍ୟ ସ୍ଥୂଳ ପ୍ରଭାବ ଓ ପରିଣତିରେ ହିଁ ଗବେଷଣାର ପରିସମାପ୍ତି ବୋଲି ଆଦୌ ସ୍ୱୀକାର କରୁନଥିଲେ । ତଥ୍ୟମାନଙ୍କୁ ନେଇ ନିଜର ଗଭୀର ବ୍ୟାଖ୍ୟା, ମନନ ଓ କଳ୍ପନାକୁ ବିଭିନ୍ନ ସମ୍ଭାବ୍ୟ ଦିଗରେ ନିୟୋଜିତ କରି ସେ ଆନୁଷଙ୍ଗିକ ତଥ୍ୟମାନଙ୍କ ଆଡ଼କୁ ହାତ ବଢ଼ାଉଥିଲେ ଏବଂ କୌଣସି ଘଟଣା ପ୍ରବାହର ଚତୁଃପାର୍ଶ୍ୱରେ ଥିବା ଯାବତୀୟ ସମ୍ବନ୍ଧାନ୍ୱିତ ଦିଗର ପୁଙ୍ଖାନୁପୁଙ୍ଖ ସଂଶ୍ଳେଷଣ ପରେ ଯାଇ ସେ ନିଜର ଅନ୍ତିମ ନିଷ୍କର୍ଷ ନିର୍ଣ୍ଣୟ କରୁଥିଲେ । ଭାଷାରେ ସର୍ଜନଶୀଳ ଲାଳିତ୍ୟ ତାଙ୍କର ଅନ୍ୟ ଏକ କୃତିତ୍ୱ ।

'ଓଡ଼ିଆ ସାହିତ୍ୟର ଇତିହାସ' ଗ୍ରନ୍ଥ ସୁଚିନ୍ତିତ ଯୋଜନାବଦ୍ଧ ବିଷୟ ବିନ୍ୟାସ ସହ ଚିହ୍ନିତ କାଳର ପୂର୍ଣ୍ଣାବୟବ ଆୟତନକୁ ନେଇ ଅସାମାନ୍ୟ ସାଫଲ୍ୟ ସହ ରଚିତ । ପ୍ରାରମ୍ଭରୁ ଗବେଷକ ପ୍ରାକ୍ ଇଂରାଜୀ ଶାସିତ ଓଡ଼ିଶାର ରାଜନୈତିକ ପ୍ରେକ୍ଷାପଟର ନିର୍ଭୁଲ ଆକଳନ କରିଛନ୍ତି । ୧୫୬୯ ଖ୍ରୀଷ୍ଟାବ୍ଦରୁ ଓଡ଼ିଶା ପ୍ରଥମେ ମୋଗଲମାନଙ୍କ ଦ୍ୱାରା ଏବଂ ତା'ପରେ ମରହଟ୍ଟାମାନଙ୍କ ଦ୍ୱାରା ଶାସିତ ହୋଇ କିପରି ଅରାଜକତାର ଲୀଳାଭୂମି ସାଜିଥିଲା ତାହା ସେ ଦର୍ଶାଇଛନ୍ତି । ପଞ୍ଚଦଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ଯେଉଁ ଉତ୍କଳ ଗୌରବର ଚରମ

ସୀମାରେ ଉପନୀତ ହୋଇଥିଲା ତାହାର ବିଡ଼ମ୍ବନା ଓ ବିପର୍ଯ୍ୟୟର ତଥ୍ୟାଶ୍ରିତ ଚିତ୍ର ସେ ପ୍ରଦାନ କରିଛନ୍ତି । ଏହା ପରେ ବ୍ରିଟିଶ ଶାସନକାଳ ଓ ଶାସନ ବ୍ୟବସ୍ଥାର ଚିତ୍ର ଦେବାକୁ ଯାଇ ସେ ବହୁ ପ୍ରାମାଣିକ ତଥ୍ୟ ମୂଳ ଉତ୍ସ ସହିତ ବଳିଷ୍ଠ ଭାବେ ପରିବେଷଣ କରିଛନ୍ତି । ୧୮୧୭ ମସିହାର ପାଇକ ବିଦ୍ରୋହ, ୧୮୬୬ର ନଅଙ୍କ ଦୁର୍ଭିକ୍ଷ, ସେଇ ବର୍ଷର ଭୟଙ୍କର ବନ୍ୟା, ଓଡ଼ିଆ ଭାଷା ଆନ୍ଦୋଳନ, ମିଶନାରିମାନଙ୍କର ବିଭିନ୍ନ କ୍ଷେତ୍ରରେ ଅବଦାନ, ଆଧୁନିକ ଇଂରାଜୀ ଶିକ୍ଷା, ବ୍ରାହ୍ମଧର୍ମର ପ୍ରଚାର, ଓଡ଼ିଆ ଅଭିଧାନ ଓ ବ୍ୟାକରଣ ରଚନା, ପାଠ୍ୟ ପୁସ୍ତକ ପ୍ରଣୟନ, ଓଡ଼ିଆ ସମ୍ବାଦପତ୍ର ଓ ପତ୍ରପତ୍ରିକାର ପ୍ରକାଶନ, ଆଧୁନିକ ସାହିତ୍ୟର ଭିତ୍ତିସ୍ଥାପନ ପ୍ରଭୃତି ଏହି ଗବେଷଣା ସନ୍ଦର୍ଭର ବିଭିନ୍ନ ସୋପାନ । ଡଃ ସାମନ୍ତରାୟ ସତର୍କତାର ସହ ଅନୁସନ୍ଧାନ ଓ ଅନୁଶୀଳନ କରିଯିବା ସମୟରେ ଦୁର୍ଲଭ ମହାର୍ଘ ତଥ୍ୟ ସମୂହର ଉପସ୍ଥାପନା ଦ୍ୱାରା ନିଜ ମତକୁ ଅଧିକତର ସୁପ୍ରତିଷ୍ଠିତ ଓ ଗ୍ରହଣଯୋଗ୍ୟ କରିଛନ୍ତି ।

କବିବର ରାଧାନାଥ ରାୟଙ୍କୁ ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରଥମ ଭିତ୍ତି ସଂସ୍ଥାପକ ଭାବେ ଅଭିହିତ କରି ଡଃ ସାମନ୍ତରାୟ ତାଙ୍କ ମତକୁ ନାନା ବଳିଷ୍ଠ ଯୁକ୍ତି ଓ ତଥ୍ୟ ଦ୍ୱାରା ପ୍ରତିଷ୍ଠିତ କରିଛନ୍ତି । ସପ୍ତମ ପରିଚ୍ଛେଦର ନାମ ସେ ରଖିଛନ୍ତି 'ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ'। ରାଧାନାଥ ନିଜ ସାହିତ୍ୟର ଯଥାର୍ଥ ସୃଷ୍ଟି-ଉତ୍ସ ସମ୍ପର୍କରେ କିପରି ପ୍ରାୟତଃ ନୀରବ ରହିଛନ୍ତି ଏବଂ କଦବା କେଉଁଠି ଯେତେବେଳେ ସେ ସମ୍ପର୍କରେ କିଛି ଉଚ୍ଚାରଣ କରିଛନ୍ତି ସେଠାରେ କିପରି ସେ ସତ୍ୟକୁ ଠିକ୍ ଭାବେ ପ୍ରକାଶ କରିନାହାନ୍ତି ତାହା ମଧ୍ୟ ଦେଖାଇ ଦେବାରେ ନଟବର କୁଣ୍ଠା କରି ନାହାନ୍ତି । 'କେଦାରଗୌରୀ' କାବ୍ୟର ବିଷୟବସ୍ତୁ ନେଇ ନାନା ବିବାଦ ମୁଣ୍ଡ ଟେକିବାରୁ କାବ୍ୟଟି ସେକ୍ସପିୟରଙ୍କ 'ପିରାମସ୍ ଆଣ୍ଡ୍ ଥିସ୍‌ବି' କବିତାରୁ ଅନୂଦିତ ହୋଇଛି ବୋଲି ରାଧାନାଥ ଲେଖିଥିଲେ । ମାତ୍ର ନଟବର କହିଛନ୍ତି: ''ସେକ୍ସପିୟରଙ୍କ 'ମିଡ୍‌ସମର୍ ନାଇଟସ୍ ଡ୍ରିମ୍' ନାଟକର ପଞ୍ଚମ ଅଙ୍କ ୧ମ ଦୃଶ୍ୟର ପିରାମସ୍- ଥିସ୍‌ବି ବିଷୟ ଅଛି ;ଏଇଟି ପୁଣି ନାଟକ ମାତ୍ର । ରାଧାନାଥ ସେକ୍ସପିୟରଙ୍କ ନାମୋଲ୍ଲେଖ କରି ତାଙ୍କ ନାଟକକୁ କହିଛନ୍ତି 'କବିତା' । କିନ୍ତୁ ସେ ଯେ ଓଭିଡ୍‌ଙ୍କ 'ମେଟାମରଫସିସ୍' କାବ୍ୟରୁ ପୂର୍ଣ୍ଣତଃ ଉପାଦାନ ଆଣି କେଦାରଗୌରୀ ଲେଖିଛନ୍ତି ଏକଥା ସେ ସମୟରେ ଆଦୌ ସ୍ୱୀକାର ନକରି ଅନ୍ୟ ଏକ ଭ୍ରାନ୍ତ ଅଭିମତ ସେ ଅତି ସହଜରେ ପ୍ରଚାର କରିଦେଇ ଥିଲେ ।'' (ଓଡ଼ିଆ ସାହିତ୍ୟର ଇତିହାସ- ପ୍ରଥମ ସଂସ୍କରଣ-ପୃ.୨୬୭) ତଥ୍ୟ ସଂଗ୍ରହରେ ଏକାଗ୍ରତା ତଥା ଆନୁଷଙ୍ଗିକ ନାନା ବିଷୟର ଅଧ୍ୟୟନ- ଅନୁଶୀଳନ ବିନା ଏଭଳି ଉଚ୍ଚାରଣ ଯେ ସମ୍ଭବ ନୁହେଁ ଏହାର ଉଲ୍ଲେଖ ଅନାବଶ୍ୟକ ।

ରାଧାନାଥ, ମଧୁସୂଦନ ଓ ଫକୀର ମୋହନଙ୍କ ସାହିତ୍ୟ-ସାମ୍ରାଜ୍ୟର ଆକଳନ କରିବାକୁ ଯାଇ ନଟବର ଏମାନଙ୍କୁ ଗୋଟିଏ ଲେଖାଁ ଅଧ୍ୟାୟରେ ବ୍ୟାପକ ପରିସରରେ ଆଲୋଚନା କରିଛନ୍ତି । କାରଣ ଉକ୍ତ ତିନି ଲେଖକ ହିଁ ଓଡ଼ିଆ ସାହିତ୍ୟରେ ଆଧୁନିକ ଯୁଗର ପ୍ରକୃତ ଭିତ୍ତି ସଂସ୍ଥାପକ । ଏହା ଉତ୍ତାରୁ ଓଡ଼ିଆ ନାଟ୍ୟ ସାହିତ୍ୟର ବିକାଶ ଧାରା ଡଃ ସାମନ୍ତରାୟଙ୍କ ଗବେଷକ- ଦୃଷ୍ଟିରେ ଯଥାର୍ଥ ଭାବେ ଆକଳିତ ହୋଇଛି । ୧୮୬୮ ମସିହାରେ ପ୍ରକାଶିତ କବିଚନ୍ଦ୍ର ରଘୁନାଥ ପରିଛାଙ୍କର 'ଗୋପୀନାଥ ବଲ୍ଲଭ ନାଟକ'କୁ 'ଦକ୍ଷିଣୀ ଯାତ୍ରା ବା ଲୀଳାର ନବୀକରଣ' ବୋଲି କହି ନଟବର ୧୮୭୭ରେ ପ୍ରକାଶିତ ଜଗନ୍ମୋହନ

ଲାଲଙ୍କ 'ବାବାଜୀ'କୁ ପ୍ରଥମ ଓଡ଼ିଆ ନାଟକ ଭାବେ ଗ୍ରହଣ କରିଛନ୍ତି । ଏହି ପରିଚ୍ଛେଦରେ ସେ ଜଗନ୍ମୋହନଙ୍କଠାରୁ ଆରମ୍ଭ କରି ରାମଶଙ୍କର, ବୀର ବିକ୍ରମଦେବ, ପଦ୍ମନାଭ ନାରାୟଣ ଦେବ, କାମପାଳ ମିଶ୍ର, ହରିହର ରଥ, ଭିକାରୀ ଚରଣ ପଟ୍ଟନାୟକ, ରାଧାମୋହନ ରାଜେନ୍ଦ୍ରଦେବ, ଗୋଦାବରୀଶ ମିଶ୍ର ପ୍ରଭୃତି ନାଟ୍ୟକାରଙ୍କର ସମେତ ନାରାୟଣ ମିତ୍ର, ଚନ୍ଦ୍ରଶେଖର ପାଣି, ଘନଶ୍ୟାମ ମିଶ୍ର କବିଭୂଷଣ, ଧର୍ମାନନ୍ଦ ତ୍ରିପାଠୀ, ଗୌରୀବଲ୍ଲଭ ପଟ୍ଟନାୟକ, ରାମଚନ୍ଦ୍ର ଆଚାର୍ଯ୍ୟ, ଗୋବିନ୍ଦ ଚନ୍ଦ୍ର ଶୂରଦେଓ ପ୍ରଭୃତି ବହୁ ନାଟ୍ୟକାରଙ୍କୁ ଆଲୋଚନା କରିଛନ୍ତି ।

ଓଡ଼ିଆ ଗଦ୍ୟସାହିତ୍ୟର ବିକାଶଧାରା ପର୍ଯ୍ୟାୟରେ ଡଃ ସାମନ୍ତରାୟ ପ୍ରାକ୍ ବ୍ରିଟିଶ୍ ଯୁଗ ଓଡ଼ିଆ ସାହିତ୍ୟରେ 'ରୁଦ୍ର ସୁଧାନିଧି' ଓ 'ଚତୁର ବିନୋଦ' ବ୍ୟତୀତ ଯଥାର୍ଥ ଓଡ଼ିଆ ଗଦ୍ୟ ନଥିଲା ବୋଲି ଦର୍ଶାଇଛନ୍ତି । ମିଶନାରୀମାନଙ୍କ ଓଡ଼ିଆ ଥିଲା ବଙ୍ଗଳାମୁଖୀ । ଭାଷାର ଏ ଦୁର୍ବଳତା ଓ ବିଡ଼ମ୍ବନା ବିରୁଦ୍ଧରେ ୧୮୮୦ ମସିହା ପରେ ଭୀଷଣ ଆନ୍ଦୋଳନ ହେବାରୁ କ୍ରମଶଃ ୧୮୯୦ ବେଳକୁ ତାହା ଦୂରେଇ ଯାଇଥିଲା ବୋଲି ମତ ଦେଇ ନଟବର କହିଛନ୍ତି ଯେ ୧୮୭୦ ମସିହାର କିଛି ପୂର୍ବ ଓ ତା'ପରେ ବିଚ୍ଛନ୍ଦ ଚରଣ ପଟ୍ଟନାୟକ, ଫକୀର ମୋହନ ସେନାପତି, କପିଳେଶ୍ୱର ବିଦ୍ୟାଭୂଷଣ ତଥା କେତକ ଅଣ ଓଡ଼ିଆ ଲେଖକ ଓଡ଼ିଆ ଗଦ୍ୟଭାଷାରେ ହାତ ଦେବାରୁ ଭାଷାର ଅନ୍ୟାନ୍ୟ ଦୁର୍ବଳତା ମଧ କ୍ରମେ ଲୋପ ପାଇ ଯାଇଥିଲା । ଏହି ପରିଚ୍ଛେଦରେ ଗବେଷକ ନଟବର, ରାଧାନାଥ ରାୟ, ମଧୁସୂଦନ ରାଓ, ବିଶ୍ୱନାଥ କର, ଶଶୀଭୂଷଣ ରାୟ, ଗୋପାଳ ଚନ୍ଦ୍ର ପ୍ରହରାଜ, ନୀଳକଣ୍ଠ ଦାସ, ମୋହିନୀ ମୋହନ ସେନାପତି ପ୍ରମୁଖଙ୍କ ପ୍ରବନ୍ଧ, ତତ୍କାଳୀନ ସମାଲୋଚକ ଓ ସମାଲୋଚନା ସାହିତ୍ୟର ସ୍ୱରୂପ, ଔପନ୍ୟାସିକ ଉମେଶଚନ୍ଦ୍ର ସରକାର, ରାମଶଙ୍କର ରାୟ, ଗୋପାଳ ବଲ୍ଲଭ ଦାସ୍, ନନ୍ଦ କିଶୋର ବଳ ପ୍ରଭୃତିଙ୍କ କୃତି, କ୍ଷୁଦ୍ରଗଳ୍ପ ପର୍ଯ୍ୟାୟରେ ଫକୀର ମୋହନ ସେନାପତି, ଚନ୍ଦ୍ରଶେଖର ନନ୍ଦ, ଦୟାନିଧି ମିଶ୍ର, ଦିବ୍ୟସିଂହ ପାଣିଗ୍ରାହୀ, ଲକ୍ଷ୍ମୀକାନ୍ତ ମହାପାତ୍ର, ବାଙ୍କନିଧି ପଟ୍ଟନାୟକ, ରେବା ରାୟ, ଗୋଦାବରୀଶ ମିଶ୍ର, ନନ୍ଦ କିଶୋର ବଳ, ଜଳନ୍ଧର ଦେବ, ଗୋକୁଳ ଚନ୍ଦ୍ର ମିତ୍ର, ସୁଧାକର ପଟ୍ଟନାୟକ, ବସନ୍ତ କୁମାର କର, ଚିନ୍ତାମଣି ମହାନ୍ତି, କୋକିଳା ଦେଈ, ଦାଶରଥି ମହାପାତ୍ର, ଜନାର୍ଥନ ମହାନ୍ତି ପ୍ରଭୃତି ଗାଳ୍ପିକଙ୍କ କୃତି ଓ କୃତିତ୍ୱର ଆକଳନ କରିଛନ୍ତି । ଓଡ଼ିଆ ଭ୍ରମଣ ସାହିତ୍ୟ, ଜୀବନୀ ସାହିତ୍ୟ ଓ ଆତ୍ମଜୀବନୀ ସାହିତ୍ୟର ବିଚାର ଓ ମୂଲ୍ୟାୟନ ମଧ ସେ କରିଛନ୍ତି ।

ଆଧୁନିକ ଓଡ଼ିଆ ପଦ୍ୟସାହିତ୍ୟର ବିକାଶ ଧାରା ଅଧ୍ୟାୟରେ ଗବେଷକ ଡଃ ସାମନ୍ତରାୟ ଆଧୁନିକ କାବ୍ୟକବିତାର ଜନ୍ମ ଇତିହାସ ଓ ବିକାଶ ଭୂମିଠାରୁ ଆରମ୍ଭ କରି ରାଧାନାଥ ରାୟ, ମଧୁସୂଦନ ରାଓ, ରାମକୃଷ୍ଣ ସାହୁ, ବାସୁଦେବ ସୁଢ଼ଳଦେବ, ସଚ୍ଚିଦାନନ୍ଦ ତ୍ରିଭୁବନଦେବ, ବଡ଼ କୁମାର ବଳଭଦ୍ରଦେବ, ଗଙ୍ଗାଧର ମେହେର, ନନ୍ଦକିଶୋର ବଳ, ଚିନ୍ତାମଣି ମହାନ୍ତି, ଗୋପବନ୍ଧୁ ଦାସ, ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର ପ୍ରମୁଖ କବିମାନଙ୍କୁ ଅନ୍ତର୍ଭୁକ୍ତ କରିଛନ୍ତି । ଏ ସମସ୍ତ କବି, କଥାକାର, ନାଟ୍ୟକାର, ପ୍ରାବନ୍ଧିକ, ଓ ଅନ୍ୟାନ୍ୟ ବିଭାଗର ସାହିତ୍ୟିକଙ୍କ କୃତି ସମୂହ ଡଃ ସାମନ୍ତରାୟ ପ୍ରତ୍ୟକ୍ଷ ଏକାଗ୍ରତାର ସହ ଅଧୟନ କରିଥିଲେ ବୋଲି ଜଣାଯାଏ । କାରଣ କୃତିଗୁଡ଼ିକର ବିଷୟବସ୍ତୁ ଉଲ୍ଲେଖ ସହ ସେ

ସମସ୍ତର ଆବଶ୍ୟକତା ଅନୁଯାୟୀ ଆଲୋଚନା ମଧ୍ୟ ବିଭିନ୍ନ ଦିଗରୁ ସେ ସମ୍ପନ୍ନ କରିଛନ୍ତି ।

ଡଃ ସାମନ୍ତରାୟଙ୍କର 'ଓଡ଼ିଆ ସାହିତ୍ୟର ଇତିହାସ' ଗ୍ରନ୍ଥ ଯେ କୌଣସି ଏକନିଷ୍ଠ ଗବେଷକ ଲାଗି ଏକ ଯଥାର୍ଥ ଗବେଷଣା-ମାର୍ଗ-ଦର୍ଶକ କହିଲେ ଅତ୍ୟୁକ୍ତି ହେବ ନାହିଁ । ସାର୍ଥକ ଓ ଫଳପ୍ରସୂ ଗବେଷଣା ଲାଗି ବିଭିନ୍ନ ମୌଳିକ ତଥ୍ୟ, ପ୍ରାମାଣିକ ଉପାଦାନ ସମୂହ ସେ ସବୁର ପ୍ରାଥମିକ ଉତ୍ସରୁ ହିଁ ବିଧିବଦ୍ଧ ଭାବେ ସଂଗୃହୀତ ହେବା ତଥା ନିବିଡ଼ ଭାବେ ସେ ସବୁର ଅଧ୍ୟୟନ ଓ ଅନୁଶୀଳନ କରାଯିବା କିଭଳି ଏକାନ୍ତ ଅପରିହାର୍ଯ୍ୟ ଓ ବିକଳ୍ପବିହୀନ ତାହା ଡଃ ସାମନ୍ତରାୟ ଆପଣା ଗବେଷଣା ଦ୍ୱାରା ପ୍ରମାଣିତ କରି ଯାଇଛନ୍ତି । ଉପର୍ଯ୍ୟୁକ୍ତ ମୂଳସୂତ୍ରମାନଙ୍କ ଆଧାରରେ ନାନା ଆନୁଷଙ୍ଗିକ ତଥ୍ୟ ସଂଗ୍ରହ ମଧ୍ୟ ଯେ ଏକ ଗୁରୁତ୍ୱପୂର୍ଣ୍ଣ ଆବଶ୍ୟକତା, ତାହା ମଧ୍ୟ ତାଙ୍କ ଗବେଷଣା ଗ୍ରନ୍ଥମାନଙ୍କରେ ଆଧାରିତ ଓ ପ୍ରତିପାଦିତ ହୋଇଛି ।

ସାଧାରଣତଃ ପ୍ରବନ୍ଧ ସମାଲୋଚନାର ଭାଷା ଓ ଗବେଷକର ଉଚ୍ଚାରଣ ଶୁଷ୍କ ଓ ନୀରସ ଗଦ୍ୟାତ୍ମକତାରେ ପର୍ଯ୍ୟବସିତ ହୋଇଥାଏ । କାରଣ ତଥ୍ୟ ଓ ତତ୍ତ୍ୱର ପରିବେଷଣରେ ତଥା ସର୍ଜନଶୀଳ ରଚନାର ଗୁଣାଗୁଣ ନିର୍ଣ୍ଣୟରେ କଳାତ୍ମକ ଲାଳିତ୍ୟ ପ୍ରକଟ କରିବାର ସୁଯୋଗ ଗବେଷକର ଗଦ୍ୟଭାଷା ପାଇପାରି ନଥାଏ । ମାତ୍ର ଡଃ ସାମନ୍ତରାୟଙ୍କ ଗବେଷକୀୟ ଉଚ୍ଚାରଣରେ ଏହାର ମଧୁର ବ୍ୟତିକ୍ରମ ପରିଲକ୍ଷିତ ହୁଏ । ତଥ୍ୟ ପ୍ରଦାନ ଠାରୁ ଆରମ୍ଭ କରି ନିଜର ବିଚାର ଓ ବିଶ୍ଳେଷଣରେ ସେ ବେଶ୍ କଳାତ୍ମକ ଓ ସୃଷ୍ଟିଶୀଳ ଢଙ୍ଗରେ ନିଜର ଭାଷା ବିନ୍ୟାସ ସମ୍ପନ୍ନ କରନ୍ତି । ଏଥିଯୋଗୁ ତାଙ୍କର ପାଠକ ଏକ ମୌଳିକ ସର୍ଜନଶୀଳ କୃତିର ପଠନାନନ୍ଦ ପାଇଥାଏ । ଏହା ନଟବରଙ୍କର ଏକ ବିଶେଷ କୃତିତ୍ୱ ଓ ସ୍ୱାତନ୍ତ୍ର୍ୟ । ତାଙ୍କ କଳାତ୍ମକ ଚତୁର ଗଦ୍ୟରୀତିର ଗୋଟିଏ ଦୁଇଟି ସଂକ୍ଷିପ୍ତ ନମୁନା ଦେଖନ୍ତୁ ।

(୧) 'ନୂତନ ସାହିତ୍ୟର ନୂତନ ଆଙ୍ଗିକ ପ୍ରଥମେ ପାଠ୍ୟପୁସ୍ତକ ମଧ୍ୟରେ ଧରାଦେଇ ଏକ ବିଧିବଦ୍ଧ ସରକାରୀ ଉଦ୍ୟମ ବଳରେ ଯେପରି ଏ ଦେଶ ଲୋକଙ୍କ ଚିତ୍ତରେ ଚିରସ୍ଥାୟୀ ହେବାପାଇଁ ସୁବିଧା ପାଇଥିଲା ତା'ର ଅନୁରୂପ ଦୃଷ୍ଟାନ୍ତ ସମଗ୍ର ଓଡ଼ିଆ ସାହିତ୍ୟ- ଇତିହାସରେ ଏକାନ୍ତ ବିରଳ । ଏ କ୍ଷେତ୍ରରେ ରାଧାନାଥଙ୍କ ସଜ୍ଞାନ ଚିତ୍ତ-ସଂଭୂତ ଅଧ୍ୟବସାୟ ଅତୀବ ବିସ୍ମୟକର ଓ ଅନନ୍ୟ ସାଧାରଣ । ଗୋଟିଏ ଜାତିକୁ ନୂତନ ରୁଚିବୋଧରେ ଦୀକ୍ଷିତ ତଥା ଶିକ୍ଷିତ କରାଇବାର ଚରମ କୃତିତ୍ୱ ରାଧାନାଥଙ୍କ କର୍ମମୟ ଜୀବନର ସର୍ବଶ୍ରେଷ୍ଠ ଫଳ ବ୍ୟତୀତ ଅନ୍ୟ କିଛି ନୁହେଁ । '' (ଓଡ଼ିଆ ସାହିତ୍ୟର ଇତିହାସ-ପ୍ରଥମ ସଂସ୍କରଣ-ପୃ ୧୪୨)

(୨) ''ଚିନ୍ତାମଣି ମହାନ୍ତିଙ୍କ ରଚନାବଳୀ, 'ଆକାର' ବିଚାରରେ, ଆଧୁନିକ ଓଡ଼ିଆ ସାହିତ୍ୟରେ ଏକ ବିରାଟ ବିସ୍ମୟ; ତାଙ୍କ ବୈଷୟିକ ଦାରିଦ୍ର୍ୟ ଅଧିକ ଅନୁକମ୍ପାର ଯୋଗ୍ୟ; ସୃଷ୍ଟି-ଦାରିଦ୍ର୍ୟ ତତୋଽଧିକ ଯନ୍ତ୍ରଣାଦାୟକ । ଉଚ୍ଚଶିକ୍ଷା ଲାଭରୁ ବଞ୍ଚିତ ହୋଇ କେବଳ 'ପ୍ରେରଣା' ବା 'ଉତ୍ତେଜନା'ରେ ବିଚାରଶୂନ୍ୟ ଭାବେ ଅବିଶ୍ରାନ୍ତ ଲେଖନୀ ଚାଳନା କଲେ ଅନୁକରଣ ହୁଏ ତା'ର ଏକମାତ୍ର ଶ୍ରେଷ୍ଠ ଅବଲମ୍ବନ; ସୃଷ୍ଟିର ବିଫଳତା ଏହାର ଅବିସମ୍ବାଦିତ ପରିଣତି ମଧ୍ୟ । ଆଧୁନିକ ଓଡ଼ିଆ ସାହିତ୍ୟରେ ଚିନ୍ତାମଣିଙ୍କ ବିରାଟ ଗ୍ରନ୍ଥାବଳୀ ସୃଷ୍ଟି-ବିଫଳତାର ଏକ ଅପୂର୍ବ ଉଦାହରଣ ।''(ଓଡ଼ିଆ ସାହିତ୍ୟର ଇତିହାସ-ପ୍ର.ସଂ.ପୃ-୫୮୩)

ତଥ୍ୟମନସ୍କ ହୋଇ କେବଳ ତଥ୍ୟମାନଙ୍କ ସ୍ଥୂଳ ପରିବେଷଣ କରିଯିବା ଯେ

ଉଚ୍ଚକୋଟୀର ଗବେଷଣା ନୁହେଁ ଏକଥା ଡଃ ସାମନ୍ତରାୟ କାର୍ଯ୍ୟତଃ ସୂଚାଇ ଦେଇ ଦିଗ୍‌ଦର୍ଶନ ଦେଇଛନ୍ତି ଯେ ମୂଳ ତଥ୍ୟମାନଙ୍କ ଆଶ୍ରୟରେ ଅତୀତର ସେଇ ଘଟଣା- ମୁହୂର୍ତ୍ତକୁ ବା ଉପାଦାନମାନଙ୍କ ସୃଷ୍ଟିହେବାର ସମୟକୁ ଫେରିଯିବାକୁ ହୁଏ ଏବଂ ନିଜର ଜିଜ୍ଞାସାବୋଧ ଓ ଅନୁସନ୍ଧିତ୍ସା, ମନନଶୀଳତା ଓ ବୌଦ୍ଧିକ ବିଚାରଧାରା, ବିସ୍ତୃତ ସଂଶ୍ଳେଷଣ କ୍ଷମତା, କଳ୍ପନା ଶକ୍ତି ଓ ଅନ୍ତର୍ଦୃଷ୍ଟି ଯୋଗେ ସତ୍ୟର ସନ୍ଧାନ କରିବାକୁ ହୁଏ ।

କଠୋର ଅଧ୍ୟବସାୟ, ନିରନ୍ତର ଅନୁସନ୍ଧାନ, ଅକ୍ଳାନ୍ତ ଅନୁଶୀଳନ ଓ ଉତ୍ସର୍ଗୀକୃତ ତପସ୍ୟାନିଷ୍ଠତା ଯୋଗେ ଗବେଷଣାଲବ୍ଧ ପାଠ୍ୟସାମଗ୍ରୀ କିପରି ଗୋଟିଏ ଜାତିର ମହାର୍ଘ ସମ୍ପତ୍ତିରେ ରୂପାନ୍ତରିତ ହୁଏ ତାହା ଗବେଷକ ଡଃ ନଟବର ସାମନ୍ତରାୟ ଏ ଜାତିକୁ ଅନନ୍ୟ ଦୃଷ୍ଟାନ୍ତ ସହ ପ୍ରଦର୍ଶନ କରି ଯାଇଛନ୍ତି । ଆଜି ତାଙ୍କର ଅବର୍ତ୍ତମାନରେ ସୁଦ୍ଧା ନିଜର ଚିର ଅମଳିନ ଗବେଷଣା ସମ୍ଭାର ମାଧ୍ୟମରେ ସେ ପ୍ରତ୍ୟେକ ଗବେଷକର ଦିଗ୍‌ଦର୍ଶକ ଓ ଗବେଷଣା-ଜ୍ଞାନ-ଗୁରୁ ଭାବରେ ମାଟିର ଦ୍ରୋଣତୁଲ୍ୟ ନିତ୍ୟ ବିଦ୍ୟମାନ ଏବଂ ଏକାନ୍ତ ଶ୍ରଦ୍ଧା-ସମ୍ମାନ-ଚର୍ଚ୍ଚିତ ଭାବରେ ଆମର ପ୍ରାତଃ ସ୍ମରଣୀୟ ।

*ସ୍ନାତକୋତ୍ତର ଓଡ଼ିଆ ବିଭାଗ*
*ରେଭେନ୍ସା ସ୍ୱୟଂଶାସିତ କଲେଜ, କଟକ-୩*

## ନଟବର ବାଣୀ

ସାହିତ୍ୟ ପରି ସମାଲୋଚନା ମଧ୍ୟ ଏକ ସ୍ୱତନ୍ତ୍ର ସୃଷ୍ଟି । ସୃଷ୍ଟିର ଗୌରବରେ ଆସୀନ ନ ହେଲେ, ଯଥାର୍ଥ ସମାଲୋଚନା ହୁଏନି । ବିଷୟ ନିର୍ବାଚନ, ଉପାଦାନ ସଂଗ୍ରହ ଓ ସୌନ୍ଦର୍ଯ୍ୟ ବିଶ୍ଳେଷଣ - ଏଇ ତିନି ଧାରାରେ ସମାଲୋଚନା ଗତି କରେ । ଏଇ ଗତିର ଶେଷ ପରିଣତି ହେଉଛି, ସମଗ୍ର ଭାବରେ ପାଠକ ଚିତ୍ତରେ ଏକ ଅନବଦ୍ୟ ଅନୁଭୂତି ସୃଷ୍ଟି କରିବା । ଯେଉଁ ସମାଲୋଚନାର ଏଇ ଗତି ଓ ପରିଣତି ବା ଲକ୍ଷ୍ୟ ନାହିଁ , ତାହା ଉଚ୍ଚକୋଟୀର ସମାଲୋଚନା ନୁହେଁ । ଏଇ ଲକ୍ଷ୍ୟସିଦ୍ଧି ପଥରେ ବିଚାର ବିଚ୍ୟୁତି ସର୍ବତ୍ର ଘଟିବାର ସମ୍ଭାବନା ଅଛି । ବାରଶତ ବଢ଼େଇ କୋଣାର୍କ ପରି ଏକ ପରମ ରମଣୀୟ ମନ୍ଦିର ତିଆରି କରୁଥିଲେ ହେଁ ସୃଷ୍ଟି କ୍ରିୟାରେ ସାମାନ୍ୟ ବିଚାର ବିଭ୍ରମ ହେତୁ କଳାର ସମଗ୍ର ସୌନ୍ଦର୍ଯ୍ୟ ଅସମ୍ପୂର୍ଣ୍ଣ ହୋଇ ପଡ଼ି ରହିଥିଲା । ଧର୍ମପଦ ଏଇ ସୃଷ୍ଟି ପ୍ରମାଦ ପ୍ରତି ଦୃଷ୍ଟି ଆକର୍ଷଣ କରିବାରେ ସୃଷ୍ଟିର ପରମ ବିକାଶ ପୂର୍ଣ୍ଣତା ଲାଭ କରିଥଲା ।

*ଆଧୁନିକ ଓଡ଼ିଆ ସାହିତ୍ୟର ଭିତ୍ତିଭୂମି (୧୯୬୪)*

# ସମ୍ପର୍କ

ସାଧକଟିଏ ହେଲେ ବି
ସେ ଥିଲେ ପ୍ରଥମତଃ ମଣିଷଟିଏ
ପାରିବାରିକ, ସାମାଜିକ ଓ ବୁଦ୍ଧିଗତ
ସମ୍ପର୍କର ରଜ୍ଜୁରେ ବନ୍ଧା
ସାଧାରଣ ଜୀବନଟିଏ ଜୀଇଁଥିଲେ ନଟବର
ସେହିସବୁ ସମ୍ପର୍କର କେତୋଟି ଝଲକ....

# ଡଃ ନଟବର ସାମନ୍ତରାୟ
# ଏକ ଶ୍ରଦ୍ଧାଞ୍ଜଳି

*ଦୁର୍ଗା ଚରଣ କୁଅଁର*

ଓଡ଼ିଆ ସାହିତ୍ୟ ପ୍ରତିଭାବାନ ଗବେଷକ ଓ ସାହିତ୍ୟ ସମାଲୋଚକ ଭାବେ ଡଃ ନଟବର ସାମନ୍ତରାୟ ସମଗ୍ର ଓଡ଼ିଶାରେ ସୁପରିଚିତ । ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗ ଉପରେ ଗବେଷଣା କରି ସେ ବହୁ ମୂଲ୍ୟବାନ ପୁସ୍ତକ ରଚନା କରିଯାଇ ଅଛନ୍ତି ଯାହାକି ଭବିଷ୍ୟତର ଗବେଷକମାନଙ୍କୁ ଦିଗ୍‌ଦର୍ଶନ ଦେବ । ବିଭିନ୍ନ ତଥ୍ୟ ସଂଗ୍ରହ କରିବା ଦିଗରେ ତାଙ୍କର ଗଭୀର ନିଷ୍ଠା, ଅକ୍ଳାନ୍ତ ପରିଶ୍ରମ ଏବଂ ସେସବୁର ବିଶ୍ଳେଷଣ କରି ନିଜସ୍ୱ ଦୃଷ୍ଟିରୁ ମତାମତ ଉପସ୍ଥାପନ କରିବା ତାଙ୍କ ସାହିତ୍ୟିକ ଗବେଷଣାର ଏକ ବିଶେଷତ୍ୱ । ତାଙ୍କ ଦ୍ୱାରା ଲିଖିତ 'ଓଡ଼ିଆ ସାହିତ୍ୟର ଇତିହାସ' ଏହାର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ । ଓଡ଼ିଆ ସାହିତ୍ୟ ଇତିହାସ କ୍ଷେତ୍ରରେ ଏହା ନିଶ୍ଚିତ ଭାବରେ ଏକ ମାଇଲ ଖୁଣ୍ଟ ଓ ଗବେଷକମାନଙ୍କ ପାଇଁ ପଥ ପ୍ରଦର୍ଶକ । ଏହି ପୁସ୍ତକଟି କେବଳ ଏକ ତଥ୍ୟ ଭଣ୍ଡାର ନୁହେଁ, ମୌଳିକ ବିଚାର ତଥା ଦୃଷ୍ଟିଭଙ୍ଗୀର ନୂତନତ୍ୱ ଯୋଗୁଁ ଏହା ଅତ୍ୟନ୍ତ ମୂଲ୍ୟବାନ । ଏହି 'ଓଡ଼ିଆ ସାହିତ୍ୟର ଇତିହାସ' ଲେଖି ଶ୍ରୀ ସାମନ୍ତରାୟ ୧୯୬୩ରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ ଡିଗ୍ରୀ ଲାଭ କରିଥିଲେ ।

ନଟବର ବାବୁ କେବଳ ମୋର ସହକର୍ମୀ ନଥିଲେ, ତାଙ୍କ ସହିତ ମୋର ତଥା ମୋ ପରିବାରର ସମ୍ପର୍କ ଥିଲା ଅତି ଘନିଷ୍ଠ । ଓଡ଼ିଶା ସହିତ ଅନ୍ୟ ଗଡ଼ଜାତ ଗୁଡ଼ିକର ମିଶ୍ରଣର ବର୍ଷକ ପରେ ୧୯୪୮ରେ ମୟୂରଭଞ୍ଜ ଗଡ଼ଜାତ ଓଡ଼ିଶା ସହିତ ମିଶିଲା । ମିଶ୍ରଣ ପୂର୍ବରୁ ମୟୂରଭଞ୍ଜ ମହାରାଜା ବାରିପଦାଠାରେ ଏକ କଲେଜ ସ୍ଥାପନ କରିଥିଲେ । ସେତେବେଳେ କଲେଜର ନିଜସ୍ୱ କୋଠାବାଡ଼ି ନଥିଲା । ବାରିପଦା ହାଇସ୍କୁଲ ପରିସରରେ ସକାଳ ଓଳି କଲେଜ ଚାଲିଥିଲା । କଲେଜର ପ୍ରିନ୍ସପାଲ ଥିଲେ ସର୍ଦ୍ଦାର ଗୁରୁଦୟାଲ ସିଂହ । କେବଳ ଓଡ଼ିଆ ଅଧ୍ୟାପକଙ୍କୁ ଛାଡ଼ି ଦେଲେ ଅନ୍ୟ ସମସ୍ତ ଅଧ୍ୟାପକ ଥିଲେ ଅଣ ଓଡ଼ିଆ । ଓଡ଼ିଆ ଅଧ୍ୟାପନା ପାଇଁ ନିଯୁକ୍ତ ଓଡ଼ିଆ ଅଧ୍ୟାପକ ଜଣକ ଅନ୍ୟ ଅଧ୍ୟାପକମାନଙ୍କ ଠାରୁ କମ୍ ଦରମା ପାଉଥିଲେ । ଓଡ଼ିଶା ସରକାର କଲେଜକୁ ହାତକୁ ନେବା ପରେ ତାଙ୍କ ଦରମାରେ ଥିବା ତାରତମ୍ୟ ଅବଶ୍ୟ ଦୂର ହୋଇଥିଲା ।

୧୯୪୯ରେ ସରକାରୀ ନିଯୁକ୍ତି ପାଇ ଇଂରାଜୀ ଅଧ୍ୟାପକ ଭାବେ ମୁଁ ଏବଂ ଓଡ଼ିଆ ଓ ଇତିହାସ ଅଧ୍ୟାପକ ଭାବେ ଯଥାକ୍ରମେ ଶ୍ରୀ ନଟବର ସାମନ୍ତରାୟ ଓ ଶ୍ରୀ ଗୌରହରି ସାମନ୍ତରାୟ ଯୋଗ ଦେଇଥିଲୁ । କଲେଜ ନିକଟରେ ଏକ ଘରଭଡ଼ା ନେଇ ତିନିଜଣ ଏକତ୍ର ରହିଲୁ । ଗୌରହରି ସାମନ୍ତରାୟ ପରେ ଓଡ଼ିଶା ପ୍ରଶାସନିକ ସେବାରେ ଯୋଗ

ଦେଇ ଡେ଼ପୁଟି ସେକ୍ରେଟେରୀ ଭାବେ ସରକାରୀ ଚାକିରୀରୁ ଅବସର ନେଇ ଅଛନ୍ତି । ନଟବର ବାବୁ ପୂର୍ବରୁ ଅନୁଗୁଳ ହାଇସ୍କୁଲରେ ଶିକ୍ଷକତା କରୁଥିଲେ । ସେ ବୟସରେ ଆମଠାରୁ ବଡ଼ । ଆମେ ତାଙ୍କୁ ଆମର ବଡ଼ଭାଇ ରୂପେ ସମ୍ମାନ କରୁଥିଲୁ ।

ନଟବର ବାବୁଙ୍କ ଗବେଷକ ଜୀବନର ଆରମ୍ଭ ଏହି ବାରିପଦାଠାରୁ । ସକାଳ ଓଳି କଲେଜ କାମ ସାରି ମଧ୍ୟାହ୍ନ ଭୋଜନ ପରେ ଗୌରହରି ବାବୁ ଓ ମୁଁ ବିଶ୍ରାମ ନେଉଥିବା ବେଳେ ନଟବରବାବୁ ସାଇକେଲଟି ଧରି ବାହାରିଯା'ନ୍ତି । ତାଙ୍କର ଗନ୍ତବ୍ୟସ୍ଥଳ ଥିଲା ବାରିପଦାର ଜୁବୁଲି ଲାଇବ୍ରେରୀ କିମ୍ୱା ଦେଉଳ ସାହିରେ ଥିବା ବିଶିଷ୍ଟ ଐତିହାସିକ ଓ ପ୍ରତ୍ନତତ୍ତ୍ୱବିତ୍ ଶ୍ରୀଯୁକ୍ତ ପରମାନନ୍ଦ ଆଚାର୍ଯ୍ୟଙ୍କ ବାସଭବନ । ବାରିପଦା ଜୁବୁଲି ଲାଇବ୍ରେରୀ ଏକ ପ୍ରାଚୀନ ଅନୁଷ୍ଠାନ । ଏଠାରେ ବହୁ ମୂଲ୍ୟବାନ ପୁସ୍ତକ, ପତ୍ର ପତ୍ରିକା ଗଚ୍ଛିତ ହୋଇ ରହିଥିଲା । ଏଠାରୁ ଅନେକ ପୁସ୍ତକ ଅନ୍ୟତ୍ର ସ୍ଥାନାନ୍ତରିତ ହୋଇଛି ଏବଂ କେତେକ ହଜିଗଲାଣି । ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟଙ୍କ ବ୍ୟକ୍ତିଗତ ଲାଇବ୍ରେରୀରେ ବହୁ ଗବେଷଣାତ୍ମକ ପୁସ୍ତକ ଓ ପୁରୁଣା ପତ୍ରପତ୍ରିକା ଗଚ୍ଛିତ ହୋଇ ରହିଥିଲା । ଶ୍ରୀ ସାମନ୍ତରାୟ ତାଙ୍କର ଅପରାହ୍ନ ଅବସର ସମୟ ଏହି ଦୁଇ ପୁସ୍ତକାଗାରରେ ପ୍ରାୟତଃ କଟାଉଥିଲେ ଓ ଭବିଷ୍ୟତ ଗବେଷଣା ପାଇଁ ତଥ୍ୟାବଳୀ ସଂଗ୍ରହ କରୁଥିଲେ ।

ଶ୍ରୀ ସାମନ୍ତରାୟ ଥିଲେ ଜଣେ ନୀରବ ସାହିତ୍ୟ ସାଧକ ଓ ଜ୍ଞାନତାପସ । ସରଳ ଜୀବନଯାପନ କରୁଥିଲେ ଓ ଆତ୍ମ ପ୍ରଚାରଠାରୁ ଦୂରେଇ ରହୁଥିଲେ । ସେ ମିଷ୍ଟଭାଷୀ ଥିଲେ, କିନ୍ତୁ ନିଜର ସାହିତ୍ୟିକ ମତାମତ ନେଇ ସଦା ଦୃଢ଼ ରହୁଥିଲେ । ଓଡ଼ିଆ ସାହିତ୍ୟର କେତେକ ସମାଲୋଚକଙ୍କ ସହିତ ଏଥିପାଇଁ ତାଙ୍କର ମସୀଯୁଦ୍ଧ ମଧ୍ୟ ହୋଇଥିଲା । କିନ୍ତୁ ତାଙ୍କର ଅକାଟ୍ୟ ତଥ୍ୟଭିତ୍ତିକ ମତାମତକୁ କାଟି ଉଡ଼ାଇ ଦେବା କାହାରି ପକ୍ଷେ ସମ୍ଭବ ହେଉନଥିଲା ।

ଓଡ଼ିଶାରେ ସାହିତ୍ୟିକ ଆୱାର୍ଡ ରିୱାର୍ଡ ପାଇବା ପାଇଁ ସାହିତ୍ୟିକ ପ୍ରତିଭା ଏକମାତ୍ର ମାପକାଠି ନୁହେଁ । ଏସବୁ ହାସଲ କରିବା ପାଇଁ ସାହିତ୍ୟିକର ଅନ୍ୟକିଛି ଆନୁଷଙ୍ଗିକ ଯୋଗ୍ୟତା ଥିବା ଦରକାର । ଡଃ ସାମନ୍ତରାୟଙ୍କ ଭଳି ଆତ୍ମପ୍ରଚାର ବିରୋଧି, ଆତ୍ମସମ୍ମାନ ସଚେତନ ଅନମନୀୟ ବ୍ୟକ୍ତିତ୍ୱଠାରେ ଏ ପ୍ରକାର ଆନୁଷଙ୍ଗିକ ଯୋଗ୍ୟତାର ହୁଏତ ଅଭାବ ଥିଲା । ତଥାପି ଓଡ଼ିଆ ସାହିତ୍ୟକୁ ତାଙ୍କର ମୂଲ୍ୟବାନ ଅବଦାନ ପାଇଁ ବିଭିନ୍ନ ସାରସ୍ୱତ ଅନୁଷ୍ଠାନ ଅନେକବାର ତାଙ୍କୁ ପୁରସ୍କୃତ ଓ ଅଭିନନ୍ଦିତ କରିଅଛନ୍ତି ।

ଆୱାର୍ଡ ରିୱାର୍ଡ ନୁହେଁ, ନିଜର କାଳଜୟୀ ସାହିତ୍ୟକୃତି ପାଇଁ ହିଁ ସାହିତ୍ୟିକ ଅକ୍ଷୟ ଯଶର ଅଧିକାରୀ ହୋଇଥାଏ । ସେ ଦୃଷ୍ଟିରୁ ଓଡ଼ିଆ ସାହିତ୍ୟର ଇତିହାସରେ ଡଃ ନଟବର ସାମନ୍ତରାୟଙ୍କ ସ୍ଥାନ ସୁନିର୍ଦ୍ଦିଷ୍ଟ । ନିଜର ସାହିତ୍ୟକୃତି ପାଇଁ ସେ ଚିର ସ୍ମରଣୀୟ ହୋଇ ରହିବେ ।

*୧୪/୧, ଟାଇପ-୫.ଏ.,*
*ଅଶୋକନଗର, ଭୁବନେଶ୍ୱର*

# ଡକ୍ଟର ସାମନ୍ତରାୟ

*ଡକ୍ଟର ଗଙ୍ଗାଧର ବଳ*

ଶ୍ୟାମଳ ବର୍ଣ୍ଣର ବାଙ୍ଗରା ଲୋକଟିଏ । ତାଙ୍କୁ ପ୍ୟାଣ୍ଟ ପିନ୍ଧିବା କେବେ ଦେଖିନାହିଁ, ଧୋତି ଓ ପୂରାସାର୍ଟ, ସାଧାସିଧା ବେଶ, ମୁହଁରେ ପ୍ରାୟ ସବୁବେଳେ ହସ ।

ରେଭେନ୍‌ସା କଲେଜରେ ପ୍ରଥମ ଅଧାପନା କାର୍ଯ୍ୟରେ ଯୋଗଦିଏଁ ୧୯୫୯, ଜୁଲାଇରେ । ସେତେବେଳେ ଓଡ଼ିଆ ଓ ସଂସ୍କୃତ ବିଭାଗର ପ୍ରଫେସର ଥାଆନ୍ତି ଡଃ କୁଞ୍ଜ ବିହାରୀ ତ୍ରିପାଠୀ । ଅନ୍ୟ ଅଧାପକମାନେ ହେଲେ ଡଃ କୁଞ୍ଜବିହାରୀ ଦାଶ, ରାଜକିଶୋର ରାୟ, ଡଃ କାହ୍ନୁଚରଣ ମିଶ୍ର, ଗୌରୀକୁମାର ବ୍ରହ୍ମା, ଡଃ ଗୋପାଳଚନ୍ଦ୍ର ମିଶ୍ର, ଜାନକୀ ବଲ୍ଲଭ ମହାନ୍ତି, ଡଃ ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ), ଶ୍ରୀନିବାସ ମିଶ୍ର ଓ ରେଖା ମହାନ୍ତି ।

ଡଃ ନଟବର ସାମନ୍ତରାୟଙ୍କ ସହ ରେଭେନ୍‌ସାରେ ପହିଲୁ ଦେଖା । ସେ ସେତେବେଳେ ରହୁଥାନ୍ତି କଟକ ରେଲୱେ ଷ୍ଟେସନର ପୂର୍ବପାଖରେ ଏକ ଭଡ଼ାଘରେ । ପିଲାଛୁଆଙ୍କ ଜଞ୍ଜାଳରେ ଲୋକେ ଅତିଷ୍ଠ ହୋଇ ଯାଆନ୍ତି, କିନ୍ତୁ ନଟବାବୁ ଥିଲେ ତା'ର ଏକ ବ୍ୟତିକ୍ରମ । ସେ ସମୟରେ ଦରମା କମ୍ ହେଲେ ମଧ ତା'ରି ମଧରେ ସେ ହସ ଖୁସିରେ ପରିବାରଟିକୁ ଚଳେଇ ନେଉଥାନ୍ତି । ନିଜେ ଜଣେ ପୋଖତ ଗବେଷକ ଓ ଲେଖକ, କିନ୍ତୁ ଲେଖା ଓ ଗବେଷଣାରେ ଏପରି ନିମଜ୍ଜିତ ରହୁଥିଲେ ଯେ, ପିଲାଙ୍କ ଜଞ୍ଜାଳ ତାଙ୍କୁ ଅନ୍ୟମାନଙ୍କ ପରି ଜଞ୍ଜାଳ ବୋଲି ଜଣା ପଡୁନଥିଲା । ଯେତେବେଳେ ତାଙ୍କ ଘରକୁ ଗଲେ ହସି ହସି ଆଦର ଆପ୍ୟାୟନ କରନ୍ତି । ପିଲାମାନେ ଆସି ତାଙ୍କ ଉପରେ ଲଦି ହୋଇ ଯାଉଥିଲେ ମଧ ତିଳେମାତ୍ର ବିରକ୍ତି ପ୍ରକାଶ କରନ୍ତି ନାହିଁ, ବରଂ ସେମାନଙ୍କ ଦେହ ମୁଣ୍ଡରେ ହାତ ବୁଲାଇ ବେଶ୍ ଆନନ୍ଦ ଅନୁଭବ କରନ୍ତି । ଏକାଧିକବାର ନଟବାବୁଙ୍କ ଘରେ ଭୋଜନ କରିଛି, ତାଙ୍କ ସାମନ୍ତରାୟପୁର ଘରେ କାର୍ଯ୍ୟୋପଲକ୍ଷ୍ୟରେ ରାତି କଟାଇଛି ।

ଓଡ଼ିଆ ସାହିତ୍ୟରେ ଗବେଷଣା ଓ ସମାଲେଚନା କ୍ଷେତ୍ରରେ ସାମ୍ପ୍ରତିକ କାଳରେ ଯେଉଁମାନେ ବିପୁଳ ପ୍ରତିଷ୍ଠା ଅର୍ଜନ କରିଛନ୍ତି ଡଃ ସାମନ୍ତରାୟ ସେମାନଙ୍କ ମଧରେ ଅନ୍ୟତମ । ସେ ଥିଲେ ଜଣେ ସ୍ୱାଧୀନଚେତା ନିର୍ଭୀକ ସମାଲୋଚକ । ଆଧୁନିକ ଓଡ଼ିଆ ସାହିତ୍ୟର ଗବେଷଣା କ୍ଷେତ୍ରରେ କହିବାକୁ ଗଲେ ଏକ ନୂତନ ଦିଗନ୍ତର ସନ୍ଧାନ ଦେଇଛନ୍ତି । ସତ୍ୟର ପ୍ରକାଶରେ ସେ ଥିଲେ ନିର୍ଭୀକ । ନିଜ ଆଲୋଚନା ଜରିଆରେ ଅନ୍ୟ ଅଧାପକ ଓ ଲେଖକଙ୍କର ଦୋଷତ୍ରୁଟି ପ୍ରଦର୍ଶନ କରିବାରେ କୁଣ୍ଠା ପ୍ରକାଶ କରୁନଥିଲେ । ଗବେଷଣା ଓ ସାହିତ୍ୟ ସମାଲୋଚନା କ୍ଷେତ୍ରରେ ତାଙ୍କର ମୌଳିକତା, ସତ୍ୟତା ଓ ଯୁକ୍ତିନିଷ୍ଠତା ଥିଲା ଅନନ୍ୟ ସାଧାରଣ । ସମାଲୋଚନା ନାମରେ ସେ ଅଯଥା ସ୍ତାବକତା ଓ ନିନ୍ଦାକୁ ପସନ୍ଦ କରୁ‌ନଥିଲେ ।

ସାହିତ୍ୟ ସମାଲେଚନାର ନାନା ସ୍ୱରୂପ ଭେଦ ରହିଛି । ସେ ଗତାନୁଗତିକ ଆଳଂକାରିକ ବା ନନ୍ଦନତାତ୍ତ୍ୱିକ ସମାଲୋଚନା ଉପରେ ଗୁରୁତ୍ୱ ନଦେଇ ଐତିହାସିକ

ସମାଲୋଚନା ପଦ୍ଧତି ଉପରେ ଗୁରୁତ୍ୱ ଦାନ କରନ୍ତି । ଇଂରାଜୀ ସମାଲୋଚନା ପରି ସେ ଲେଖକଙ୍କର ସ୍ଥାନ, କାଳ ଓ ସମୟର ପ୍ରବୃତ୍ତି, ପରିବେଶ(Place & Milieu) ଓ ତା'ର ମାନସିକତା (ଦୃଷ୍ଟିଭଙ୍ଗୀ) ଭିତରେ ତା'ର ସୃଷ୍ଟିର ମୌଳିକ ଓ ନିରପେକ୍ଷ ଆଲୋଚନା କରିଛନ୍ତି । ବ୍ୟାସକବି ଫକୀରମୋହନଙ୍କ ବିଭିନ୍ନ ଗଳ୍ପ, ଉପନ୍ୟାସ ଏବଂ କବିବର ରାଧାନାଥ ରାୟଙ୍କ ବିଭିନ୍ନ କାବ୍ୟ ସମାଲୋଚନା କ୍ଷେତ୍ରରେ ସେ ଏଇ ଐତିହାସିକ ପଦ୍ଧତି ଅବଲମ୍ବନ କରିଛନ୍ତି । କେଉଁ ସ୍ଥାନରେ କି ପରିସ୍ଥିତିରେ ବିଭିନ୍ନ ଗଳ୍ପ, ଉପନ୍ୟାସ ଲେଖାଯାଇଛି, ଏବଂ ତାଙ୍କର ପ୍ରସିଦ୍ଧ ଚାରୋଟି ଉପନ୍ୟାସ ମୂଳରେ ବିଭିନ୍ନ ଶତାବ୍ଦୀର ଐତିହାସିକ, ପ୍ରଶାସନିକ, ଶୈକ୍ଷିକ, ଅର୍ଥନୈତିକ ଓ ସାମାଜିକ ଅବସ୍ଥା କ'ଣ ଥିଲା ତା'ରି ଭିତ୍ତିରେ ସେ ସେଗୁଡ଼ିକର ଆଲୋଚନା କରିଛନ୍ତି । ଦୃଷ୍ଟାନ୍ତ ସ୍ୱରୂପ ତାଙ୍କର ଲଛମା' ମରହଟ୍ଟା ଶାସନ କାଳର ଏକ ରୋମାଞ୍ଚକର ବିଷୟକୁ ଭିତ୍ତି କରି ରଚିତ । ମରହଟ୍ଟା ଶାସନ ସମୟରେ (୧୮ଶ ଶତାବ୍ଦୀ) ଓଡ଼ିଶାର ଅବସ୍ଥା କ'ଣ ଥିଲା ତା'ର ଐତିହାସିକ ବ୍ୟାଖ୍ୟା ଓ ବିଶ୍ଲେଷଣ କରିଛନ୍ତି । ସେହିପରି ତାଙ୍କର 'ଛ ମାଣ ଆଠଗୁଣ୍ଠ' ଓଡ଼ିଶାର ଉନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ, 'ମାମୁଁ' ସେହି ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ଏବଂ 'ପ୍ରାୟଶ୍ଚିତ୍ତ' ବିଂଶ ଶତାବ୍ଦୀର ପ୍ରଥମ ଭାଗର ଦେଶର ଐତିହାସିକ ଓ ସାମାଜିକ ଭିତ୍ତିରେ କିପରି ରଚନା କରିଛନ୍ତି ତା'ର ଐତିହାସିକ, ସାମାଜିକ-ତାତ୍ତ୍ୱିକ ବିଶ୍ଲେଷଣ କରିଛନ୍ତି । ରାଧାନାଥଙ୍କ କାବ୍ୟାଲୋଚନା କ୍ଷେତ୍ରରେ ସେ ଇତିହାସ ଓ କିମ୍ବଦନ୍ତୀର (ଜନଶ୍ରୁତି) ସାହିତ୍ୟିକ ବିଚାର କରିଛନ୍ତି ।

ଉନବିଂଶ ଶତାବ୍ଦୀର ଦ୍ୱିତୀୟ ଭାଗରେ ଓଡ଼ିଶାର ବିଦ୍ୟାଳୟ ଓ ମହାବିଦ୍ୟାଳୟ ସ୍ଥାପନ, ଶିକ୍ଷାର କ୍ରମଶଃ ଅଗ୍ରଗତି, ପ୍ରତିବେଶୀ ବଙ୍ଗୀୟ କର୍ମଚାରୀଙ୍କ ଓଡ଼ିଆ ଭାଷା ବିରୁଦ୍ଧରେ ଷଡ଼ଯନ୍ତ୍ର, ଏ ପରିସ୍ଥିତିରେ ତତ୍‌କାଳୀନ ଓଡ଼ିଶାର ଶିକ୍ଷିତ ମଧ୍ୟବିତ୍ତ ଗୋଷ୍ଠୀର ଓଡ଼ିଆ ଭାଷା, ସାହିତ୍ୟ, ଜାତୀୟ ଜୀବନର ଗଠନ ଉତ୍ତରଣ କ୍ଷେତ୍ରରେ ସ୍ୱତଃସ୍ଫୂର୍ତ୍ତ ପ୍ରଚେଷ୍ଟାର ସୁନ୍ଦର ଯୁକ୍ତିଯୁକ୍ତ ଐତିହାସିକ ପୃଷ୍ଠଭୂମିର ବିଶ୍ଲେଷଣ କରିଛନ୍ତି । ତାଙ୍କର ଏ ନୂତନ ଦୃଷ୍ଟିର ଗବେଷଣା ଓ ଆଲୋଚନା କ୍ଷେତ୍ରରେ ଓଡ଼ିଶାର ଐତିହାସିକ ଓ ଛାତ୍ରମାନଙ୍କୁ ବହୁ ନୂତନ ତଥ୍ୟ ଓ ବ୍ୟାଖ୍ୟା ମିଳିପାରିଛି । ଫଳରେ ସେ ବହୁ ଆଲୋଚକ ଓ ଗବେଷକଙ୍କର ଦିଗ୍‌ଦର୍ଶକ ହୋଇପାରିଛନ୍ତି । କେବଳ ଆଧୁନିକ ସାହିତ୍ୟ ନୁହେଁ, ପ୍ରାଚୀନ ସାହିତ୍ୟ, ମଧ୍ୟଯୁଗୀୟ ବୈଷ୍ଣବ ଓ ରୀତି ସାହିତ୍ୟ ସମ୍ପର୍କରେ ଗବେଷଣା କରି ବହୁ ମୂଲ୍ୟବାନ୍ ଐତିହାସିକ ତଥ୍ୟ ପରିବେଷଣ କରି ପ୍ରାଚୀନ ତଥା ମଧ୍ୟଯୁଗୀୟ ସାହିତ୍ୟର ପ୍ରାସଙ୍ଗିକତା ଉପରେ ଆଲୋକପାତ କରିଛନ୍ତି । ତାଙ୍କର 'ସଖାହୀନ ପଞ୍ଚସଖା' ଏହିପରି ଏକ ଯୁକ୍ତିନିଷ୍ଠ ତଥ୍ୟଭିତ୍ତିକ ଗ୍ରନ୍ଥ । ତାଙ୍କର 'ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩-୧୯୨୦)' ଏକ ମୂଲବାନ ଗ୍ରନ୍ଥ, ଯେଉଁଥି ପାଇଁ ସେ ଉତ୍କଳ ବିଶ୍ୱବିଦ୍ୟାଳୟ ପକ୍ଷରୁ ପିଏଚ.ଡି. ଉପାଧି ପାଇଥିଲେ । ତାଙ୍କର ବିଶ୍ଲେଷଣ, ଆଲୋଚନା ଯେପରି ଯୁକ୍ତିନିଷ୍ଠ ଓ ସତ୍ୟଭିତ୍ତିକ, ତାଙ୍କର ଭାଷା ଓ ପ୍ରକାଶଭଙ୍ଗୀ ସେହିପରି ସରସ ଓ ପ୍ରାଞ୍ଜଳ ।

ରାଧାନାଥ ଓ ଫକୀର ମୋହନଙ୍କ ଉପରେ ଆଜି ବିଭିନ୍ନ ଦୃଷ୍ଟିକୋଣରୁ ସନ୍ଦର୍ଭ ଲେଖା ଚାଲିଛି, କିନ୍ତୁ ସେଗୁଡ଼ିକର ମୌଳିକ ଦୃଷ୍ଟିଭଙ୍ଗୀ ଓ ନୂତନତ୍ୱ ପାଇବା ଦୁଷ୍କର । ଏପରି କ୍ଷେତ୍ରରେ ଡଃ ସାମନ୍ତରାୟ ଜଣେ ଅପ୍ରତିଦ୍ୱନ୍ଦୀ ସମାଲୋଚକ ଓ ଗବେଷକ । ସେ

ଗବେଷଣା ସମ୍ପର୍କରେ ପ୍ରାଚୀନ ପତ୍ରପ୍ରତିକା, ରେଭିନ୍ୟୁ ବୋର୍ଡର ପୁରୁଣା ନଥିପତ୍ର ଓ ଦୁର୍ଲଭ ମୂଲ୍ୟବାନ୍ ଗ୍ରନ୍ଥମାନଙ୍କରୁ ବହୁ ଉପାଦେୟ ନୋଟ୍ କରିଥିଲେ । ସେଗୁଡ଼ିକ ମଧ୍ୟ ଗବେଷକ, ଛାତ୍ର ଓ ଅଧ୍ୟାପକଙ୍କ ପକ୍ଷରେ ମୂଲ୍ୟବାନ୍ ସମ୍ପଦ ।

ଡଃ ସାମନ୍ତରାୟ ଜୀବିକାର୍ଜନର ଆଦ୍ୟପର୍ବରେ ବିଦ୍ୟାଳୟରେ ଶିକ୍ଷକତା କରିଥିଲେ । ସେ ଘରୋଇ ଭାବରେ ଏମ୍.ଏ ପାଶ୍ କରି ଅଧ୍ୟାପକ ହେଲେ । ମହାରାଜା ପୂର୍ଣ୍ଣଚନ୍ଦ୍ର କଲେଜରେ ଅଧ୍ୟାପନା କାଳରେ ସେ ସାହିତ୍ୟର ଐତିହାସିକ ପଦ୍ଧତିର ଆଲୋଚନା ପାଇଁ ପ୍ରନ୍ତତତ୍ତ୍ୱବିତ୍ ପରମାନନ୍ଦ ଆଚାର୍ଯ୍ୟଙ୍କଠାରୁ ପ୍ରାଥମିକ ପ୍ରେରଣା ଲାଭ କରିଥିଲେ । ସେ ଏମ୍.ପି.ସି କଲେଜ ବାରିପଦା, ଅନୁଗୁଳ କଲେଜ୍, ରେଭେନ୍ସା ଓ ବି.ଜେ.ବି କଲେଜରେ ଅଧ୍ୟାପନା କରି ଜଣେ ପ୍ରବୀଣ ଶିକ୍ଷକ, ମୌଳିକ ଦୃଷ୍ଟିଭଙ୍ଗୀ ସମ୍ପନ୍ନ ଗବେଷକ ଭାବରେ ଛାତ୍ର ଓ ଅଧ୍ୟାପକଙ୍କ ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରିଥିଲେ । ଜଣେ ନିଷ୍ଠାପର, ଅନାସକ୍ତ, ମୌଳିକ ଦୃଷ୍ଟି ସମ୍ପନ୍ନ ସାହିତ୍ୟ ସାଧକ ଭାବରେ ସେ ଓଡ଼ିଶାର ସାହିତ୍ୟ ଏକାଡେମୀ, ବିଷୁବ ପୁରସ୍କାର ସହ ବିଭିନ୍ନ ଅନୁଷ୍ଠାନରୁ ବହୁ ପୁରସ୍କାର ଓ ସମ୍ମାନ ଲାଭ କରିଥିଲେ । ତାଙ୍କପରି ସ୍ନେହୀ, ସତ୍ୟବାକ୍ ଓ ଅନାସକ୍ତ ସାହିତ୍ୟସେବୀ ଆଜି ବାସ୍ତବିକ ଏକପ୍ରକାର ଦୁର୍ଲଭ ।

ତାଙ୍କର ପ୍ରଥମ ବାର୍ଷିକ ଶ୍ରାଦ୍ଧୋତ୍ସବରେ ତାଙ୍କର ସ୍ୱର୍ଗୀୟ ଆତ୍ମା ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

*ଅବସରପ୍ରାପ୍ତ ପ୍ରଫେସର୍*
*କେନ୍ଦୁଝର କଲୋନୀ, କଟକ-୮*

## ନଟବର ବାଣୀ

ଆର୍ଯ୍ୟ ଜାତିର ପ୍ରଥମ ଧର୍ମଗ୍ରନ୍ଥ ବେଦ ଥିଲା ମୂଳତଃ ଏକ । ପରବର୍ତ୍ତୀ ସମୟରେ ଋକ୍, ଯଜୁଃ, ସାମ ଓ ଅଥର୍ବ ନାମରେ ବୈଦିକ ମନ୍ତ୍ରକୁ ଚାରି ଭାଗରେ ବିଭକ୍ତ କରାଗଲା । ସମୟର ଅଗ୍ରଗତି ସଙ୍ଗେ ଏ ଦେଶରେ ବହୁ ସାଧକଙ୍କ ଦ୍ୱାରା ବିଭିନ୍ନ ବିଦ୍ୟା ବିକାଶ ଲାଭ କଲା । ପ୍ରତ୍ୟେକ ବିଦ୍ୟା ଓ ଶାସ୍ତ୍ରକୁ କେନ୍ଦ୍ରକରି ଭିନ୍ନ ଭିନ୍ନ ସମ୍ପ୍ରଦାୟ ମଧ୍ୟ ଦେଖାଦେଲେ । ପ୍ରତ୍ୟେକ ସମ୍ପ୍ରଦାୟର ଅନୁଗାମୀମାନେ ନିଜ ନିଜ ବିଦ୍ୟା ବା ଶାସ୍ତ୍ରକୁ ବେଦ ଆସନରେ ସୁପ୍ରତିଷ୍ଠ କରବାକୁ ଚେଷ୍ଟା କଲେ । ନିଜ ନିଜ ବିଦ୍ୟାକୁ ବେଦର ମାନ୍ୟତା ପ୍ରଦାନ ନିମିତ୍ତ ସେମାନେ ନିଜ ନିଜ ବିଦ୍ୟାକୁ 'ପଞ୍ଚମବେଦ' ବୋଲି ପ୍ରଚାର କଲେ । ତେଣୁ ପଞ୍ଚମବେଦ ଶବ୍ଦ କୌଣସି ନିର୍ଦ୍ଦିଷ୍ଟ ବିଦ୍ୟାର ବିଶେଷଣ ନୁହେଁ, କିମ୍ବା କୌଣସି ବିଦ୍ୟା ବା ଶାସ୍ତ୍ରକୁ 'ପଞ୍ଚମବେଦ' କହିଲେ କୌଣସି ନିର୍ଦ୍ଦିଷ୍ଟ ପୁସ୍ତକ ବା ଗ୍ରନ୍ଥ ଏହା ଦ୍ୱାରା ସୂଚିତ ହୁଏ ନାହିଁ ।

*ଓଡ଼ିଆ ସାହିତ୍ୟରେ ସ୍ୱର ପରିବର୍ତ୍ତନ (୧୯୭୬) ପୃ ୧୬୭*

# ସ୍ୱର୍ଗତ ସାର୍
# ଡଃ ନଟବର ସାମନ୍ତରାୟଙ୍କୁ ପତ୍ର

*ଡଃ ନିତ୍ୟାନନ୍ଦ ଶତପଥୀ*

ପରମ ପୂଜନୀୟେଷୁ,

ଆପଣ ଆଜି ସ୍ୱର୍ଗଲୋକରେ । ଚାହୁଁ ଚାହୁଁ ବର୍ଷଟାଏ ବିତିଗଲା । ଆପଣଙ୍କୁ ଶେଷ ଦର୍ଶନ କରି ନପାରିବାର କ୍ଷୋଭରେ ମୁଁ ଯେ କି ମର୍ମାନ୍ତିକ ଆତ୍ମଦହନ ଭିତରେ ଛଟପଟ ହୋଇଛି ତାହା ଆପଣ ଜାଣି ନଥିବେ ହୁଏତ । କାରଣ ସେଦିନ ଆପଣଙ୍କ ଘରେ କେତେ ମାନ୍ୟଗଣ୍ୟ ଲୋକଙ୍କ ପଦପାତ ଓ ଅଶ୍ରୁ ନିବେଦନ, କେତେ ଫୁଲର ତୋଡ଼ା ଓ ହାରରେ ଆପଣଙ୍କ ବୁଦ୍ଧିଦୀପ୍ତ କ୍ଷୀଣ ତନୁଟି ଘୋଡ଼େଇ ହୋଇ ଯାଇଥିବ ହୁଏତ । ପୁଣି ଆପଣଙ୍କ ଆତ୍ମୀୟ ଓ ସନ୍ତାନମାନଙ୍କ ଅଶ୍ରୁ ଉଚ୍ଛ୍ୱାସରେ ଆପଣଙ୍କ ସ୍ୱର୍ଗଯାତ୍ରାର କମଣ୍ଡଳୁ ପରିପୂର୍ଣ୍ଣ ହୋଇ ଯାଇଥିବ । ତେଣୁ ମୋ ପରି ଜଣେ ପ୍ରିୟ ଛାତ୍ରର ଅଶ୍ରୁ ଧରି ରଖିବା ପାଇଁ ସେଥିରେ ଆଉ ହୁଏତ ଜାଗା ନଥିବ - ଏହା ସ୍ୱାଭାବିକ । ମୁଁ ଭୁବନେଶ୍ୱରଠାରୁ ଅନେକ ଦୂରରେ ଥାଇ ଆପଣଙ୍କ ମୃତ୍ୟୁର ଖବର ପାଇଲା ବେଳେ ଶିହରି ଉଠୁଥିଲି । ଏହାହିଁ କ'ଣ ଥିଲା ମୋ ପାଇଁ ଆପଣଙ୍କ କ୍ରୋଧର ଶାସ୍ତି ଯେ ମୁଁ ଆପଣଙ୍କୁ ଶେଷ ମୁହୂର୍ତ୍ତରେ ଦେଖିବା ସୁଯୋଗରୁ ବଞ୍ଚିତ ହେବି । ଯେହେତୁ ମୁଁ ଆପଣଙ୍କୁ ଆପଣ ଚାହିଁବା ସତ୍ତ୍ୱେ ଯାଇ ଦେଖା କରିପାରୁ ନଥିଲି - ସେଇଥିପାଇଁ କ୍ରୋଧ ଓ ଅଭିମାନ । ଆପଣ କ'ଣ ଜାଣନ୍ତି ନାହିଁ ମୁଁ କିପରି ବିପଥଗାମୀ ହୋଇ ଚାରୋଟି ବର୍ଷ ମଫସଲରେ ବିତାଇଥିଲି । ସେ ସବୁ କଥା ଆପଣଙ୍କୁ ଖୋଲି କହିବାକୁ ମୋର ସାହସ ନଥିଲା; ଯେହେତୁ ଆପଣ ଥିଲେ ରାଜନୀତିଠାରୁ ବହୁ ଉର୍ଦ୍ଧ୍ୱରେ । ଜଣେ ସିଦ୍ଧ ସାଧକ ତପସ୍ୱୀଙ୍କୁ କ'ଣ ଛାତ୍ରଟିଏ ତା' ଜୀବନର ବ୍ୟର୍ଥ ଅଭିଳାଷ କଥା କହି ପାରନ୍ତା ? ଆପଣ ଗବେଷଣା ଜଗତରେ ସବୁବେଳେ ଏତେ ନିବିଷ୍ଟ ଥାଆନ୍ତି ଯେ ଆପଣଙ୍କୁ କୌଣସି ବ୍ୟକ୍ତିଗତ କଥା କହିବାକୁ ଯାହାକୁ ହେଲେ ସଙ୍କୋଚ ଲାଗିବ । ଆପଣଙ୍କ ସହିତ ଯେତେବେଳେ ସାକ୍ଷାତ୍ ହେଉଥିଲା ସାହିତ୍ୟ ବ୍ୟତୀତ ଅନ୍ୟ କୌଣସି କଥା ସେଠି ଉଠୁଥିଲା କି ? ଆପଣ ଯେପରି ମୋ ପରି ଛାତ୍ରଟିଏକୁ ଅପେକ୍ଷା କରିଥାନ୍ତି - ସାକ୍ଷାତ୍ ହେଲେ ଆପଣଙ୍କ ଅନୁସନ୍ଧାନର ଶେଷତମ ରହସ୍ୟକୁ ଫିଟାଇ ଦିଅନ୍ତି । କେଉଁଠି ଅଟକି ଯାଇଛନ୍ତି - କେଉଁ ପ୍ରାମାଣିକ ତଥ୍ୟ ପାଇଁ ଅପେକ୍ଷା କରି ରହିଛନ୍ତି । କିନ୍ତୁ ଆପଣଙ୍କ ନିର୍ଦ୍ଦେଶ ସତ୍ତ୍ୱେ କୌଣସି ପ୍ରିୟଛାତ୍ର ଖୋଜାଖୋଜି କରି ତଥାପି ସେ ବହିଟିକୁ ଆପଣଙ୍କ ପାଖକୁ ପଠାଇ ନାହାନ୍ତି - ସେଥିପାଇଁ ଆପଣଙ୍କ କାମ ଅଟକି ଯାଇଛି । ଗବେଷଣାରେ ଏତେ ତନ୍ମୟତା ଓ ନୂଆ ତଥ୍ୟ ଅନ୍ୱେଷଣରେ ଏତେ ନିବିଷ୍ଟତା ମୁଁ ମୋର ଅନ୍ୟ କୌଣସି ଅଧ୍ୟାପକ-ଗୁରୁଙ୍କଠାରେ ସନ୍ଧାନ କରି ପାରିନାହିଁ ।

ଦିନେ ଜଣେ ବନ୍ଧୁଙ୍କୁ କହୁଥିଲି - ଅନେକ ଦିନ ହେବ ସାର୍‌ଙ୍କୁ ଦେଖା କରିବାକୁ ଯାଇ ପାରିନାହିଁ । ବେଳ ପାଉନି । କେତେ ବଡ଼ ଅପରାଧମୂଳକ କଥାଟିଏ । ଖାଇବାକୁ, ପଢ଼ିବାକୁ, ଲେଖିବାକୁ, ବାଣୀ ବିହାର ଯାଇ ନିର୍ଦ୍ଦିଷ୍ଟ କିଛି କାମ କରିବାକୁ, ବିଭ୍ରାନ୍ତ ହୋଇ ମଫସଲରେ ବୁଲିବାକୁ ବେଳ ମିଳୁଛି ଅଥଚ ଆପଣଙ୍କୁ ଦେଖା କରିବାକୁ ବେଳ ନାହିଁ । ସେଇ ଅଭିମାନରେ କ'ଣ ରାଗି ମୋତେ ଶେଷ ଦେଖା ଦେଲେନାହିଁ ? କିନ୍ତୁ ମୋଠାରେ ଆପଣ ଏତେ ଆଶା ରଖିଥିଲେ କାହିଁକି ? ମୁଁ କ'ଣ ଆପଣଙ୍କ ଦୃଷ୍ଟିରେ ରହି ଆପଣଙ୍କ ଗବେଷଣା-ରାସ୍ତାର ଉତ୍ତର ଦାୟାଦ ? ମୋର 'ସବୁଜରୁ ସାମ୍ପ୍ରତିକ' ଆପଣଙ୍କୁ ଆକୃଷ୍ଟ କରିଥିଲା ଓ ସେ ବିଷୟରେ ଆପଣ ମୋ ଉପରେ ଅଧିକ ଆଶାପୋଷଣ କରୁଥିଲେ ବୋଲି ମୋର ହୃଦବୋଧ ହେଉଥିଲା । ଆପଣଙ୍କ ଐତିହାସିକ ଗବେଷଣା ଧାରାକୁ ମୁଁ 'ସବୁଜରୁ ସାମ୍ପ୍ରତିକ'ରେ ସମ୍ପ୍ରସାରିତ କରିଥିଲି ବୋଲି ଆପଣଙ୍କ ଏତେ ଭରସା ? ଅର୍ଥାତ୍ କବିଟିଏ ବିଷୟରେ ଆଲୋଚନା କଲାବେଳେ ତା'ର କବିତାର ପ୍ରଥମ ପ୍ରକାଶନ ତାରିଖକୁ ପତ୍ର ପତ୍ରିକାରୁ ଖୋଜି ତାହାକୁ ହିଁ ରଚନା କାଳ ଭାବେ ଧରି ଆଲୋଚନା ଆଗେଇ ନେବାର ପ୍ରୟାସ ମୁଁ ଆପଣଙ୍କଠାରୁ ହିଁ ଶିଖିଥିଲି । ପୁଣି ନିର୍ଭର କରି ଶିଖିଥିଲି ସାହିତ୍ୟର ବିଶ୍ଲେଷଣ ପଦ୍ଧତିରେ ସନ ତାରିଖର ଐତିହାସିକ ଗୁରୁତ୍ୱକୁ ଉପଲବ୍ଧି କରିବାରେ । ଆପଣ ଯେଉଁଠି ଆପଣଙ୍କ 'ଓଡ଼ିଆ ସାହିତ୍ୟର ଇତିହାସ' ଛାଡ଼ିଥିଲେ ସେହିଠାରୁ ହିଁ ମୁଁ ଆରମ୍ଭ କରିଥିଲି ମୋର ଗବେଷଣା । ଏହା କ'ଣ ଥିଲା କାକତାଳୀୟ ନା ବିଧି ନିର୍ଦ୍ଦିଷ୍ଟ ?

ମୁଁ ମୋର ଗୋଟିଏ ଲେଖାରେ ଗୋପବନ୍ଧୁଙ୍କ ସମ୍ପର୍କରେ ତାଙ୍କ 'ବନ୍ଦୀର ଆତ୍ମକଥା'ରୁ ଏକ Textual discovery ବିଷୟରେ ଆପଣଙ୍କୁ କହିଥିଲି । 'ବନ୍ଦୀର ଆତ୍ମକଥା' ପଦ ଓ ପଂକ୍ତିରୁ ମୋର ଦୃଢ଼ ଧାରଣା ହୋଇଥିଲା ଯେ ସେ ପୁସ୍ତକର କିଛି ଅଂଶ କଟକ ଜେଲରେ ଓ ଅଧିକ ଅଂଶ ହଜାରିବାଗ୍ ଜେଲ୍‌ରେ ଲେଖା ହୋଇଛି । ବୋଧହୁଏ 'ସମାଜ'ର ଗୋପବନ୍ଧୁ ବିଶେଷାଙ୍କରୁ ମୋ ଲେଖାଟି ପଢ଼ି ଆପଣ ଖୁବ୍ ତନ୍ନତନ୍ନ ଭାବେ ସେ ବିଷୟରେ ମୋ ସହିତ ଆଲୋଚନା କରିଥିଲେ ଓ ଅଧିକ ତଥ୍ୟ ସଂଗ୍ରହ ପାଇଁ ମୋତେ କହିଥିଲେ । ଆପଣଙ୍କ ମନକୁ କେବେଠାରୁ ଗୋପବନ୍ଧୁ ଘାରିବାକୁ ଲାଗିଲା ଜାଣେ ନାହିଁ; କିନ୍ତୁ ମୁଁ ଗୋପବନ୍ଧୁଙ୍କ ଜୀବନୀକାର ହୋଇଥିବାରୁ ଆପଣଙ୍କର ମୋ ପ୍ରତି ଶ୍ରଦ୍ଧା ବଢ଼ିଯାଇଥିଲା । ମୋର ଦୃଢବିଶ୍ୱାସ ଥିଲା ଯେ ୧୯୧୨ ମସିହାରେ ଗୋପବନ୍ଧୁଙ୍କ 'ଅବକାଶ ଚିନ୍ତା'ର ଆଉ ଏକ ପରିବର୍ଦ୍ଧିତ ସଂକଳନ ହୋଇଥିଲା । ୧୮୯୯ରେ ମାତ୍ର ୯ଟି କବିତାକୁ ନେଇ ୧ମ ସଂସ୍କରଣ ପ୍ରକାଶ ପାଏ । ତା'ପରେ ସତ୍ୟବାଦୀ ପ୍ରେସରୁ ମୁଦ୍ରିତ ୧୯୪୨ ସଂସ୍କରଣର 'ମୁଖବନ୍ଧ'ରେ ନିଜେ ରାଧାନାଥ ରଥ ୩୦ ବର୍ଷ ତଳେ ଏ ପୁସ୍ତକଟି ପ୍ରଥମେ ମୁଦ୍ରିତ ହୋଇଥିବା କଥା ଲେଖନ୍ତି । ରାଧାନାଥ ବାବୁଙ୍କ ତଥ୍ୟ ସୂଚନା ସମ୍ପର୍କରେ କାହାର ସନ୍ଦେହ କରିବାର ନୁହେଁ । କିନ୍ତୁ ଆପଣ ମୋତେ ଯେଉଁ ସୂଚନା ଦେଇଥିଲେ ତଦନୁସାରେ ଏପରି କୌଣସି ୧୯୧୨ ମସିହାର ମୁଦ୍ରଣ ଆପଣ ଦେଖି ନଥିବା କଥା କହିଥିଲେ । ପରେ ପରେ ବୋଧହୁଏ ୧୯୯୭ ଅକ୍ଟୋବର 'ନବରବି'ରେ ଆପଣଙ୍କର ଗୋପବନ୍ଧୁଙ୍କ ସମ୍ପର୍କରେ ଯେଉଁ ଆଲୋଚନାଟି ପ୍ରକାଶ ପାଇଲା ସେଥିରେ ସ୍ପଷ୍ଟ ଭାବେ ଲେଖିଥିଲେ ଯେ ୧୮୯୯ ମସିହାଠାରୁ ୧୯୩୧ମସିହା ଭିତରେ ଗୋପବନ୍ଧୁଙ୍କର କୌଣସି ରଚନା 'ଅବକାଶ ଚିନ୍ତା' ନାମରେ

ପ୍ରକାଶିତ ହୋଇନାହିଁ । କିନ୍ତୁ ଆପଣ ସେଇ ପ୍ରବନ୍ଧରେ ମଧ୍ୟ ସାବ୍ୟସ୍ତ କରିଛନ୍ତି ଯେ "୧୯୦୧ ମସିହା (ଅର୍ଥାତ୍ ଏଫ୍.ଏ. ଶ୍ରେଣୀରେ ଅଧ୍ୟୟନ) ଓ ୧୯୨୨ରେ ଜେଲଯିବା -ଏଇ ଦୁଇଟି ସମୟ ସୀମା ମଧ୍ୟରେ 'ଅବକାଶ ଚିନ୍ତା' ପୁସ୍ତକର ପ୍ରାୟ ଅଧିକାଂଶ କବିତା ରଚିତ ଓ ପ୍ରକାଶିତ ହୋଇଛି ।" କିନ୍ତୁ ଅଧିକାଂଶ କାହିଁକି ପ୍ରାୟ ସମସ୍ତ କବିତା ରଚିତ ହୋଇଛି ବୋଲି ଲେଖିଥିଲେ ବୋଧହୁଏ ଅପ୍ରାସଙ୍ଗିକ ହୋଇନଥାନ୍ତା । କାରଣ ଆପଣହିଁ 'ଅବକାଶ ଚିନ୍ତା କବିତାର କାଳ ନିରୂପଣ'ରେ ଯେଉଁ ତଥ୍ୟ ପ୍ରଦାନ କରିଛନ୍ତି ତାହା ହିଁ ସାବ୍ୟସ୍ତ କରେ ଯେ ସମସ୍ତ ରଚନା ୧୯୨୨ ମଧ୍ୟରେ ହିଁ ରଚିତ ହୋଇଛି । କିନ୍ତୁ ୧୯୧୨ ମଧ୍ୟରେ 'ଅବକାଶ ଚିନ୍ତା'ର ଅର୍ଦ୍ଧାଧିକ କବିତା ରଚିତ ହୋଇଥିଲା ବେଳେ 'ଅବକାଶ ଚିନ୍ତା'ର ପ୍ରଥମ ପରିବର୍ଦ୍ଧିତ ସଙ୍କଳନ ୧୯୧୨ରେ ପ୍ରକାଶ ପାଇଥିବା ଅଯୌକ୍ତିକ ନୁହେଁ । ନଚେତ୍ କେଉଁ ପୁସ୍ତକର ଭିତ୍ତିରେ ଶ୍ରୀ ରାଧାନାଥ ରଥ ୧୯୪୨ର ସଂସ୍କରଣ ପ୍ରକାଶ କଲେ ? ସେ ତେଣୁ ମୁଖବନ୍ଧରେ ଯେଉଁ କଥାଟି କହିଛନ୍ତି ଆପଣ ସେ ବିଷୟରେ ଆପଣଙ୍କ ପ୍ରବନ୍ଧରେ କୌଣସି ସୂଚନା ଦେଇ ନଥିବା ଚିନ୍ତାର ବିଷୟ । ତେଣୁ ଆପଣଙ୍କର ଓ ମୋ ମଧ୍ୟରେ ସେଦିନ ଆପଣଙ୍କ ଘରେ ଏଇ ବିଷୟରେ ଯେଉଁ ଦୀର୍ଘ ଆଲୋଚନା ହୋଇଥିଲା ତାହା ଅସମ୍ପୂର୍ଣ୍ଣ ରହିଗଲା - ଏବଂ ମୋ ମୃତ୍ୟୁ ପର୍ଯ୍ୟନ୍ତ ବୋଧହୁଏ ତାହାର ଗ୍ରନ୍ଥିମୋଚନ ହୋଇ ପାରିବ ବୋଲି ମୋର ବିଶ୍ୱାସ ହେଉନାହିଁ । କାରଣ ଓଡ଼ିଶାରେ ଆଉ କାହା ପାଖରୁ ଗବେଷକମାନେ ସାହିତ୍ୟର କାଳ ନିରୂପଣ ପାଇଁ ଯାଇ ମୀମାଂସାରେ ପହଞ୍ଚି ପାରିବେ ? ତେବେ ସାର୍, ମୋ ମନରେ ଗୋଟିଏ ପ୍ରଶ୍ନ ଏବେ ଉଠୁଛି- ଯାହା ସେତେବେଳେ ମୁଁ ଆପଣଙ୍କ ସହ ଆଲୋଚନା ବେଳେ ସୂଚନା ଦେଇ ପାରିନଥିଲି । ଗୋପବନ୍ଧୁଙ୍କ ଜୀବଦ୍ଦଶାରେ ଯଦି 'ଧର୍ମପଦ','ବନ୍ଦୀର ଆତ୍ମକଥା','ଗୋ-ମାହାତ୍ମ୍ୟ', 'କାରାକବିତା', ଓ 'ନଚିକେତା ଉପାଖ୍ୟାନ' ପ୍ରକାଶ ପାଇପାରିଲା, 'ଅବକାଶ ଚିନ୍ତା'ର ବୃହତ୍ତର ସଂସ୍କରଣ ପ୍ରକାଶ ନ ପାଇଲା କାହିଁକି ? ଏଥିରୁ କ'ଣ ଅନୁମାନ କରିପାରିବା କି ୧୯୧୨ ମସିହାରେ 'ଅବକାଶ ଚିନ୍ତା'ର ପରିବର୍ଦ୍ଧିତ ସଂସ୍କରଣ ପ୍ରକାଶ ପାଇଥିବାରୁ ଏହି ଗ୍ରନ୍ଥର ପୁନଃସଂସ୍କରଣର ଆବଶ୍ୟକତା ନଥିଲା । ତେବେ ଏପରି ଅନୁମାନ କେତେଦୂର ଅଭ୍ରାନ୍ତ ହେବ ସେକଥା ଆପଣ ହିଁ କହି ପାରିଥା'ନ୍ତେ । ଏପରି ଏକ ସମସ୍ୟାର ଗ୍ରନ୍ଥିମୋଚନ ହୋଇ ପାରିନଥିବାରୁ ମୁଁ ମର୍ମେ ମର୍ମେ କେତେ ଛଟପଟ ହେଉଛି ତାହା ଏ ଚିଠିରେ ଆପଣଙ୍କୁ ଜଣାଇବାକୁ ମୋର ଭାଷା ନାହିଁ ।

ମନେପଡୁଛି ଦିନେ ଆପଣଙ୍କ ବାରଣ୍ଡାରେ ବସି ଆମେ 'ବନ୍ଦୀର ଆତ୍ମକଥା' ବିଷୟ ଆଲୋଚନା କରୁଥିଲେ । ସେତେବେଳକୁ ମୋର 'ବନ୍ଦୀର ଆତ୍ମକଥାରେ କବି ଗୋପବନ୍ଧୁ' ଲେଖାଟି ପ୍ରକାଶ ପାଇଥାଏ । ଯେ କୌଣସି ସମାଲୋଚକ ସେ କବିତା ଗ୍ରନ୍ଥଟି ପଢ଼ିଲେ ନିଶ୍ଚୟ କହିବ ଯେ ତା'ର ପ୍ରଥମ ଦଶପୃଷ୍ଠା କଟକ ଜେଲ୍‌ରେ ଓ ଅବଶିଷ୍ଟ ହଜାରୀବାଗ୍ ଜେଲ୍‌ରେ ଲିଖିତ ହୋଇଛି । ମୋ ମନରେ କିନ୍ତୁ ସାମାନ୍ୟ ଡର ଥାଏ - କାଳେ ଆପଣ ଆଉକିଛି ତର୍କ ବାଡ଼ି ବସିବେ ଓ ମୋ କାଳ ନିରୂପଣକୁ ବିବାକ୍ ଅସ୍ୱୀକାର କରିବେ । କିନ୍ତୁ ସେପରି କିଛି ହେଲାନାହିଁ । ଅନେକ ପରେ ୧୯୯୪ ଜାନୁୟାରୀରେ 'କୋଣାର୍କ' ପତ୍ରିକାରେ ଆପଣଙ୍କ ରଚନା 'ବନ୍ଦୀର ଆତ୍ମକଥାଃ ଏକ କଳାତ୍ମକ ବିଶ୍ଳେଷଣ'

ଯେତେବେଳେ ପ୍ରକାଶ ପାଇଲା ମୁଁ ଆଶ୍ୱସ୍ତ ହେଲି । ବୋଧହୁଏ 'ବନ୍ଦୀର ଆତ୍ମକଥା' ସମ୍ପର୍କରେ ଯେତେ ଆଲୋଚନା ଏହା ପୂର୍ବରୁ ହୋଇଥିଲା କେହି ଏ ସରଳ କଥାଟିକୁ ଯୁକ୍ତିଯୁକ୍ତ ଭାବେ ଉପସ୍ଥାପିତ କରି ନଥିଲେ । 'ବନ୍ଦୀର ଆତ୍ମକଥା' ସମ୍ପର୍କରେ ଏତେ ଦୀର୍ଘ ପ୍ରବନ୍ଧ ଆପଣଙ୍କ ଆଗରୁ ଆଉ କିଏ ଲେଖିଥିଲା କି ?

ହେ ସ୍ୱର୍ଗତ ଆତ୍ମା, ଆପଣଙ୍କୁ ପୁଷ୍ପ ନୁହେଁ ଲୁହର ଅଞ୍ଜଳି ଦେଇ ଅବା ନୀରାଜନା କରାଯାଇ ପାରେ । ନିଜର ଛୋଟ ପଢ଼ାଘରେ ଖଟ ଉପରେ ବସି ଆପଣ ଦୀର୍ଘ ଦିନର ତପସ୍ୟାରେ ଓଡ଼ିଆ ସାହିତ୍ୟକୁ ଯାହା ସବୁ ଦେଇଗଲେ ସେ ଅତୁଳନୀୟ ଦାନରେ ଆମେ ସମସ୍ତେ ପରିପୁଷ୍ଟ ହୋଇଛୁ । ପ୍ରାଚୀନଠାରୁ ଆଧୁନିକ ପର୍ଯ୍ୟନ୍ତ ସବୁ ଦିଗକୁ ଆପଣ ହାତ ବଢ଼େଇ ବସି ରହିଛନ୍ତି ଓ ପଳପଳ କରି ଆପଣଙ୍କ ଆୟୁ ଦେଇ ଆପଣ ଯେଉଁ ସତ୍ୟରେ ଉପନୀତ ହୋଇଛନ୍ତି ଆମେ ଓ ଆମ ସାହିତ୍ୟର ସମାଲୋଚନା ଧାରା ତାହା ଦ୍ୱାରା ଉଦ୍‌ଭାସିତ ହୋଇଛି । ଆପଣ ପଡ଼ିଗଲା ପରେ ଚଳନ୍ତ୍ ଶକ୍ତିରହିତ ହୋଇ ଅନେକ ଦିନ ଧରି ବିଛଣାରେ ପଡ଼ିରହିବା ଭିତରେ ବାରମ୍ବାର ଆପଣଙ୍କ ପ୍ରିୟ ଛାତ୍ରମାନଙ୍କୁ ଖୋଜିଛନ୍ତି । ଦେଖାହେଲେ କ'ଣ ଯେପରି ଗୁଡ଼ାଏ କହି ପକାଇବାକୁ ଖୁବ୍ ବ୍ୟଗ୍ର ହୋଇ ଉଠିଛନ୍ତି । ହେଲେ ମୋ ପରି ଛାତ୍ରମାନେ କେତେ ବା ଆପଣଙ୍କୁ ସାମୀପ୍ୟ ଦେଇପାରିଛନ୍ତି ? ଥରେ ଆପଣଙ୍କ ସହିତ ଭେଟ ହେଲେ ଅନ୍ୟୂନ ଦୁଇଘଣ୍ଟା ରହିବାକୁ ହୁଏ । ଆପଣ ତ ଛାଡ଼ିବେ ନାହିଁ ଗୋଟିଏ ପରେ ଗୋଟିଏ ସାହିତ୍ୟର ସମସ୍ୟା ସମ୍ପର୍କରେ ଯୁକ୍ତି ଉପସ୍ଥାପନ କରିବେ । ଆମେ ସେଠି ନୀରବ ଶ୍ରୋତା ମାତ୍ର । ଚା' ଓ ଜଳଖିଆ ବ୍ୟବସ୍ଥା ହେବ । ବେଳେବେଳେ ଏପରି କ୍ଲିଷ୍ଟଯୁକ୍ତି ବି ଆପଣ ଥୋଇବେ ଯେ ଆମ ମୁଣ୍ଡ ସେଥିରେ ପଶୁ ନଥିବ । ଯେପରି 'ସଖାହୀନ ପଞ୍ଚସଖା' । ଓଡ଼ିଆ ସାହିତ୍ୟର ସେ ଇଲାକାକୁ ଜାଣି ଜାଣି ମୁଁ ମୋ ପ୍ରବେଶ ଅଧିକାରକୁ ନାକଚ୍ କରି ଦେଇଥିଲି । କାରଣ ବିସ୍ଫୋରଣମୁଖୀ ଆଧୁନିକ କବିତା ପାଇଁ ଅନେକ କାମ କରିବାକୁ ଥିଲା । ମଣିଷର ସୀମିତ ସମୟ ଓ ଶକ୍ତି ଭିତରେ ସାହିତ୍ୟର ସବୁ ଅଞ୍ଚଳକୁ ଖୋଳି ସେଥିରୁ ରତ୍ନ ଆହରଣ କରିବା ସମ୍ଭବ ନୁହେଁ । କିନ୍ତୁ ଆପଣ ଥିଲେ ଆମ ପାଇଁ ପରମ ବିସ୍ମୟ । ଆପଣ ସବୁ ଅଞ୍ଚଳକୁ ପଶି ଯାଇ ପାରୁଥିଲେ ଓ ମୁକ୍ତା ସନ୍ଧାନ କରୁଥିଲେ । ମୁଁ ଓ ମୋ ସମସାମୟିକମାନେ ୧୯୬୨ରେ ଏମ୍.ଏ. ପରୀକ୍ଷା ଦେଲା ବେଳକୁ ମାନକ-ସମାଲୋଚନା ଭାବରେ ହାତଗଣତି ମାତ୍ର କେତୋଟି ବହି ମିଳୁଥିଲା ବେଳେ ଆପଣଙ୍କ ପ୍ରବନ୍ଧ ଓ କେତୋଟି ବହି ହିଁ ଥିଲା ଆମର ପରୀକ୍ଷା ବୈତରଣୀ ପାରି ପାଇଁ ସମ୍ବଳ । ମୁଁ ଏମ୍.ଏ. ଶ୍ରେଣୀରେ Post-Radhanath Literature ବିଶେଷ ପତ୍ର ନେଇଥାଏ । ଖୁବ୍ ବ୍ୟାପକ ଅଞ୍ଚଳ । କବିତାଠାରୁ ଆରମ୍ଭ କରି ଗଳ୍ପ ଉପନ୍ୟାସ ବାଟ ଦେଇ ସମାଲୋଚନା ପର୍ଯ୍ୟନ୍ତ । ଗୋଟିଏ ବର୍ଷର ସୀମା ମଧ୍ୟରେ ଏତେ ବ୍ୟାପକ ସାହିତ୍ୟକୁ ଆୟତ୍ତ କରି ପରୀକ୍ଷା ପାଇଁ କ'ଣ ପ୍ରସ୍ତୁତି କରିହେବ -ଏ ଆଶଙ୍କା ମୋ ମନରେ ସବୁବେଳେ ଥାଏ । କିନ୍ତୁ କ୍ଲାସ୍‌ରେ ଆପଣ ଯେଉଁପରି ଭାବରେ ପଢ଼ାନ୍ତି ଓ ଆମ ମନରେ ପତିଆରା ଭରି ଦିଅନ୍ତି ତାହା ହିଁ ଆମ ପାଇଁ ପ୍ରଚଣ୍ଡ ପାଥେୟରେ ପରିଣତ ହୋଇଯାଏ । ଆପଣ ମୋ ବିଶେଷ ପତ୍ରର ପରୀକ୍ଷକ ଭାବେ ମୋତେ ସର୍ବାଧିକ ୬୧ ନମ୍ବର ଦେଇ ଆଶୀର୍ବାଦ କରିଥିବା କଥା ମୁଁ ଜୀବନସାରା ଭୁଲିବି ନାହିଁ । କିନ୍ତୁ ଅନ୍ୟ ବିଶେଷପତ୍ର ଛାତ୍ରମାନେ ୭୦

ପର୍ଯ୍ୟନ୍ତ ରଖିଲା ବେଳେ ଆଧୁନିକ ପାଇଁ ଆପଣ ହାତଖୋଲା ହୋଇ ପାରୁନଥିଲେ । ମୁଁ ସେ କଥା କହିବାରୁ ଆପଣ କହିଲେ ''ମୁଁ ଦେଇଥିବା ୬୧ ନମ୍ବର ସହିତ ୭୦ ସମାନ ନୁହେଁ ।'' ଠିକ୍‌ ତାହା ହିଁ ହେଲା । ଆପଣଙ୍କ ସଦିଚ୍ଛାରୁ ମୁଁ ପବ୍ଲିକ୍ ସର୍ଭିସ୍ କମିଶନ୍ ଇଣ୍ଟରଭିଉରେ ୧୯୬୩ରେ ପ୍ରଥମ ସ୍ଥାନ ଅଧିକାର କଲି । ୬୧ ସହିତ ୭୦ ସମାନ ହୋଇ ପାରିଲା ନାହିଁ । ଆପଣଙ୍କ ଆଶୀର୍ବାଦରୁ ତା'ପରେ ପାହାଚକୁ ପାହାଚ ଅତିକ୍ରମ କରିଯିବାରେ ଯେତେ ସଂଘର୍ଷର ସମ୍ମୁଖୀନ ହୋଇଛି ତାହା ହୋଇଛି ଆକର୍ଷଣୀୟ ଓ ଉପଭୋଗ୍ୟ । ନିଜକୁ ଓ ଜୀବନକୁ ଚିହ୍ନିବାରେ ସବୁ ବିପର୍ଯ୍ୟୟ ଓ ବିଡ଼ମ୍ବନା ସାହାଯ୍ୟ କରିଛି । କିନ୍ତୁ ଆପଣ ଯେ ଉତ୍କଳ ବିଶ୍ୱବିଦ୍ୟାଳୟକୁ ରିଡର୍ ଭାବରେ ଆସିପାରିଲେ ନାହିଁ- କମ୍ ଅବଶୋଷ ଆମେ ଭୋଗିନାହୁଁ । ଆପଣଙ୍କୁ ଚିହ୍ନିବାରେ ସମୟ ମଧ୍ୟ କୃପଣ ଥିଲା; ଉପରିସ୍ଥମାନେ କେବଳ 'କ୍ୟାରିଅର୍'କୁ ଗୁରୁତ୍ୱ ଦେଉଥିଲେ, ଅଧ୍ୟୟନ ଓ ଗବେଷଣାକୁ ନୁହେଁ । ପୁଣି ଆପଣ ଥିଲେ ଅନବନତ । କାହା ପାଖରେ ନିଉଛାଳି ହୋଇ ନିଜ ପାଇଁ ଉନ୍ନତତର ଭାଗ୍ୟଟିଏ ମାଗି ନେବାକୁ ଆପଣ ଜୀବନସାରା କେବେବି ପ୍ରୟାସୀ ହୋଇ ନଥିଲେ । ଜଣେ ସରସ୍ୱତୀଙ୍କ ପୂଜାରୀ ଆଉ ବା କାହାକୁ ଶ୍ରେଷ୍ଠ ମଣି ପାରନ୍ତା ଯେ ଭାଗ୍ୟଲକ୍ଷ୍ମୀ ପାଇଁ ଅନୁନୟ କରନ୍ତା ? କିନ୍ତୁ ଆପଣ ଆସି ପାରିଥିଲେ ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗ ଗୌରାବାନ୍ୱିତ ହୋଇଥା'ନ୍ତା, ସତ୍-ଗବେଷଣାର ମାର୍ଗ ଓ ମାନ ଖୋଲିଥା'ନ୍ତା । କଳକାରଖାନାରୁ ଉତ୍ପାଦିତ ଦ୍ରବ୍ୟପରି ଓଡ଼ିଆ ବିଭାଗରେ ଥେସିସ୍-ଉତ୍ପାଦନ ଯନ୍ତ୍ର ବସି ନଥା'ନ୍ତା କିମ୍ବା ଛାତ୍ରଛାତ୍ରୀଙ୍କୁ ପ୍ରଥମ ଶ୍ରେଣୀ ଦେବା ପାଇଁ ଅଧ୍ୟାପକମାନଙ୍କ ଭିତରେ ଏତେ ଉଦ୍ଭଟ ପ୍ରତିଯୋଗିତା ଲାଗି ନଥା'ନ୍ତା । ଆପଣଙ୍କ ଚିନ୍ତାଧାରା, ଜୀବନ ଦର୍ଶନ, ସାହିତ୍ୟ ସେବା ଓ ଚେତନାସ୍ତରରୁ ଯେଉଁମାନେ ଥିଲେ ଦୂରବର୍ତ୍ତୀ ସେମାନେ ଆସନ ଦଖଲ କଲାବେଳେ ଆପଣ କିଛି ଦିନ ପାଇଁ ସ୍ୱତଃ ବିମର୍ଷ ହୋଇ ପଡ଼ିଥିବେ । କିନ୍ତୁ ମ୍ରିୟମାଣ ଆଦୌ ହୋଇନାହାନ୍ତି - ଏହା ହିଁ ଆଶ୍ୱାସନାର ବିଷୟ । ଜଣେ ସରସ୍ୱତୀ ପୂଜାରୀ ଏସବୁ ଅସଙ୍ଗତି ପାଇଁ କାହିଁକି ବା ବିଚଳିତ ହେବ ? ନିରଳସ ଓ ନିରାଡ଼ମ୍ବର ଜୀବନଯାପନ କରୁଥିବା ସାରସ୍ୱତ-ସାଧକ ପୁଣି ଗବେଷଣାର ଉତ୍କଣ୍ଠା ଓ ଅନୁସନ୍ଧାନର ଆନନ୍ଦ ମଧ୍ୟକୁ ସ୍ୱତଃ ଚାଲିଯିବା ବେଳେ ପରିପାର୍ଶ୍ୱର ଅବିଚାର କେତେ କ୍ଷୁଦ୍ର ଓ ଅଳୀକ ତାହା ଉପଲବ୍ଧ ହୋଇଥିବ । କିନ୍ତୁ ଯେଉଁମାନେ ଆପଣଙ୍କ ପ୍ରତି ଅବିଚାର କରିଥିଲେ ସେମାନଙ୍କୁ ଯଥୋଚିତ ସମ୍ମାନ ଦେବାରେ ଆପଣ କେବେବି କାର୍ପଣ୍ୟ ପ୍ରକାଶ କରି ନାହାନ୍ତି -ଏହାହିଁ ଆପଣଙ୍କ ଚରିତ୍ରର ଏକ ବିପୁଳ ବିଶାଳତା । ସାହିତ୍ୟ-ଗବେଷଣା କାଳରେ ଆପଣ ଅନେକ ଗବେଷକଙ୍କ ମତକୁ ଖଣ୍ଡନ ମଣ୍ଡନ କରିଛନ୍ତି- ତାହା ସାରସ୍ୱତ କ୍ଷେତ୍ରରେ ଏକ ଶୁଭ ପରମ୍ପରା ସୃଷ୍ଟି କରିବା କଥା । କିନ୍ତୁ ସାରସ୍ୱତ ପ୍ରତିଦ୍ୱନ୍ଦିତା ପରିବର୍ତ୍ତେ ଯେଉଁ ଗବେଷକମାନେ ବ୍ୟକ୍ତିଗତ ଅସୂୟା ଓ ଅହଙ୍କାରରେ ଆପଣଙ୍କୁ ଅପମାନିତ କରିବାକୁ ଚେଷ୍ଟା କରୁଥିଲେ ଓ ବେଳେବେଳେ ଆପଣଙ୍କୁ ଅବଜ୍ଞା କରୁଥିଲେ ସେମାନେ ସାହିତ୍ୟ-ଗବେଷଣାରେ ଆପଣଙ୍କ ଉଚ୍ଚତାକୁ ଯେ ଯାଇପାରି ନାହାନ୍ତି- ତାହା ଇତିହାସ ନିଶ୍ଚୟ ସ୍ୱୀକାର କରିବ ।

ଆପଣଙ୍କ ସହିତ ମୋର ପ୍ରଗତିବାଦୀ ସାହିତ୍ୟର ସଂଜ୍ଞା ଓ ପରିସରକୁ ନେଇ କିଛି

ସାରସ୍ୱତ ମତାନୈକ୍ୟ ସୃଷ୍ଟି ହୋଇଥିଲା । ଆମେ ସେ ବିଷୟରେ ପ୍ରତ୍ୟକ୍ଷ ଭାବେ ଆଲୋଚନା ମଧ୍ୟ କରିଛେ । ଆପଣ କେବଳ ମାର୍କ୍ସିଷ୍ଟ ବାମପନ୍ଥୀ ସାହିତ୍ୟକୁ ପ୍ରଗତିଶୀଳ ସାହିତ୍ୟ ଭାବେ ଚିହ୍ନଟ କଲାବେଳେ ମୁଁ ସ୍ୱାଧୀନତାକାମୀ, ଗାନ୍ଧିଚିନ୍ତାଧାରା ପ୍ରବର୍ତ୍ତିତ ସାହିତ୍ୟକୁ ତଥା କବିତା କ୍ଷେତ୍ରରେ ଆସିଥିବା ମାନବତାବାଦୀ, ଅତିବାସ୍ତବବାଦୀ, ସ୍ଥିତିବାଦୀ ଓ ବାମପନ୍ଥୀ ଚେତନାକୁ ପ୍ରଗତିଶୀଳ ଭାବେ ଚିହ୍ନଟ କରିଥିଲି ମୋ 'ସବୁଜରୁ ସାମ୍ପ୍ରତିକ' ପୁସ୍ତକରେ । ତଦନୁସାରେ ଯେଉଁ କବିତାରେ ବାକ୍‌ରୀତି, ଗଦ୍ୟଛନ୍ଦ ଓ ନୂତନ ପ୍ରତୀକ ତଥା ଚିତ୍ରକଳ୍ପର ପ୍ରୟୋଗ ହୋଇଛି ତାକୁ ମଧ୍ୟ ଏହି ପର୍ଯ୍ୟାୟଭୁକ୍ତ କରିଥିଲି । ପ୍ରଗତିଶୀଳ କବିତାର ଭାବ ପରି ଭାଷା ଓ ଭାସ୍ୱର୍ଯ୍ୟ ମଧ୍ୟ ନୂଆ ହେବା ଉଚିତ- ତା' ନହେଲେ ପାରମ୍ପରିକ ଭାଷା, ଛନ୍ଦ ଓ ପ୍ରତୀକ ନୂତନ କବିତାର ଭାବକୁ ବହନ କରିବାରେ ଅକ୍ଷମ ହେବ । ଆପଣ ମାର୍କ୍ସିଷ୍ଟ ଦୃଷ୍ଟି ଭଙ୍ଗୀରୁ ବିଚାର କଲାବେଳେ ମୁଁ ଭାରତୀୟ ଭିତ୍ତି ଭୂମିରେ କବିତାର ନୂତନ ରୂପସଜ୍ଜା ଓ ଅଙ୍ଗସଜ୍ଜାକୁ ଅଧିକ ଗୁରୁତ୍ୱ ଦେଉଥିଲି । ମୋ ବିଚାରରେ ଏଥିରେ ଆମର ମତାନ୍ତରର କାରଣ ନଥିଲା; ମତାନ୍ତର ହୋଇ ନାହିଁ ମଧ୍ୟ । ଏହି ସ୍ତରରେ ଆମ ସମ୍ପର୍କ ଗଢି ଉଠୁଥିଲା । ମୁଁ ଏତେ କାମରେ ବ୍ୟସ୍ତ ରହୁଥିଲି ଯେ ଚାହିଁଲେ ମଧ୍ୟ ଆପଣଙ୍କ ପାଖକୁ ବାରମ୍ବାର ଯାଇ ପାରୁନଥିଲି । ଅନୁଶୋଚନା ଅବଶ୍ୟ କରୁଥିଲି । କିନ୍ତୁ ସାହିତ୍ୟ ଜଗତରୁ ପ୍ରାୟ ଚାରିବର୍ଷ ଦୂରେଇ ଯାଇଥିବାରୁ ଓ ଗାଁ-ଗହଳିରେ ସମୟ ବିତାଉଥିବାରୁ ଆପଣଙ୍କ ଜୀବନ-ସାୟାହ୍ନର ଶେଷ ଚାରିବର୍ଷରେ ହୁଏତ ଚାରିଥର ମଧ୍ୟ ଆପଣଙ୍କୁ ଦେଖା କରି ପାରିନାହିଁ । କେବେ କେବେ ମୁଁ ତତ୍ତ୍ୱାବଧାନ କରୁଥିବା ଥେସିସ୍‌ର ପରୀକ୍ଷକ ଭାବେ ବାଣୀ ବିହାର ପରିସରକୁ ଆପଣ ଆସିଛନ୍ତି; କିନ୍ତୁ ଆମ ବିଭାଗର ରଜତ ଜୟନ୍ତୀ ଉତ୍ସବକୁ (୧୯୯୪) ଆପଣ ଯେ ଆସି ପାରିଲେ ନାହିଁ, ଗୋଡ଼ ଭାଙ୍ଗିଯାଇ ଶଯ୍ୟାଶାୟୀ ଥିଲେ, ଆମେ ସମସ୍ତେ ଆପଣଙ୍କ ଅନୁପସ୍ଥିତି ମର୍ମେ ମର୍ମେ ଅନୁଭବ କରିଛୁ । ସେଥିପାଇଁ ମୁଁ ଆପଣଙ୍କୁ ଘରେ ଭେଟି ଉପାୟନ ଓ ମାନପତ୍ର ଦେଇ ଆସିଥିଲି । ସେଦିନ ଆପଣଙ୍କ ପାଖରୁ ଅଶ୍ରୁଭରା ଆଖିରେ ମୁଁ ବିଭାଗକୁ ଫେରି ଆସି ଆପଣଙ୍କ ସ୍ୱାସ୍ଥ୍ୟ ଓ ମନର ଅବସ୍ଥା ସମ୍ପର୍କରେ ବନ୍ଧୁମାନଙ୍କୁ କହିଥିଲି ।

ମାନପତ୍ର ଓ ଉପାୟନଠାରୁ ଆପଣ ଥିଲେ ଉର୍ଦ୍ଧ୍ୱରେ । କିନ୍ତୁ 'ଶାରଳା ପୁରସ୍କାର' ପାଇଁ ଆପଣ ଆଶାୟୀ ଥିଲେ ବୋଲି ଆପଣଙ୍କ ବନ୍ଧୁମାନଙ୍କ ମୁହଁରୁ ଶୁଣିଥିଲି । ଶାରଳା ପୁରସ୍କାର ଉପଦେଷ୍ଟା ମଣ୍ଡଳୀ ମୂଳରୁ ଧରିନେଇ ଥିଲେ ଯେ ଓଡ଼ିଆ ସାହିତ୍ୟର ଦିଗ୍‌ଗଜ ପରିଣତ ବୟସ୍କ ଲେଖକମାନେ ଏହି ପୁରସ୍କାରରୁ ଉର୍ଦ୍ଧ୍ୱରେ । ସେଇ ମର୍ମରେ ଶ୍ରୀ ଗୋପିନାଥ ମହାନ୍ତି, କାହ୍ନୁଚରଣ ମହାନ୍ତି, କାଳିନ୍ଦୀ ଚରଣ ପାଣିଗ୍ରାହୀ, ସଚ୍ଚିଦାନନ୍ଦ ରାଉତରାୟ ଓ ଆପଣ ଏ ପୁରସ୍କାର ପାଇଁ ବିବେଚିତ ହୋଇନଥିଲେ । କିନ୍ତୁ ଆଜି ବୁଝୁଛି ଏପରି ଏକ ନିଷ୍ପତ୍ତି ବୋଧହୁଏ ଠିକ୍ ନଥିଲା । କାରଣ ପରବର୍ତ୍ତୀ ସମୟରେ ସତ୍ୟନାରାୟଣ ରାଜଗୁରୁ ଓ ଗୋପାଳ ଛୋଟରାୟଙ୍କୁ ମଧ୍ୟ ଏ ପୁରସ୍କାର ଦିଆଯାଇଛି । ତେବେ ଆପଣଙ୍କୁ ଦେବାରେ ଅସୁବିଧା ବା କେଉଁଠି ଥିଲା ? ଜ୍ଞାନପୀଠ ପୁରସ୍କାର, ସରସ୍ୱତୀ ସମ୍ମାନ ପ୍ରାପକମାନଙ୍କୁ 'ଶାରଳା ପୁରସ୍କାର' ଦିଆ ନଯିବା ହୁଏତ ଠିକ୍ ସିଦ୍ଧାନ୍ତ ହୋଇପାରେ । ଜୀବନର ସାମଗ୍ରିକ କୃତି ପାଇଁ 'ଶାରଳା ପୁରସ୍କାର' ଦିଆ ନଯାଇ ଦଶବର୍ଷ ମଧ୍ୟରେ ପ୍ରକାଶିତ ପୁସ୍ତକକୁ ଭିତ୍ତି

କରି ପୁରସ୍କାର ଦିଆଯିବା ଏକ ବିବଦମାନ ନିଷ୍ପତ୍ତି ବୋଲି ଆଜି ମୋର ମନେହେଉଛି । ସେଥିପାଇଁ ଯେଉଁ ଲେଖକମାନଙ୍କର ଏହି ସମୟସୀମା ମଧ୍ୟରେ କୌଣସି ଉତ୍କୃଷ୍ଟ ପୁସ୍ତକ ନାହିଁ ସେମାନଙ୍କୁ ଜୀବନସାରା ଅବଦାନ ପାଇଁ ପୁରସ୍କାର ଦିଆଯିବା ଅଯୌକ୍ତିକ ନୁହେଁ । ଆପଣଙ୍କୁ ଯେ କୌଣସି ବିଚାରରୁ ଏ ପୁରସ୍କାର ପାଇଁ ସମାଲୋଚନା ସାହିତ୍ୟର ଶୀର୍ଷ ସ୍ଥାନରେ ତାଲିକାଭୁକ୍ତ କରାଯାଇ ପାରିଥା'ନ୍ତା । କିନ୍ତୁ ଦୁଃଖର ସହିତ ଜଣାଉଛି ଯେ ସମାଲୋଚନାକୁ ସମ୍ମାନିତ କଲାପରି ସାମୂହିକ ଦୃଷ୍ଟିକୋଣ ଏ ଯାବତ୍ ଶାରଳା ପୁରସ୍କାର ବୋର୍ଡ ପୋଷଣ କରି ପାରିନାହାନ୍ତି ଯଦିଓ କେନ୍ଦ୍ର ସାହିତ୍ୟ ଏକାଡେମୀ ଓ ଶ୍ରୀ ଗଙ୍ଗାଧର ରଥ ଫାଉଣ୍ଡେସନ ତରଫରୁ ଦିଆ ଯାଉଥିବା 'ଉତ୍କଳ ଭାରତୀ' ପୁରସ୍କାର ଏ ଦିଗରେ ପ୍ରଗତିଶୀଳ ନିଷ୍ପତ୍ତି ନେଇ ଚାଲିଛନ୍ତି । ତେଣୁ ସେମାନେ ସୃଜନଶୀଳ ସାହିତ୍ୟକୁ ଅଧିକ ଗୁରୁତ୍ୱ ଦେଇ ଆସିଛନ୍ତି । କିନ୍ତୁ 'ଓଡ଼ିଶା ସାହିତ୍ୟ ଏକାଡେମୀ' ଆପଣଙ୍କୁ 'ଅତିବଡ଼ୀ ପୁରସ୍କାର' ପ୍ରଦାନ କରି ଯଥାର୍ଥ ପଦକ୍ଷେପ ନେଇଛନ୍ତି- ତାହା ଆପଣଙ୍କୁ ଶେଷ ଜୀବନରେ ଆଶ୍ୱସ୍ତ କରିଥିବ ବୋଲି ମୁଁ ଅନୁମାନ କରୁଛି ।

ଆପଣଙ୍କ ସୃଷ୍ଟି ଓ କୃତି ସମ୍ପର୍କରେ ଆକଳନ କରିବାର ସାମର୍ଥ୍ୟ ମୋର ନାହିଁ । କାରଣ ସେପରି କଲାବେଳେ ମୁଁ କେବଳ ମୋର ନିଜସ୍ୱ ବିହ୍ୱଳତାକୁ ହିଁ ଭେଟିବି । ରାଧାନାଥ ଓ ତାଙ୍କ ସମସାମୟିକ କବିମାନଙ୍କ ଉପରେ ଆପଣ ପୁଙ୍ଖାନୁପୁଙ୍ଖ ଆଲୋଚନା (exhaustive criticism) କରି ନଥିଲେ ଆଧୁନିକ ଓଡ଼ିଆ ସାହିତ୍ୟର ଆକଳନ ଓ ଅଭିବୃଦ୍ଧିରେ ଘୋର ସଙ୍କଟ ସୃଷ୍ଟି ହୋଇଥା'ନ୍ତା । କିନ୍ତୁ ଦିବ୍ୟଦ୍ରଷ୍ଟା ଅଧ୍ୟାତ୍ମମାର୍ଗୀ ମଧୁସୂଦନଙ୍କ ଉପରେ ଆପଣଙ୍କ ଲେଖନୀ କାହିଁକି ସେପରି ଗତିଶୀଳ ହେଲାନାହିଁ ତା'ର ମର୍ମ ମଧ୍ୟ ମୁଁ ଆଜିଯାଏ ବୁଝିନାହିଁ । ବୋଧହୁଏ ତା'ରି କ୍ଷତିପୂରଣ ପାଇଁ ଆପଣ ସତ୍ୟବାଦୀଯୁଗକୁ ଲମ୍ଫ ଦେଇ ଓଡ଼ିଆ ସାହିତ୍ୟର ଆଉ ଜଣେ ଅଧ୍ୟାତ୍ମବାଦୀ ଓ ମାନବବାଦୀ ଓଡ଼ିଶା ଜନତାର ପ୍ରିୟତମ ସାଥୀ ଓ ସାରଥୀ ପୁଣ୍ୟାତ୍ମା ଗୋପବନ୍ଧୁଙ୍କ ଉଦ୍ଦେଶ୍ୟରେ ଜୀବନର ଶେଷଭାଗରେ ଶେଷତମ ପୁସ୍ତକଟି ରଚନା କରିଗଲେ । କିନ୍ତୁ ଭଗବାନ ଆପଣଙ୍କୁ ନୀରୋଗ ଓ ଶତାୟୁ କରିଥିଲେ ଆମେ ଆପଣଙ୍କଠାରୁ ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩-୧୯୨୦) ପରବର୍ତ୍ତୀ ପର୍ବ (୧୯୨୦-୨୦୦୦) ନିଶ୍ଚୟ ପାଇଥା'ନ୍ତୁ । ଏ ବର୍ଦ୍ଧିଷ୍ଣୁ ସାହିତ୍ୟର ଏହି ଅଞ୍ଚଳକୁ ଅନୁପ୍ରବେଶ କରିବା ପାଇଁ ଓଡ଼ିଆ ସାହିତ୍ୟର ଇତିହାସ ରଚୟିତାମାନେ ପରାଙ୍ମୁଖ ଓ ଭୟଭୀତ ମଧ୍ୟ । ମୁଁ ଜାଣେ ବାର୍ଦ୍ଧକ୍ୟରେ ଓ କୌଣସି ସହକାରୀ ବିନା ଏପରି ଏକ ବିସ୍ଫୋରଣମୁଖୀ କାର୍ଯ୍ୟ ନିଜ ମୁଣ୍ଡକୁ ନେବାକୁ ଆପଣ କୁଣ୍ଠିତ ଥିଲେ । କେତେଦିନ ବା ସାଇକେଲ ଚଳେଇ Archiveକୁ ଯାଇ ଆପଣ ପୁରୁଣା ପତ୍ରପତ୍ରିକା ଓ ନଥିପତ୍ର ଖେଳାଇ ଥାନ୍ତେ ? ସାହିତ୍ୟ ଏକାଡେମୀ (କେନ୍ଦ୍ର) ଏବେ ଏଥିପାଇଁ କାହାକୁ କାହାକୁ ଦାୟିତ୍ୱ ଦେଇ ପ୍ରଭୂତ ଅର୍ଥବ୍ୟବସ୍ଥା କରୁଛନ୍ତି । ଏ ଦାୟିତ୍ୱଟି କୋଡ଼ିଏ ବର୍ଷତଳେ ଆପଣଙ୍କୁ ନ୍ୟସ୍ତ କରାଯାଇ ପାରିଥିଲେ ଓଡ଼ିଆ ସାହିତ୍ୟର ଇତିହାସ ତା'ର ଐତିହାସିକ ନିରପେକ୍ଷତା ପରିପ୍ରେକ୍ଷୀରୁ ନିଶ୍ଚିତଭାବେ ରଚିତ ହୋଇ ପାରିଥା'ନ୍ତା ଏଥିରେ ସନ୍ଦେହ ନାହିଁ ।

କିନ୍ତୁ ଏ ଦାୟିତ୍ୱ କିଏ ଆପଣଙ୍କ ପରି ଯୋଗ୍ୟତମ ବ୍ୟକ୍ତିଙ୍କ ଉପରେ ବା ସମର୍ପି ଥା'ନ୍ତା ? ଏଠି କଣ ଯୋଗ୍ୟତାର ସଠିକ୍ ବିଚାର ହୁଏ ନା ସାହିତ୍ୟ-ପରିଚାଳନା ଦାୟିତ୍ୱରେ

ଥିବା ବ୍ୟକ୍ତିମାନେ ଯୋଗ୍ୟ ଲୋକଙ୍କୁ ଚିହ୍ନଟ କରନ୍ତି ? ଚିହ୍ନଟ କରି ଜାଣୁଥିଲେ ଆପଣ ହିଁ ପ୍ରଥମେ ପାଇଥା'ନ୍ତେ ସମାଲୋଚନା ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର । କିନ୍ତୁ ସେଠି ମଧ୍ୟ ବିଚାରଧାରା ବ୍ୟକ୍ତିକୈନ୍ଦ୍ରିକ ଓ ବ୍ୟକ୍ତିଗତ ପାରସ୍ପର୍ଯ୍ୟରେ ପୀଡ଼ିତ ଏକଥା ଆପଣ ନିଶ୍ଚୟ ଅନୁଭବ କରିଥିବେ ।

ତେବେ ଆପଣଙ୍କ ପାଇଁ ଆପଣଙ୍କ ଯୋଗ୍ୟ ସନ୍ତାନ ସନ୍ତତିମାନେ ସ୍ମୃତିଉତ୍ସବ ପାଳନ କରୁଛନ୍ତି ଓ ସ୍ମରଣିକା ପ୍ରକାଶ କରୁଛନ୍ତି ଏହା ଖୁବ୍ ବଡ଼ ଆଶ୍ୱାସନାର କଥା । ସ୍ୱର୍ଗତ ସୁରେନ୍ଦ୍ର ମହାନ୍ତି ବରାବର ଓଡ଼ିଶା ପୂଜ୍ୟପୂଜା ସଂସଦ ପରି ଅନୁଷ୍ଠାନକୁ 'ଅନାଥ ପିଣ୍ଡଦ' ନାମରେ ନାମିତ କରୁଥିଲେ । ମଧୁବାବୁ ବା ଗୋପବନ୍ଧୁଙ୍କ ପରି ପୁଣ୍ୟଶ୍ଳୋକ ବ୍ୟକ୍ତିମାନଙ୍କ ପାଇଁ ତାଙ୍କ ଜନ୍ମସ୍ଥାନରେ ସ୍ମୃତିରକ୍ଷା ନିମନ୍ତେ ସେପରି କିଛି ଆଖିଦୃଶିଆ ଆୟୋଜନ ୧୯୬୨ ବେଳଠୁ ମଧ୍ୟ ହେଉନଥିଲା । ନୀଳକଣ୍ଠଙ୍କ ଆତ୍ମୀୟମାନେ ଆଗେଇ ଆସି 'ନୀଳକଣ୍ଠ ସ୍ମୃତି ସମିତି' ଗଠନ କରି ନଥିଲେ ଓଡ଼ିଆ ସାହିତ୍ୟ ତାଙ୍କ ଜୀବନୀ ଓ କୃତି ସମ୍ପର୍କରେ ଏତେ ପରିମାଣରେ ଆକଳନମୂଳକ ପୁସ୍ତକ ପାଇନଥାନ୍ତା । ତେଣୁ ଆପଣ ବହୁ ଯୋଗ୍ୟ ସନ୍ତାନଙ୍କ ଜନ୍ମଦାତା ଭାବରେ ନିଶ୍ଚୟ ନିର୍ଭର ଭାବେ ଆଶା କରିବେ ଯେ ଆପଣଙ୍କ ସମ୍ପର୍କରେ ଏବେ ବି ବହୁ ଆଲୋଚନା ଓ ଆକଳନ ପ୍ରକାଶ ପାଇବ ।

ଜାଣେନି ଆପଣ ବର୍ତ୍ତମାନ ଠିକ୍ କେଉଁ ଠିକଣାରେ । ଏ ଚିଠି ମଧ୍ୟ ପହଞ୍ଚିବ କି ନାହିଁ ମୋ ମନରେ ସନ୍ଦେହ ରହିଛି । ତଥାପି ମନର ଆବେଗ କୌଣସି ଅନିଶ୍ଚିତତାକୁ ସ୍ୱୀକାର କରୁନାହିଁ । ଶ୍ରୀଚରଣରେ ପ୍ରଣିପାତ ଜଣାଇ ରହୁଛି । ଇତି ।

ସ୍ନେହାଧୀନ ନିତ୍ୟାନନ୍ଦ

*୯, ଏଚ୍.ଆଇ.ଜି,*
*ଶୈଳଶ୍ରୀବିହାର, ଭୁବନେଶ୍ୱର*

## ନଟବର ବାଣୀ

ସୃଷ୍ଟି ପରିକଳ୍ପନାର ଅଭିନବତା ଓ ବିଷୟବସ୍ତୁର ମନୋହର ସଜ୍ଜୀକରଣ, ଏ ଉଭୟ ମାଧ୍ୟମରେ କାବ୍ୟରୂପରେ ଯେଉଁ ବିଶିଷ୍ଟ ଚାହାଣୀଟିଏ ଫୁଟିଉଠେ ତାହା ହିଁ ହେଉଛି କାବ୍ୟର ରସ-ଘନ-ରୂପ, କାବ୍ୟର ସମଗ୍ର ସୌନ୍ଦର୍ଯ୍ୟ । ସୃଷ୍ଟି ପରିକଳ୍ପନା କାବ୍ୟ ରୂପରେ ରୂପାୟିତ ହେବା ପାଇଁ କବିର ଅପୂର୍ବ ସୃଷ୍ଟି ଶକ୍ତି ଦରକାର । ସେଇ ସୃଷ୍ଟି ଶକ୍ତି ପରିକଳ୍ପନାକୁ ସଫଳତାର ସହିତ ବିଷୟ ବିନ୍ୟାସ ମାଧ୍ୟମରେ ଫୁଟାଇ ଉଠାଇ ଯେଉଁ ବିଶିଷ୍ଟ କାବ୍ୟରସ ପରିବେଷଣ କରେ ସେଥିରେ ରସିକ ପାଠକର ଚିତ୍ତ ରସାପ୍ଳୁତ, ବିମୁଗ୍ଧ ହୋଇଯାଏ । କାବ୍ୟର ଏଇ ସମଗ୍ର-ସୌନ୍ଦର୍ଯ୍ୟ-ଅବବୋଧ ପଥରେ ବିଷୟବସ୍ତୁ ବିନ୍ୟାସର କୌଣସି ଅସଙ୍ଗତି ବା ଦୁର୍ବଳତା ରହିବା ଉଚିତ୍ ନୁହେଁ । ଏ ବିନ୍ୟାସ କୌଶଳରେ ଥିବା ପାରସ୍ପରିକ ଯୋଗସୂତ୍ର ଯେତେ ଦୃଢ଼ ଓ ଶକ୍ତିଶାଳୀ ହେବ ସେଇ ସମଗ୍ର-ସୌନ୍ଦର୍ଯ୍ୟଟି ସେତେ ପ୍ରାକୃତିକ ଭାବେ ସ୍ୱତଃ ପ୍ରକଟିତ ହୋଇ ଉଠିବ ।

*ଗଙ୍ଗାଧର ସାହିତ୍ୟ ସମୀକ୍ଷା (୧୯୭୫) ପୃ.୭୪*

# ଧରାବତରଣ: ନଟ ନନା

ଦୁର୍ଗା ଚରଣ ପରିଡ଼ା

ଧରାବତରଣ ଆଗୁଁ
ସ୍ରଷ୍ଟା ପଚାରିଲେ,
"ତମ ପ୍ରସ୍ଫୁଟନ ଲାଗି
ପ୍ରୟୋଜନ
କେଉଁ ଆଧାରର ?
କୁହ,
ଦେବବର !"

ତମେ ଉତ୍ତରିଲ ।
ନଟ ନନା,
ମାଗିଥିଲ ବର
"ଦୟା ଯଦି କଲ, ପ୍ରଭୁ,
ମତେହିଁ ଆଧାର କର
ସମ୍ପୂର୍ଣ୍ଣ ଗଦ୍ୟର,
ନିର୍ମୋହ ସତ୍ୟର ।
ମୁଁ ଯେମିତି
ଧରି ରଖେଁ
ମୋ ଭିତରେ
ସବୁ ଦ୍ୟୁତି,
ସକଳ ଲାବଣ୍ୟ,
ସକଳ ବୈଦଗ୍ଧ୍ୟ
ସୃଷ୍ଟିଶୀଳତାର,
ଆଜୀବନ
ଜନ୍ମ ଜନ୍ମାନ୍ତର ।

ମତେ ହିଁ
ମୃଣାଳ କର
ତମରି ପଦ୍ମର ।
ମୁକ୍ତା ଅନ୍ୱେଷଣ ଲାଗି
ମତେ ହିଁ
ଶାମୁକା କର
ସ୍ୱାତୀ ନକ୍ଷତ୍ରର" ।

ବାଲ୍ ଭବନ ଷ୍ଟ୍ରୀଟ୍,
ଭୁବନେଶ୍ୱର-୨

# ତଥାପି ମନେ ପଡୁଛନ୍ତି

*ଶ୍ରୀମତୀ ଗୀତା ହୋତା*

ତାହୁଁ ତାହୁଁ ବରଷେ ବିତିଗଲା । କିନ୍ତୁ ମନେ ହେଉଛି ସେ ଯେପରି ଆମ ଭିତରେ ଅଛନ୍ତି । ମୋତେ ତ ଲାଗୁଛି ଯେ ପୂଜ୍ୟ ନଟବର ସାମନ୍ତରାୟ ଆମ ଗହଣରେ ଥିବାବେଳେ ଆମେ ଭାବୁଥିଲୁ ଯେ ସେ ଅଛନ୍ତି ତେଣୁ ସନ୍ଦେହ ମୋଚନ୍ କରିବା ପାଇଁ ଆଉ ଲୋକର ଅଭାବ ହେବ ନାହିଁ । ବାପା ଓ ମା' ବଞ୍ଚି ଥିବାବେଳେ କୌଣସି ସମସ୍ୟା ଉପୁଜିଲେ ବା ମନରେ କୌଣସି ଅସମାହିତ ପ୍ରଶ୍ନ ବାରମ୍ବାର ଉଠିଲେ ଇଚ୍ଛା ହୁଏ ବାପାଙ୍କୁ ପଚାରି ଦେବା ପାଇଁ । ସେ ବାଟ ବତାଇ ଦେଲାପରେ ସବୁ ଠିକ୍‌ଠାକ୍ ହୋଇଯାଏ । ଓଡ଼ିଆ ସାହିତ୍ୟର ଇତିହାସ ବା ସାହିତ୍ୟ ସମ୍ପର୍କରେ ଲେଖା ଯାଇଥିବା କୌଣସି ପ୍ରବନ୍ଧ ହେଉ ଯଦି କୌଣସି ବିଷୟରେ ପ୍ରକାଶିତ ତଥ୍ୟକୁ ଗ୍ରହଣ କରିନେବା ପାଇଁ ମନରେ ଖଟ୍‌କା ଲାଗେ ତେବେ ପଚାରିବାକୁ ଇଚ୍ଛା ହୁଏ ସେହି ଗୁରୁଙ୍କର ଗୁରୁ ନଟବର ସାମନ୍ତରାୟଙ୍କୁ ।

ଜୀବନ ସାରା ବିତିଗଲା ଅନୁସନ୍ଧାନ କରିବା ପାଇଁ । ଯାହା ପରୀକ୍ଷା ନକରି ସତ୍ୟବୋଲି ସମଧର୍ମୀମାନେ ସହଜରେ ଗ୍ରହଣ କରିନେଲେ, ସେ ସବୁ ତଥ୍ୟ ଭିତରକୁ ଗଲେ ସେ ଏକ ଅନୁସନ୍ଧାନୀ ମନ ନେଇ । ତାଳପତ୍ର ପୋଥି, ପତ୍ରପତ୍ରିକା, ବହିପତ୍ର ଓ ବିଭିନ୍ନ ସୂତ୍ରରୁ ସଂଗ୍ରହ କରିଥିବା ନଥିପତ୍ର ତନ୍ନତନ୍ନ କରି ସେ ପଢୁଥିଲେ । ସେ ଛିଡ଼ି ଯାଇଥିବା ଖିଅ ସବୁକୁ ଯୋଡ଼ିବା ପାଇଁ ଲାଗି ପଡୁଥିଲେ ସାଧୁତାର ସହିତ । ତାଙ୍କ ପାଖରେ ଥିଲା ଇତିହାସ ଲେଖକର ମନ ଓ ବୈଜ୍ଞାନିକର ସତ୍ୟକୁ ଠାବ କରିବାର ଆଗ୍ରହ । ଯାହା ସମସ୍ତେ ବିଶ୍ୱାସ କରିଯାଉଥିଲେ ନଟବରବାବୁ ନୂଆ ତଥ୍ୟ ବାହାର କରି ସମସ୍ତେ ଗ୍ରହଣ କରିଯାଇଥିବା ଧାରଣାକୁ ଓଲଟ ପାଲଟ କରି ଦେଉଥିଲେ ।

ତାଙ୍କର ଝିଅ ଡାକ୍ତର ସରଯୂ ମହାପାତ୍ର 'ଅମୃତାୟନ'ରେ ନିୟମିତ ଲେଖାଲେଖି କରୁଥିଲେ । ତାଙ୍କଠାରୁ ତାଙ୍କ ବାପାଙ୍କର ପରିଚୟ ପାଇଥିଲି । ଦିନେ ଆମେ ଯାଇ ତାଙ୍କ ଘରେ ପହଞ୍ଚିଲୁ । ସେ ପ୍ରାୟ ୧୫ ବର୍ଷ ତଳର କଥା । 'ଅମୃତାୟନ' ପାଇଁ ଲେଖିବା ପାଇଁ ତାଙ୍କୁ ଅନୁରୋଧ କଲି । ମୋ ସାଙ୍ଗରେ ଥିଲେ ଅମୃତାୟନର ପରିଚାଳକ ସମ୍ପାଦକ ଗିରୀଶ ଦାସ ଓ ସାତକଡ଼ିବାବୁ । ସେ କହିଲେ ମୁଁ ତ ଆଉ ବେଶି ଲେଖାଲେଖି କରିପାରୁ ନାହିଁ । ବୟସ ହୋଇ ଗଲାଣି, ଆଉ ଯାହା ଇଚ୍ଛା ତାହା ମୁଁ ଲେଖି ପାରୁ ନାହିଁ । ନୂଆ କଥାଟିଏ ଖୋଜି ବାହାର କଲେ ଲେଖିବି । ମୁଁ ତାଙ୍କୁ କିନ୍ତୁ ଛାଡ଼ିଲି ନାହିଁ । ବାରମ୍ବାର ମନେ ପକାଇ ଦେଉଥାଏ ଲେଖିବା ପାଇଁ । ଶେଷରେ ସେ ଲେଖିଲେ ତାଙ୍କର ଚାରି ପାଞ୍ଚଟି ପ୍ରବନ୍ଧ । ସେ ସବୁ 'ଅମୃତାୟନ'ରେ ପ୍ରକାଶିତ ହୋଇଛି । ସେ ସବୁ ପ୍ରବନ୍ଧ ପଢ଼ିଲେ ଅନୁସନ୍ଧାନ କରିବାର ଇଚ୍ଛା ଓ ପଢ଼ିବାର ଆଗ୍ରହ ତାଙ୍କର କିପରି ପ୍ରବଳ ଥିଲା ତାହା ଜଣାପଡ଼େ ।

ସଂସ୍କୃତି ଅନୁଷ୍ଠାନ ପକ୍ଷରୁ 'ଉତ୍କଳ ସମ୍ମାନ' ଦିଆଯାଏ, ଓଡ଼ିଶା ସ୍ପଞ୍ଜ ଆଇରନ୍ ଲିଃ ଏହି ଅନୁଷ୍ଠାନର ପୃଷ୍ଠପୋଷକ । ତିନି ବର୍ଷ ମଧ୍ୟରେ ପ୍ରକାଶିତ ଉତ୍କୃଷ୍ଟ ବହିର ଲେଖକଙ୍କୁ ସେତେବେଳେ 'ଉତ୍କଳ ସମ୍ମାନ' ଦିଆଯାଉ ଥିଲା । ଯଦିବା ନଟବରବାବୁ 'ଉତ୍କଳ ସମ୍ମାନ' ପାଇବା ପାଇଁ ଯୋଗ୍ୟ ତଥାପି ପୁରସ୍କାର ପାଇଁ ଥିବା ନିୟମ ଦୃଷ୍ଟିରୁ ତାଙ୍କୁ ସେ ବର୍ଷ 'ଉତ୍କଳ ସମ୍ମାନ' ଦିଆଯାଇ ପାରିଲା ନାହିଁ । କିନ୍ତୁ ଅନୁଷ୍ଠାନ ତରଫରୁ ତାଙ୍କୁ ସମ୍ମାନ ପ୍ରଦର୍ଶନ କରିବା ପାଇଁ ସମ୍ବର୍ଦ୍ଧନା ଦିଆଗଲା । ସେ ଅସୁସ୍ଥ ଥିଲେ ବୋଲି ସମ୍ବର୍ଦ୍ଧନା ଉତ୍ସବକୁ ଆସିପାରି ନଥିଲେ । ମୁଁ, ଗିରୀଶ ଦାସ ଓ ସାତକଡ଼ିବାବୁ ତାଙ୍କ ଘରକୁ ଯାଇଥିଲୁ ତାଙ୍କୁ ସଙ୍ଖୋଳି ଆସିବା ପାଇଁ । ମାନପତ୍ର, ଚାଦର ଇତ୍ୟାଦି ଉପହାର ତାଙ୍କ ହାତକୁ ବଢ଼ାଇ ଦେଇ ତାଙ୍କର ଆଶୀର୍ବାଦ କାମନା କଲୁ । ସେ ହସି ହସି କହିଲେ, 'ଯାହା ହେଉ ତୁମେ ସବୁ ମୋତେ ମନେ ରଖିଛ ।'

ନଟବରବାବୁ କଥା ଆରମ୍ଭ କଲେ ଆଉ ଶେଷ ହୁଏ ନାହିଁ । ଗପିବାକୁ ଭଲ ପାଆନ୍ତି । ଉଠିବା ପାଇଁ ଚାହିଁଲେ ବସାଇ ଦେଇ କୁହନ୍ତି, 'ଏତେ ଶିଘ୍ର ଉଠିପଡୁଛ କ'ଣ ମ ! ଆଉ ଟିକେ ବସ ।' ସେ ବାଜେ କଥା କହନ୍ତି ନାହିଁ କି କାହାରି ନିନ୍ଦା କରନ୍ତି ନାହିଁ, ସାହିତ୍ୟ ଆଲୋଚନା କରନ୍ତି । ଏକ ଅଧ୍ୟାପକ ପରିଶ୍ରମ ନକରି, ଅଧ୍ୟୟନ ନକରି ଦୁଇ ଚାରିଟି ପତ୍ରିକା ପଢ଼ି କିପରି ପ୍ରବନ୍ଧ ଲେଖି ଦେଉଛନ୍ତି ସେ ବିଷୟରେ କୁହନ୍ତି । ଶେଷରେ ସେଦିନ ତାଙ୍କଠାରୁ ବିଦାୟ ନେଇ ଆମେ ତାଙ୍କ ଘରୁ ବାହାରି ଆସିଲା ବେଳକୁ ତାଙ୍କ ଫାଟକ ପାଖରେ ଥିବା ଛୋଟ ନଡ଼ିଆ ଗଛରୁ ପାଚିଲା ନଡ଼ିଆଟେ ଖସି ପଡ଼ିଲା । ଆଉ ଟିକେ ପାଖରେ ହୋଇଥିଲେ ଗିରୀଶର ମୁଣ୍ଡ ଉପରେ ପଡ଼ିଥା'ନ୍ତା । ନଡ଼ିଆଟିକୁ ଉଠାଇ ଆଣି ନଟବରବାବୁ ଗିରୀଶ ହାତକୁ ବଢ଼ାଇ ଦେଲେ ଏବଂ କହିଲେ, 'ଏହିଟି ତୁମର ପ୍ରାପ୍ୟ ।'

ନଟବରବାବୁଙ୍କ ଘରକୁ କେତେ ଥର ଯାଇଛି । ତାଙ୍କ ଝିଅମାନଙ୍କ ସହିତ ଦେଖା ହୋଇଛି । ସେ ପରିଣତ ବୟସରେ ସମସ୍ତଙ୍କୁ ଛାଡ଼ି ଚାଲିଗଲେ ବି ଓଡ଼ିଆ ସାହିତ୍ୟକୁ ସେ ଯେଉଁ ଅମୂଲ୍ୟ ଅବଦାନ ଦେଇଯାଇଛନ୍ତି ତାହା କୁଆଡ଼େ ଯିବନାହିଁ । ଆମରି ପାଖେ ପାଖେ ଓ ଆମର ଉତ୍ତରାଧିକାରୀମାନଙ୍କ ପାଖେ ପାଖେ ରହିବ ସେଇ ସମ୍ପଦ । ସେଇଥିପାଇଁ ବର୍ଷେ ପୂରିଲେ ବି ଲାଗୁଛି ସେ ଯାଇ ନାହାନ୍ତି, ଏଇଠି ଆମ ଭିତରେ ଅଛନ୍ତି । ଓଡ଼ିଆ ସାହିତ୍ୟକୁ ଯେଉଁମାନେ ଭଲ ପାଆନ୍ତି ନଟବରବାବୁ ସେମାନଙ୍କୁ ଭୁଲିପାରିବେ ନାହିଁ । ସେହି କାରଣରୁ ଓଡ଼ିଆ ସାହିତ୍ୟରେ ମଧ୍ୟ ସେ ଅମର ହୋଇ ରହିବେ ।

୯, ଷ୍ଟେସନ୍ ସ୍କୋୟାର ଛକ
ଭୁବନେଶ୍ୱର- ୭୫୧୦୦୧

# ଡକ୍ଟର ସାମନ୍ତରାୟଙ୍କ ପବିତ୍ର ସ୍ମୃତିଚାରଣ

*ଡଃ ଜଗନ୍ନାଥ ମହାନ୍ତି*

ଡକ୍ଟର ନଟବର ସାମନ୍ତରାୟ ମୋର ପରମ ହିତାକାଙ୍କ୍ଷୀ । ଦୀର୍ଘ ଚାଳିଶ ବର୍ଷରୁ ଅଧିକ ଅବଧି ଧରି ତାଙ୍କ ସହିତ ମୋର ଅନ୍ତରଙ୍ଗ ପରିଚିତି । ତାଙ୍କୁ ମୁଁ ପ୍ରଥମେ ସାକ୍ଷାତ ଲାଭର ସୁଯୋଗ ପାଇଲି ସମ୍ଭବତଃ ୧୯୬୪-୬୫ ମସିହାରେ । ମୁଁ ଉକ୍ତ ବର୍ଷ ଭୁବନେଶ୍ୱରକୁ ଆସି ରାଜ୍ୟ ଶିକ୍ଷା ପ୍ରତିଷ୍ଠାନରେ ଅଧ୍ୟାପକ ଭାବରେ ଯୋଗ ଦେଇଥିଲି । ବି.ଜେ.ବି. କଲେଜର ମୁଖ୍ୟ କିରାଣୀ ଓ ମୋର ଭାଇ ଶ୍ରୀ ହୀରାଲାଲ୍ ମହାନ୍ତିଙ୍କ ସହିତ ତାଙ୍କର ଘନିଷ୍ଠ ସମ୍ପର୍କ ହୋଇଥିଲା । ତାଙ୍କଠାରୁ ସେ ମୋ କଥା ଜାଣିଥିବେ ହୁଏତ ମୁଁ ଏଠାକୁ ଆସିବା ପୂର୍ବରୁ । ମୁଁ ବାଣପୁରରେ ସ୍କୁଲ ସବ୍‌ଇନସ୍‌ପେକ୍ଟର ଓ ରଣପୁର ହାଇସ୍କୁଲରେ ଶିକ୍ଷକ ହେବା, ମୋର ଖଣ୍ଡେ ବହି ଭାରତ ସରକାରଙ୍କ ଶିକ୍ଷା ମନ୍ତ୍ରଣାଳୟ ଦ୍ୱାରା ପୁରସ୍କୃତ ହେବା (୧୯୬୧-୬୨) ଏବଂ ମୋର କେତେକ ଲେଖା ସେତେବେଳେ (୧୯୬୧-୬୨) ଜାତୀୟକରଣ ହୋଇଥିବା ପ୍ରାଥମିକ ପାଠ୍ୟପୁସ୍ତକ ପାଇଁ ମନୋନୀତ ହେବାର ସୂଚନା ସେ ତାଙ୍କଠାରୁ ଜାଣିଥିବେ । ତେଣୁ ମୋତେ ଦେଖିବାର ଇଚ୍ଛା ତାଙ୍କ ମନରେ ଥିଲା ।

ଡକ୍ଟର ସାମନ୍ତରାୟଙ୍କ ଜୀବନ ଥିଲା ବିଶେଷ ସଂଗ୍ରାମମୟ ଏବଂ ସେ ବହୁ ଅଭାବ ଅସୁବିଧା ମଧ୍ୟରେ ବି.ଏ. ଓ ଡି.ଇଡି (ଶିକ୍ଷକତା ତାଲିମ) ପାସ୍ କରି ହାଇସ୍କୁଲରେ ଗଣିତ ଶିକ୍ଷକ ହୋଇ ସୁନାମ ଅର୍ଜନ କରିଥିଲେ । ତା'ପରେ ସେ ଓଡ଼ିଆରେ ଏମ୍.ଏ. ପାସ୍ କରି ଅଧ୍ୟାପକ ହୋଇଥିଲେ ଏବଂ ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟଙ୍କ ଦିଗ୍‌ଦର୍ଶନ ଓ ନିଜର ଗାଣିତିକ ତଥା ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଯୋଗୁଁ ଓଡ଼ିଆ ସାହିତ୍ୟ ସମାଲୋଚନାକୁ ଏକ ନୂତନ ମୋଡ଼ ଦେଇଥିଲେ । ତାଙ୍କର ସାରସ୍ୱତ ସାଧନା ବିଳମ୍ବିତ ହୋଇଥିଲେ ମଧ୍ୟ ସେ ଓଡ଼ିଆ ସାହିତ୍ୟ ସମାଲୋଚନାକୁ ଅଳ୍ପ ସମୟରେ ଏକ ସୁଦୃଢ଼ ବିଶ୍ଳେଷଣାତ୍ମକ ଓ ବୈଜ୍ଞାନିକ ଭିତ୍ତିଭୂମି ଉପରେ ପ୍ରତିଷ୍ଠା କରି ଦେଇଥିଲେ । ୧୯୬୪-୬୫ ବେଳକୁ ସେ ଓଡ଼ିଆ ଭାଷା ଓ ସାହିତ୍ୟ କ୍ଷେତ୍ରରେ ଉଲ୍ଲେଖନୀୟ ସ୍ଥାନଟିଏ ବାଛି ନେଇଥିଲେ । ତେଣୁ ତାଙ୍କ ଜୀବନର ସଂଗ୍ରାମ ଓ ସାଧନା ସହିତ ମୋର ସାମାନ୍ୟ ସାମଞ୍ଜସ୍ୟ ଥିବାରୁ ତାଙ୍କର ମୋ ପ୍ରତି ସ୍ନେହ ସହାନୁଭୂତି ବଢ଼ି ଯାଇଥିଲା । ସ୍ୱଭାବତଃ ସେ ଗୁଣଗ୍ରାହୀ ଓ ବହୁ ବନ୍ଧୁର ଜୀବନ ପଥରେ ତାଙ୍କର ଅଗ୍ରଗତି ଘଟିଥିବାରୁ ତାଙ୍କ ପରି ସଂଗ୍ରାମରତ ଓ କଷ୍ଟସହିଷ୍ଣୁ ବ୍ୟକ୍ତିମାନଙ୍କ ପ୍ରତି ତାଙ୍କର ଗଭୀର ସଦିଚ୍ଛା ଓ ଶ୍ରଦ୍ଧା ଥାଏ । ସେ ଥିଲେ ମୋର ପ୍ରେରଣାର ଉତ୍ସ ଓ ସମ୍ମାନା-ସ୍ପଦ । ତେଣୁ ମୁଁ କେତେବେଳେ କୌଣସି ବିଷୟରେ ଆଲୋଚନା କରିବାକୁ ତାଙ୍କ ପାଖକୁ ଚାଲିଯାଏ ଏବଂ ସେ ମଧ୍ୟ ସାଇକେଲ୍‌ଟିଏ ଧରି ମୁଁ ରହୁଥିବା ନଅ ନମ୍ବର ୟୁନିଟ୍‌ସ୍ଥ ବସାଘରକୁ ଚାଲିଆସନ୍ତି । ଚା'କପେ ବା ସର୍ବତ ଟିକିଏ ପିଇବା ଭିତରେ

ସାହିତ୍ୟରୁ ଆରମ୍ଭ କରି କନ୍ୟାମାନଙ୍କର ଶିକ୍ଷା ଓ ଚାକିରୀ ପର୍ଯ୍ୟନ୍ତ ଆମର ସୁଖଦୁଃଖ ହୁଏ । ମୁଁ ତ ଅବାକ୍ ହୁଏ ତାଙ୍କର ସାଇକେଲଟିରେ ଭୁବନେଶ୍ୱର ଭ୍ରମଣ ଦେଖି । ବୟସ ବଢ଼ିବା ସଙ୍ଗେ ସଙ୍ଗେ ତାଙ୍କର ଜଞ୍ଜାଳ ବଢ଼ିଥିଲେ ମଧ୍ୟ ସେ କେତେବେଳେ ଭାଙ୍ଗି ପଡ଼ି ନଥିଲେ କିମ୍ବା ନିଜର ଉତ୍ସାହ ଉଦ୍ଦୀପନାକୁ କମାଇ ନଥିଲେ ।

ତାଙ୍କର ଶିକ୍ଷକ ତାଲିମ୍ ତଥା ପ୍ରଶିକ୍ଷଣ ଉପଲବ୍ଧି ତାଙ୍କ ସାରସ୍ୱତ ପ୍ରସ୍ତୁତି ଓ ପ୍ରତିଷ୍ଠା ଦିଗରେ ବିଶେଷ ସହାୟକ ହୋଇଥିଲା ବୋଲି ସେ ନିଜେ କହିଥା'ନ୍ତି । ତାଙ୍କର "ଓଡ଼ିଆ ସାହିତ୍ୟର ଇତିହାସ" ( ପିଏଚ୍.ଡି ଥେସିସ୍ ) ମଧ୍ୟ ଓଡ଼ିଶା ଶିକ୍ଷା ଇତିହାସର ଏକ ପ୍ରାମାଣିକ ଗ୍ରନ୍ଥ । ତାଙ୍କ ମତରେ ସେ ଟ୍ରେନିଂପ୍ରାପ୍ତ ହୋଇଥିବାରୁ ଅତୀତର ଶିକ୍ଷା ଓ ସାହିତ୍ୟ ବିଷୟକ ନଥିପତ୍ର, ରିପୋର୍ଟ ଓ ପତ୍ରପତ୍ରିକାରୁ ଆବଶ୍ୟକ ତଥ୍ୟ ସଂଗ୍ରହ କରିବା ସହଜସାଧ୍ୟ ହୋଇଥିଲା । ସେ ଯେମିତି ଧୈର୍ଯ୍ୟ ଓ ବିଶ୍ଳେଷଣାତ୍ମକ ଦୃଷ୍ଟିଭଙ୍ଗୀ ନେଇ ଉକ୍ତ ଗ୍ରନ୍ଥଟି ରଚନା କରିଥିଲେ ତାହା ଅନନ୍ୟ ଓ ଅସାଧାରଣ । ସେ ପୁଣି କହୁଥିଲେ 'ଶିକ୍ଷା ଯୋଗୁଁ ହିଁ ଆମ ସାହିତ୍ୟର ବିକାଶ ଘଟିଥିଲା । ଓଡ଼ିଆ ପାଠ୍ୟପୁସ୍ତକ ରଚନା ହିଁ ସାଧାରଣ ସାହିତ୍ୟ ସୃଷ୍ଟି ପାଇଁ ସୁଯୋଗ ପ୍ରଦାନ କରିଥିଲା । ଓଡ଼ିଆ ସାହିତ୍ୟର ସୁରକ୍ଷା ପାଇଁ ପାଠ୍ୟପୁସ୍ତକ ପ୍ରଣୟନ ଥିଲା ମୌଳିକ ଆବଶ୍ୟକତା ।' ସେଥିପାଇଁ ଅନୁପ୍ରେରିତ ହୋଇଥିଲେ ଫକୀର ମୋହନ, ମଧୁସୂଦନ, ରାଧାନାଥ ପ୍ରମୁଖଙ୍କଠାରୁ ଆରମ୍ଭ କରି ଗୋଦାବରୀଶ, କାଳିନ୍ଦୀଚରଣ, ରାମକୃଷ୍ଣଙ୍କ ପର୍ଯ୍ୟନ୍ତ । ସେମାନେ ସମସ୍ତେ ପ୍ରଥମେ ପାଠ୍ୟପୁସ୍ତକ ରଚନାରୁ ହିଁ ପ୍ରଧାନ ପ୍ରେରଣା ଓ ପ୍ରୋତ୍ସାହନ ଲାଭ କରିଥିଲେ ।

ଯେତେବେଳେ ଯେଉଁଠି ଡଃ ସାମନ୍ତରାୟଙ୍କ ସହ ସାକ୍ଷାତାଳାପ ହୁଏ, ସେତେବେଳେ ସାହିତ୍ୟ ସମାଲୋଚନା ଓ ଶିକ୍ଷା, ପ୍ରଶିକ୍ଷଣ ଇତ୍ୟାଦି ସମ୍ପର୍କରେ ହିଁ ଅଧିକ ଆଲୋଚନା ହୋଇଥାଏ । ସବୁଠୁଁ ବଡ଼ କଥା ହେଲା ଏ ସମ୍ପର୍କୀୟ ଆଲୋଚନା ବେଳେ ସେ ଅତୀତକୁ ଚାଲିଯା'ନ୍ତି ଏବଂ ନିଜର ବର୍ତ୍ତମାନ ସ୍ଥିତି ଓ ଅବସ୍ଥା ସମ୍ପର୍କରେ ପ୍ରାୟ ଭୁଲିଯା'ନ୍ତି । ସାହିତ୍ୟ ସମାଲୋଚନାକୁ ସାଧାରଣତଃ ଶୁଷ୍କ, ନୀରସ ଓ ସୃଜନତାହୀନ କୁହାଯାଏ, ମାତ୍ର ସେ ତା'କୁ ସରସ, ସାର୍ଥକ ଓ ସୃଜନାତ୍ମକ କରି ତୋଳିଥିଲେ । ବ୍ୟକ୍ତିଗତ ରାଗରୋଷ, ରୁଚି ଅରୁଚିକୁ ନେଇ ଯେଉଁମାନେ ସାହିତ୍ୟର ସମାଲୋଚନା କରନ୍ତି, ତାହା ଏକଦିଗଦର୍ଶୀ ଓ ପକ୍ଷପାତପୂର୍ଣ୍ଣ ଆଦି ହୋଇଥାଏ । ସେମାନେ ନଟବରବାବୁଙ୍କ ବିଜ୍ଞାନସମ୍ମତ, ଐତିହାସିକ, ଭୌଗୋଳିକ ଓ ଗାଣିତିକ ମୂଲ୍ୟବୋଧ ଆଧାରିତ ସମାଲୋଚନା ସାହିତ୍ୟରୁ ଯଥେଷ୍ଟ ଶିକ୍ଷା କରିବା ଆବଶ୍ୟକ । ଏହା ସମ୍ଭବ ହୋଇଥିଲା ତାଙ୍କ ଜୀବନଧାରା, ଜୀବନଦର୍ଶନ, ମୂଲ୍ୟବୋଧ ଓ ସର୍ବୋପରି ନିଜର ବୌଦ୍ଧିକ ବିଚାର ଓ ବୃତ୍ତିଗତ ପ୍ରସ୍ତୁତି ଯୋଗୁଁ । ଏହିପରି ଶ୍ରମ ଓ ସାଧନା ଆମେ ଆଜିର କେତେ ଜଣ ସାହିତ୍ୟ ସମାଲୋଚକଙ୍କଠାରୁ ଆଶା କରିବା ?

୧୯୬୬ ମସିହାର କଥା । ମୁଁ ଶିଶୁ ସାହିତ୍ୟ କ୍ଷେତ୍ରରେ କିଛି ରଚନା ଓ ପୁରସ୍କାର ଲାଭ କରିଥିଲି, ଉଭୟ ଜାତୀୟ ଓ ରାଜ୍ୟସ୍ତରରେ । ମାତ୍ର ସେତେବେଳେ ସାଧାରଣ ସାହିତ୍ୟ କ୍ଷେତ୍ରରେ ମୁଁ ନବାଗତ ଓ ଅପାଙ୍କ୍ତେୟ । କଲେଜ୍ ଜୀବନରେ ବିଭିନ୍ନ ଅବସରରେ ଲେଖିଥିବା ଓଡ଼ିଆ ନାଟକ ଓ ଉପନ୍ୟାସକୁ ପ୍ରକାଶ କରିବାକୁ ନଟବରବାବୁଙ୍କୁ ଦେଖା

କରିଥିଲି ଏବଂ ପୁସ୍ତକଟି ଉପରେ ଅଭିମତଟିଏ ଲେଖିବାକୁ ଅନୁରୋଧ କରିଥିଲି । ସେ ଆଗ୍ରହର ସହିତ ଏଥିରେ କେବଳ ସମ୍ମତି ଜଣାଇ ନଥିଲେ, ଦୀର୍ଘ ଚାରିପୃଷ୍ଠା (ମୁଦ୍ରିତାବସ୍ଥାରେ) ଲେଖି ସେଥିରେ ମୋତେ ଯେଉଁ ଉତ୍ସାହ ଓ ପ୍ରେରଣା ଦେଇଥିଲେ, ତାହା ମୋ ପାଇଁ ଅବିସ୍ମରଣୀୟ ଓ ଅତୁଳନୀୟ । ସେ ପ୍ରଥମରୁ ଲେଖିଥିଲେ ''ରାଜ୍ୟ ତଥା କେନ୍ଦ୍ର ସରକାରଙ୍କ ଦ୍ୱାରା ପୁରସ୍କୃତ ଶିଶୁ ସାହିତ୍ୟର ଲେଖକ ଅଧ୍ୟାପକ ଶ୍ରୀ ଜଗନ୍ନାଥ ମହାନ୍ତି ଅତି ଅଳ୍ପକାଳ ମଧ୍ୟରେ ଏ ଦେଶରେ ଜଣେ ସୁସାହିତ୍ୟିକ ହିସାବରେ ପରିଚିତ ହେବା କମ୍ ସୌଭାଗ୍ୟର କଥା ନୁହେଁ ।'' (ଓଡ଼ିଆ ନାଟକ ଓ ଉପନ୍ୟାସ, ୧୯୬୬ ପୃ.ଅଭିମତ ) ।

ତାଙ୍କ ପରି ଜଣେ ପ୍ରତିଷ୍ଠିତ ସାହିତ୍ୟ ସମାଲୋଚକ ମୋ ପାଣ୍ଡୁଲିପି ପାଠ କରି ପୁଣି ''ଅନୁଶୀଳନ କରି ମୁଁ ଗଭୀର ସନ୍ତୋଷ ଲାଭ କରିଛି ଓ ଏ ପୁସ୍ତକ ଉପରେ ଅଭିମତ ପ୍ରକାଶ କରିବାର ସୁଯୋଗ ଲାଭ କରିଥିବାରୁ ମୁଁ ଜଗନ୍ନାଥବାବୁଙ୍କୁ ଧନ୍ୟବାଦ ଜଣାଉଛି ।'' ବୋଲି ଲେଖିବା ମୋ ପରି ଜଣେ ତରୁଣ ଲେଖକଙ୍କ ପକ୍ଷେ ପରମ ସୌଭାଗ୍ୟର ବିଷୟ ହୋଇଥିଲା । ସେ ପାଣ୍ଡୁଲିପିକୁ ତନ୍ନ ତନ୍ନ କରି ଅନୁଧ୍ୟାନ କରି ମହାର୍ଘ ମତାମତ ଦେବା ଅତ୍ୟନ୍ତ ଉତ୍ସାହପ୍ରଦ ହୋଇଥିଲା । ଶେଷରେ ସେ ଉଲ୍ଲେଖ କରିଥିଲେ, ''ଜଗନ୍ନାଥବାବୁ ଓଡ଼ିଆ ସମାଲୋଚନା ରାଜ୍ୟରେ ନୂତନ ପଥିକ ହେଲେ ହେଁ, ଏ ଦେଶର ବହୁ ପାଠକ ପାଠିକାଙ୍କ ପାଇଁ ମୂଲ୍ୟବାନ୍ ପାଥେୟ ପ୍ରସ୍ତୁତ କରି ରଖି ଦେଇଛନ୍ତି । ମୋର ଏକାନ୍ତ ବିଶ୍ୱାସ, ଏ ଦିଗରେ ସେ ଅଧିକ ପରିଶ୍ରମ କଲେ, ଶିଶୁ ସାହିତ୍ୟରେ ମଧ୍ୟ ବିପୁଳ ଯଶର ଅଧିକାରୀ ହୋଇପାରିବେ ।'' 'ଓଡ଼ିଆ ନାଟକ ଓ ଉପନ୍ୟାସ' ପୁସ୍ତକଟି ସେଇ ଅକ୍ଷୟ ଯଶ ଲାଭର ଆଦ୍ୟ ସଙ୍କେତ ମାତ୍ର ।' ('ତତ୍ରୈବ') । ଏହି ପ୍ରସଙ୍ଗରେ ସେ ଦେଇଥିବା ପରାମର୍ଶ ଓ ଦିଗ୍‌ଦର୍ଶନ ମୋ ପାଇଁ ସାର୍ଥକ ଭାବରେ ଯଥେଷ୍ଟ ସହାୟକ ଓ ସ୍ନେହପୂର୍ଣ୍ଣ ଥିଲା ।

ଡକ୍ଟର ସାମନ୍ତରାୟ ଏକ ଶାନ୍ତଶିଷ୍ଟ, ନିରଳସ ଓ ମୁକ୍ତ ମନର ମଣିଷଟିଏ । ତାଙ୍କ ଆଳାପ ଆଲୋଚନା ଓ ଆଚରଣରେ କିଞ୍ଚିତ୍ କୁଟିଳତା, ଛଳନା ଓ ଅଭିମାନର ସ୍ଥାନ ନଥାଏ । ତାଙ୍କ ହୃଦୟ ସ୍ୱଚ୍ଛ ଦର୍ପଣ ପରି ଯେଉଁଠି ଅନ୍ୟର ଶ୍ରଦ୍ଧା ଓ ସୌହାର୍ଦ୍ଦ୍ୟର ପ୍ରତିଫଳନ ସ୍ପଷ୍ଟ ଭାବରେ ଘଟିଥାଏ । ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟଙ୍କ ପ୍ରତି ସେ ସ୍ୱୀୟ କୃତଜ୍ଞତା ପ୍ରକାଶକରି, ''ମୁଁ କିପରି ଗବେଷଣା କଲି'' ପୁସ୍ତକରେ ଲେଖିଥିଲେ, ''ଏହି ଥେସିସ୍ (ଓଡ଼ିଆ ସାହିତ୍ୟର ଇତିହାସ) ଲେଖାରେ ମୋର ବ୍ୟକ୍ତିଗତ ଅଧ୍ୟୟନ ଅଧ୍ୟବସାୟ ଯେତେ ଥାଉନା କାହିଁକି, ଏଠାରେ ସ୍ପଷ୍ଟ ସ୍ୱୀକାର କରି ନେଉଛି, ସେହି ସମଗ୍ର ଲେଖା ଭିତରେ ଥିବା ଦୃଷ୍ଟିକୋଣଟି ମୋର ନୁହେଁ, ତାହା ଅନ୍ୟ ଜଣଙ୍କର । ତାଙ୍କର ସଂସ୍ପର୍ଶରେ ଆସି ମୁଁ ତାଙ୍କ (ପରମାନନ୍ଦ)ଠାରୁ ଏ ଦୃଷ୍ଟିକୋଣଟିକୁ ଆହରଣ କରିଥିଲି ମାତ୍ର ।'' (୧୯୭୬ ପୃ୨୧) । ଏହି ଦୁଇ ବରପୁତ୍ରଙ୍କ ମଧ୍ୟରେ ମୈତ୍ରୀବନ୍ଧନ ଦୃଢ଼ୀଭୂତ ହୋଇଥିଲା ଏବଂ ତାଙ୍କରି ମୌଳିକ ଦିଗ୍‌ଦର୍ଶନ ସହିତ ତାଙ୍କ ପୁସ୍ତକାଳୟର ମୂଲ୍ୟବାନ୍ ଓ ଦୁର୍ଲ୍ଲଭ ପତ୍ରପତ୍ରିକା ଓ ପୁସ୍ତକ ପାଠ କରିବାର ସୁଯୋଗ ନଟବାରବାବୁ ଲାଭ କରିଥିଲେ । ଏହା ମଣିକାଞ୍ଚନ ସଂଯୋଗ ପରି ଫଳପ୍ରଦ ଓ ପ୍ରତିଶ୍ରୁତିପୂର୍ଣ୍ଣ ହୋଇଥିଲା ।

ଏବେ ତାଙ୍କର ବିଶେଷ ଶ୍ରମ ଓ ସାଧନା (୧୦ ବର୍ଷରୁ ଅଧିକ) ତଥା ଗବେଷଣାଲବ୍ଧ ପୁସ୍ତକ ''ଓଡ଼ିଆ ସାହିତ୍ୟର ଇତିହାସ'' (୧୮୦୩-୧୯୨୦)ର ଏକକିତା ଉପରେ ତାଙ୍କର ସ୍ୱହସ୍ତ ଲିଖିତ ଧାଡ଼ିଟିଏ ଦେଖି ଅତ୍ୟନ୍ତ ଅଭିଭୂତ ହୋଇ ପଡୁଛି । ଉକ୍ତ ଧାଡ଼ିଟି ହେଲା- ''ସୁସାହିତ୍ୟିକ ଅଧ୍ୟାପକ ଜଗନ୍ନାଥ ମହାନ୍ତିଙ୍କ ହସ୍ତରେ ଗଭୀର ସ୍ନେହ ଓ ଶ୍ରଦ୍ଧା ସହ'' ନଟବର ସାମନ୍ତରାୟ (ତା୨୭।୫।୮୪) । ଦ୍ୱିତୀୟ ସଂସ୍କରଣ (ଅକ୍ଟୋବର, ୧୯୮୩)ର ଉକ୍ତ ବହିଟି, ପୁଣି ଦୀର୍ଘ କୋଡ଼ିଏ ବର୍ଷ ପରେ ଏବଂ ଓଡ଼ିଶା ପରି ରାଜ୍ୟରେ ସେ ଏଥି ପାଇଁ ତାଙ୍କ ଜୀବନର ''ଏକ ପରମ ସୌଭାଗ୍ୟର କଥା'' ବୋଲି ମନେ କରିଛନ୍ତି । ବିଶିଷ୍ଟ କବି ଓ ସାହିତ୍ୟ-ସମାଲୋଚକ ଚିନ୍ତାମଣି ବେହେରା ଏହାକୁ ''ଅଧ୍ୟାପକ ସାମନ୍ତରାୟଙ୍କ ଅନନ୍ୟ ସାଧାରଣ ସାଧନା ଓ ଗଭୀର ତପସ୍ୟାର ଏକ ଅକ୍ଷୟ ସାରସ୍ୱତ ବିଭବ'' ଭାବେ ଗ୍ରହଣ କରିଛନ୍ତି । ଓଡ଼ିଶାର ରାଜନୈତିକ, ସାମାଜିକ ଓ ଧର୍ମଗତ ଜୀବନଧାରା, ଆଧୁନିକ ଶିକ୍ଷାର ପ୍ରସାର ଓ ତା'ର ପରିଣତି, ଆଧୁନିକ ପାଠ୍ୟପୁସ୍ତକ, ଯୁବଶକ୍ତିର ଜାଗରଣ ଓ ଅଭ୍ୟୁଦୟ, ଓଡ଼ିଆ ଭାଷା-ବିଲୋପ ଆନ୍ଦୋଳନ, ଆଧୁନିକ ଓଡ଼ିଆ ସାହିତ୍ୟର ଇତିହାସ ଏକ ବିହଙ୍ଗମ ଦୃଷ୍ଟି, ଯୁଗପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ, ଭକ୍ତକବି ମଧୁସୂଦନ, ବ୍ୟାସକବି ଫକୀରମୋହନ, ଓଡ଼ିଆ ନାଟ୍ୟ ସାହିତ୍ୟର ବିକାଶଧାରା, ଓଡ଼ିଆ ଗଦ୍ୟ ସାହିତ୍ୟର ବିକାଶଧାରା, ଆଧୁନିକ ଓଡ଼ିଆ ସାହିତ୍ୟର ଇତିହାସ- ଏହିପରି ୧୩ଟି ଅଧ୍ୟାୟରେ ସେ ବିଚ୍ଛିନ୍ନ, ନିଷ୍ପ୍ରାଣ, ନୀରସ ଉପାଦାନ ଓ ତଥ୍ୟଗୁଡ଼ିକୁ ନିଜର ଗାଣିତିକ ବିଚାର, କବିର କଳ୍ପନା ଓ ସ୍ରଷ୍ଟାର ସ୍ୱପ୍ନ ବଳରେ ସମ୍ପର୍କିତ, ସରସ ଓ ସାର୍ଥକ କରିଛନ୍ତି । ଅଧ୍ୟାପକ ବେହେରା ଯଥାର୍ଥରେ କହିଛନ୍ତି, ''ସୃଷ୍ଟିର ସମାଲୋଚନା ଭିତରେ ସମାଲୋଚକ ସାମନ୍ତରାୟଙ୍କ ସ୍ରଷ୍ଟା ରୂପର ଉପଲବ୍ଧି ଯେ ନ କରିଛି, ସେ ଓଡ଼ିଆ ସାହିତ୍ୟର ଇତିହାସ ପୁସ୍ତକର ପରିକଳ୍ପନା, ଗଠନ କୌଶଳ, ସଂଗୃହୀତ ଉପାଦାନର ବୈଚିତ୍ର୍ୟ ଓ କଳା-ବିଶ୍ଳେଷଣର ମହତ୍ତ୍ୱ ଯଥାର୍ଥ ଭାବେ କଳ୍ପନା କରିପାରିଛି ବୋଲି ମନେ ହୁଏନାହିଁ । ଏହି ସମସ୍ତ ବୈଶିଷ୍ଟ୍ୟ ଭିତରେ ଫୁଟି ଉଠୁଥିବା ଗବେଷକଙ୍କ ମୌଳିକ ସ୍ୱତନ୍ତ୍ର ଭାବମୂର୍ତ୍ତିର ଉପଲବ୍ଧି ହେଉଛି ଆମ ପୂର୍ବ କଥିତ ଗୁଣଜ୍ଞ ସମାଲୋଚକମାନଙ୍କ ଅଧ୍ୟୟନର ଶେଷ ପରିଣତି ।'' (ଡଃ ନଟବର ସାମନ୍ତରାୟ ''ଓଡ଼ିଶାର ଧର୍ମଧାରାରେ ପଞ୍ଚସଖା-ପରିକଳ୍ପନା -୧୯୮୨-ପରିଶିଷ୍ଟ) ।

ସାହିତ୍ୟ ସମାଲୋଚନା ଯେ ସୃଜନଶୀଳ ଓ କଳାତ୍ମକ, ତାହା ଡକ୍ଟର ସାମନ୍ତରାୟଙ୍କ କୃତିତ୍ୱ ପାଠ କଲେ ସ୍ପଷ୍ଟ ହୁଏ । ଏହା ମଧ୍ୟ ବିଜ୍ଞାନସମ୍ମତ ଓ ବିଶ୍ଳେଷଣାତ୍ମକ । ଏଥିରୁ ଅନୁଭବ କରିବା କଷ୍ଟସାଧ୍ୟ ନୁହେଁ । ସଂଶିତ ସୃଷ୍ଟିର କାଳ ନିରୂପଣ କରି ତତ୍‌କାଳୀନ ସମାଜର ସ୍ଥିତି ଓ ସମସ୍ୟାଗୁଡ଼ିକର ପର୍ଯ୍ୟାଲୋଚନା କରିବା ଏବଂ ସେଥିପାଇଁ ଆବଶ୍ୟକ ପ୍ରମାଣ ଓ ଦୃଷ୍ଟାନ୍ତ ଦେବା ଡକ୍ଟର ସାମନ୍ତରାୟଙ୍କ ସମାଲୋଚନା ସାହିତ୍ୟର ବୈଶିଷ୍ଟ୍ୟ । ସେ ଯଥାର୍ଥରେ ମତ ଦିଅନ୍ତି, ''କଳା କାଳରେ ଜନ୍ମହୁଏ ସାର୍ବଜନୀନ । କଳାର ସାର୍ବକାଳୀନ ଧର୍ମ ହିଁ ତା'ର ଚିରନ୍ତନ ଧର୍ମ ଓ ତା'ର ପର୍ଯ୍ୟାଲୋଚନା ହିଁ କଳା ମୂଲ୍ୟ ନିରୂପଣ ବେଳେ ଏକାନ୍ତ ଅପରିହାର୍ଯ୍ୟ ମାନଦଣ୍ଡ, ଏପରି ଅଭିମତ ସାଧାରଣରେ ଗୃହୀତ । ତଥାପି ଏ ସମ୍ପର୍କରେ କାଳର ମୂଲ୍ୟ ଆଦୌ ଉପେକ୍ଷାର ବିଷୟ ନୁହେଁ, କଳାର କାଳତ୍ୱ ଓ ସାର୍ବକାଳୀନ

ଧର୍ମ- ଏ ଉଭୟ ପରସ୍ପର ପରିପନ୍ଥୀ ନୁହନ୍ତି । ବରଂ ଏମାନେ ପରସ୍ପର ସହଯୋଗୀ ।'' ଡକ୍ଟର ସାମନ୍ତରାୟ ଏକ ସୃଜନଶୀଳ ପ୍ରତିଭାର ଅଧିକାରୀ ହୋଇଥିବାରୁ ସେ ପଲ୍ଲୀସାହିତ୍ୟରୁ ପୁରାଣ ସାହିତ୍ୟ, ପ୍ରାଚୀନ କାବ୍ୟରୁ ବୈଷ୍ଣବ ସାହିତ୍ୟ, ଯୋଗ ସାହିତ୍ୟରୁ ଆଧୁନିକ ସାହିତ୍ୟ ଯାଏଁ ଯେଉଁଥିରେ ହାତ ଦେଇଛନ୍ତି, ତାହା ଅପୂର୍ବ ସାରସ୍ୱତ ସର୍ଜନାରେ ପରିଣତ ହୋଇଛି । ତାଙ୍କର ସୃଷ୍ଟି ସମ୍ଭାର ତେଣୁ ଅତି ବ୍ୟାପକ ହେଲେ ବି ଗଭୀର ଓ ସାର୍ଥକ ହୋଇପାରିଛି ।

ସାରସ୍ୱତ ସମାଲୋଚନା ଜଣେ ପଦ୍ମଭୃଙ୍ଗ ବା ପଲ୍ଲବଗ୍ରାହୀର କାର୍ଯ୍ୟ ନୁହେଁ, ଏହା ଜଣେ ସାଧକର ସିଦ୍ଧି ଓ ଗବେଷକର ଉପଲବ୍ଧି; ଏହାର ପଶ୍ଚାତ୍‌ରେ ଥାଏ ଆଜୀବନ ସାଧକର କଠୋର ସାଧନା ଓ କର୍ମନିଷ୍ଠ ଗବେଷକର ଅକ୍ଲାନ୍ତ ପରିଶ୍ରମ । ସେଥିପାଇଁ ଆବଶ୍ୟକ ନିରବଚ୍ଛିନ୍ନ ପ୍ରସ୍ତୁତି, ଯାହା ଶିକ୍ଷା, ପ୍ରଶିକ୍ଷଣ, ମୂଲ୍ୟବୋଧ ଓ ଜୀବନଦର୍ଶନ ମାଧ୍ୟମରେ ଶାଣିତ, ଋଦ୍ଧିମନ୍ତ ଓ ଦୀପ୍ତିମନ୍ତ ହୋଇଉଠେ । ତେଣୁ ସେ ବହୁ ବାଧାବିଘ୍ନ ଓ ଦୁଃଖକଷ୍ଟ ମଧ୍ୟରେ ଶିକ୍ଷା ଓ ପ୍ରଶିକ୍ଷଣ ଲାଭ କରିଥିଲେ । ସେ ନିଜେ କହିଥାନ୍ତି ଯେ ତାଙ୍କର ଡ଼ି.ଇଡ଼ି ଶିକ୍ଷା ବା ତାଲିମ୍ ତାଙ୍କୁ ଆଧୁନିକ ଓଡ଼ିଆ ସାହିତ୍ୟର ଉତ୍ସ ଓ ସ୍ରୋତର ଆବିଷ୍କାର କରିବାରେ ସାହାଯ୍ୟ କରିଥିଲା । ତାଙ୍କର ଉଚ୍ଚ ନୈତିକ ମୂଲ୍ୟବୋଧ ଓ ଗାଣିତିକ ଚିନ୍ତାଧାରା ତାଙ୍କର ସାହିତ୍ୟ ସମାଲୋଚନାକୁ ବିଜ୍ଞାନଭିତ୍ତିକ, କଳାତ୍ମକ ଓ ମୌଳିକ କରି ତୋଳିଥିଲା । ଶେଷ ଜୀବନରେ ତାଙ୍କ ସହିତ ମୋର ସାମୟିକ ସାକ୍ଷାତ୍‌କାର ନୂତନ ଜ୍ଞାନ, ଅପୂର୍ବ ଅନୁଭୂତି, ଅନନ୍ୟ ଦୃଷ୍ଟିଭଙ୍ଗୀ ଓ ଉଦାର ଚିନ୍ତନର ସ୍ପର୍ଶ ଦେଇଥାଏ । ତାଙ୍କର ଅବର୍ତ୍ତମାନରେ ମୁଁ ସତେ ଖୁବ୍ ନିଃସ୍ୱ ଓ ନିଃସହାୟ ହୋଇପଡ଼ୁଛି ।

*୨୯୩୫, ଗୌରୀନଗର*
*ଭୁବନେଶ୍ୱର-୨*

## ନଟବର ବାଣୀ

ବାସ୍ତବତାର ବର୍ଣ୍ଣନା ଯେଉଁ କାବ୍ୟରେ ହୁଏ ମୂଳ ବିଷୟବସ୍ତୁ, ସେଥିରେ ବାସ୍ତବତା ଅପେକ୍ଷା କବି କଳ୍ପନା ଥାଏ ଅଧିକ । ଏ କବିକଳ୍ପନା ସେଇ ବାସ୍ତବତାକୁ ଯେତେ ରସଦୀପ୍ତ କରି ତୋଳେ, ତାକୁ ଯେତେ କଳ୍ପାଲୋକର ଅମର ବିଭାରେ ବିମଣ୍ଡନ କରେ, ବାସ୍ତବତାର ଯଥାର୍ଥ କାବ୍ୟରୂପ ସେତେ ମହୀୟାନ ହୋଇ ଉଠେ । ତେଣୁ ବାସ୍ତବତା ସହିତ କଳ୍ପନାର ମଧୁର ଯୋଗସୂତ୍ର ନ ଥିଲେ ବର୍ଣ୍ଣନାତ୍ମକ କାବ୍ୟ ଉନ୍ନତ ସୃଷ୍ଟିରେ ପରିଣତ ହୋଇପାରେ ନାହିଁ । କଳ୍ପନାର ଏ ଯାଦୁକରୀ କ୍ରିୟା କେବଳ ବର୍ତ୍ତମାନର ବାସ୍ତବ ନିକଟରେ ସୀମିତ ନୁହେଁ ; ତାହା ସମୟରେ ମଧ୍ୟ ଅତୀତ ଓ ଭବିଷ୍ୟତକୁ ପରିବ୍ୟାପ୍ତ ହୋଇଯାଏ । ଯେତେବେଳେ କଳ୍ପନା ଏଇ ତ୍ରିକାଳକୁ ଅତି ସଜ୍ଞାନ ଚିତ୍ତରେ ଏକତ୍ର ସମ୍ବନ୍ଧାନ୍ୱିତ କରିଦିଏ, ସେତେବେଳେ ସୃଷ୍ଟିର ପ୍ରାଣତନ୍ତ୍ରୀରେ ତ୍ରିକାଳର ଏକପ୍ରାଣତା ସହଜରେ ଝଙ୍କୃତ ହୋଇଉଠେ ।

*ରାଧାନାଥ ଓ ଚିଲିକା କାବ୍ୟ (୧୯୬୦) ପୃ୨୬-୨୭*

# ଗୁରୁ ସ୍ମରଣେ

ଡଃ. ବାବାଜୀ ଚରଣ ସେଠୀ

'ଗୁ'ର ଅର୍ଥ ଅଜ୍ଞାନତା ଓ 'ରୁ'ର ଅର୍ଥ ଦୂରକରିବା । ଅଜ୍ଞାନ ଅନ୍ଧକାର ଦୂର କରି ଯିଏ ଆଲୋକର ପଥ ଦେଖାନ୍ତି ସେ ହେଉଛନ୍ତି ଗୁରୁ । ସାଧୁସନ୍ଥ, ଦେବାଦେବୀ ଆଦି ପୂଜାକରି, ତାଙ୍କ ମହିମା କୀର୍ତ୍ତନ କରି ସାମୟିକ ସୁଖ ମିଳିପାରେ କିନ୍ତୁ ମୁକ୍ତି ମିଳେନାହିଁ । ଯିଏ କହନ୍ତି ମୋ ମନ୍ତ୍ରରେ ଦୀକ୍ଷିତ ହୁଅ, ମୋର ଶରଣାପନ୍ନ ହୁଅ, ମୋତେ ସବୁ ସମର୍ପଣ କରିଦିଅ, ମୁଁ ତୁମକୁ ଉଦ୍ଧାର କରିବି, ମୁକ୍ତି ଦେବି, ସେ ପ୍ରକୃତ ଗୁରୁ ପଦବାଚ୍ୟ ନୁହଁନ୍ତି । ସେ ଭଣ୍ଡ ସନ୍ୟାସୀ, ଧର୍ମ ତାଙ୍କ ପାଖରେ ଏକ ଲାଭଜନକ ବ୍ୟବସାୟ । ସେ ନିଜ କଥାର ପୁଷ୍ଟିକରଣ ପାଇଁ ଗୀତାର ଈଶ୍ୱରଙ୍କ ମୁଖ ନିଃସୃତ ଅମରବାଣୀ ଉପସ୍ଥାପନା କରିଥାନ୍ତି । ଯଥା :- ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ ,

ଅହଂତ୍ୱା ସର୍ବପାପେଭ୍ୟୋ ମୋକ୍ଷୟିଷ୍ୟାମି ମା ଶୁଚଃ, ୧୮/୬୬

ଅର୍ଥାତ୍, ତୁମେ ସବୁ ଧର୍ମ ତ୍ୟାଗ କରି ମୋର ଶରଣାପନ୍ନ ହୁଅ, ମୁଁ ତୁମର ସକଳ ପାପ ଧୋଇ ନେବି, ତୁମକୁ ମୁକ୍ତି ଦେବି । ଏଇ ସହଜ, ସୁଲଭ, ପ୍ରୀତିପଦ ପ୍ରତିଶ୍ରୁତିଟି ଭଗବାନ ପ୍ରଥମରୁ ନିଜର ଅନ୍ତରଙ୍ଗ ସୁହୃଦ ପ୍ରିୟ ଶିଷ୍ୟ ଅର୍ଜୁନକୁ ନଦେଲେ କାହିଁକି ? ଅଠର ଅଧ୍ୟାୟ ଗୀତା ଉପଦେଶ ଦେଲେ କାହିଁକି ? କାରଣ ବିଷାଦ ଯୋଗରୁ ମୋକ୍ଷ ସନ୍ୟାସ ଯୋଗ ପର୍ଯ୍ୟନ୍ତ ଯିବାର ପଥ ଅତି ଦୁର୍ଗମ । କଠୋର ସାଧନା ସାପେକ୍ଷ ।

ମୋର ପରମ ପୂଜ୍ୟ ଶ୍ରଦ୍ଧେୟ ଗୁରୁ ଡଃ ନଟବର ସାମନ୍ତରାୟଙ୍କୁ ସ୍ମରଣ କଲାବେଳେ ଗୁରୁ-ଶିଷ୍ୟ ସମ୍ବନ୍ଧରେ ଉପରୋକ୍ତ ସିଦ୍ଧାନ୍ତଟି ସ୍ୱତଃ ମୋ ମନକୁ ଆସିଯାଏ । ୧୯୯୫ରେ ମୁଁ ସରକାରୀ ଚାକିରୀରୁ ଅବସର ନେଲି । ସାର୍‌ଙ୍କୁ ସାକ୍ଷାତ କଲି । ସେ ଖୁସି ହୋଇଗଲେ । ସବୁଦିନ ଅନ୍ତତଃ ଦେଖାହେବ, ସାହିତ୍ୟ ଚର୍ଚ୍ଚା ହେବ । ସାର୍‌ଙ୍କ ସ୍ନେହ, ଶ୍ରଦ୍ଧା ଓ ଆତ୍ମୀୟତାରେ ମୁଁ ଏପରି ବିମୋହିତ ହୋଇଗଲି ଯେ ଭାବିନେଲି ସାର୍‌ଙ୍କ କୃପାରୁ ରାତାରାତି ବଡ଼ ସମୀକ୍ଷକ ବନିଯିବି । ମୁଁ କୌଣସି ବିଷୟରେ ପଚାରିଲେ ସେ ମୋତେ ଲମ୍ବା ସହାୟକ ଗ୍ରନ୍ଥସୂଚୀଟିଏ ଡାକି ଦିଅନ୍ତି, କିଣିଆଣି ପଢ଼ିବାକୁ କହନ୍ତି । ଏସବୁ କାମ ମୋ ଦ୍ୱାରା ହେବନାହିଁ ବୋଲି କହିଲେ ସେ ହସି ଦେଇ ଇଂରାଜୀ କିମ୍ବା ହିନ୍ଦୀର ଭଲ ସମାଲୋଚନା ବହିଟିଏ ପଢ଼ିବାକୁ ଦିଅନ୍ତି । ସେ ବହି ପଢ଼ିସାରି ଫେରାଇଲା ବେଳେ ମୋତେ ସବୁକଥା ବୁଝେଇ ଦିଅନ୍ତି । ସେ ତାଙ୍କ ଡାଇରୀ, ନୋଟ୍‌ଖାତା ଦେଖାଇ ବୁଝାଉଥିଲେ କିପରି ସଂଗୃହୀତ ତଥ୍ୟସବୁ କ୍ରମାନୁସାରେ ସଜାଇ ଲେଖାଯାଏ ।

ସେ ପ୍ରଥମେ ଥିଲେ ଗଣିତ ଓ ଭୂଗୋଳର ଶିକ୍ଷକ । ସାହିତ୍ୟ ସହିତ ତାଙ୍କର ପରିଚିତି ନଥିଲା କହିଲେ ଚଳେ । ଅଥଚ ସେ ଓଡ଼ିଆରେ ଏମ୍.ଏ କଲେ, ସମାଲୋଚନା କ୍ଷେତ୍ରରେ ନୂତନ ଧାରା ପ୍ରବର୍ତ୍ତନ କଲେ, ଆଧୁନିକ ସାହିତ୍ୟ ଉପରେ ଗବେଷଣା କଲେ, ଏସବୁ ସମ୍ଭବ ହେଲା କିପରି ? ଏହାର ଉତ୍ତରରେ ସେ କହନ୍ତି, 'ଦୃଢ଼ ଇଚ୍ଛା ଶକ୍ତି ଥିଲେ କୌଣସି କାମ ଅସାଧ୍ୟ ମନେ ହୁଏ ନାହିଁ ।'

୧୯୩୬ରେ ମାଟ୍ରିକ ପାସ ପରେ ସେ ଶିକ୍ଷକ କ୍ଷିତୀଶ ଦେ'ଙ୍କ ଘରେ ଘରୋଇ ଶିକ୍ଷକ ଭାବେ ବର୍ଷଟିଏ ରହିଲେ । ତାଙ୍କ ଘରେ ଦୁଇ ଓଳି ଖାଉଥିଲେ । ଆଇ.ଏ. ପଢ଼ିବାର କୌଣସି ସୁବିଧା ନଦେଖି ସେ ବନାରସ ପଳାଇଲେ । ସେଠାରେ ପଢ଼ିବାର କିଛି ବ୍ୟବସ୍ଥା କରି ନପାରି ଜୀବନ ହାରିଦେବା ପାଇଁ ମନସ୍ଥ କଲେ । ବନାରସର ସେ ସ୍ଥାନଟିର ମାହାତ୍ମ୍ୟ ରହିଛି । ସେଠାରେ ଯେଉଁମାନେ ମୃତ୍ୟୁ ଲାଭ କରନ୍ତି ସେମାନେ ଯମଦ୍ଣ୍ଡେ ବୈକୁଣ୍ଠଧାମ ପ୍ରାପ୍ତ ହୁଅନ୍ତି । ତାଙ୍କଠାରେ ବୈକୁଣ୍ଠ ଲାଭର ମୋହ ନଥିଲା, ଥିଲା ଭାଗ୍ୟ ଉପରେ ପ୍ରଚଣ୍ଡ ଅଭିମାନ । ଭାଗ୍ୟକୁ ଦୁର୍ଗାଚରଣ ଚଟ୍ଟୋପାଧ୍ୟାୟ ଦେଖାହେଲେ । ସେ ତାଙ୍କୁ ୪୪ କାମାକ୍ଷା ଲେନରେ ଥିବା ତାଙ୍କ ଗୃହରେ ଆଶ୍ରୟ ଦେଲେ । ସେ ଘର କାମ କରନ୍ତି, ରାତିରେ ଆଇ.ଏ. ପରୀକ୍ଷା ପାଇଁ ପ୍ରସ୍ତୁତ ହୁଅନ୍ତି । ଲକ୍ଷ୍ୟ ସ୍ଥଳରେ ପହଞ୍ଚିବାକୁ ହେବ, ଯାହା ବାଧାବିଘ୍ନ ଆସୁନା କାହିଁକି ? ଏଇ ସଂକଳ୍ପ ଧରି ସେ ଆଇ.ଏ ପରୀକ୍ଷାରେ କୃତକାର୍ଯ୍ୟ ହେଲେ । ତା'ପରେ କଟକ ଫେରିଲେ । ସେଠାରେ ବି.ଏ. ଅନର୍ସ ଏବଂ ଡି.ଇଡି. ଟ୍ରେନିଂ ପାସ୍ କଲେ । ଭୁବନେଶ୍ୱରରେ ଶିକ୍ଷକତା, ଫୁଲବାଣୀ ଦାରିଙ୍ଗିବାଡ଼ିରେ ସ୍କୁଲ ବିଭାଗରେ ସବ୍‌ଇନିସ୍‌ପେକ୍ଟର, ଅନୁଗୋଳରେ ଶିକ୍ଷକତା । ଏ ସ୍ଥାନମାନଙ୍କରେ ଅଙ୍ଗେ ଲିଭା କାହାଣୀ ସେ କହନ୍ତି । ଅନୁଗୋଳ ରହଣି ତାଙ୍କ ଜୀବନରେ ନୂତନ ସ୍ୱପ୍ନ ଭରି ଦେଇଥିଲା । ସେହିଠାରେ ଥିବାବେଳେ ତାଙ୍କର ବିବାହ ହେଲା, କବି ଗଡ଼ନାୟକଙ୍କ ପରି ବନ୍ଧୁ ଲାଭ ହେଲା, ଏମ.ଏ କରି ସରକାରୀ କଲେଜରେ ଅଧ୍ୟାପକ ହେବାର ସୁଯୋଗ ମିଳିଲା । ତାଙ୍କ ମନରେ ଗୋଟିଏ ଦୁଃଖ ରହିଗଲା, ସେ ବାଣୀବିହାର ପ୍ରାଧ୍ୟାପକ ସିଲେକ୍‌ସନ୍‌ରେ ଯୋଗ୍ୟ ବିବେଚିତ ହୋଇପାରିଲେ ନାହିଁ । ଅଧ୍ୟାପନାରେ ଦୀର୍ଘ ବର୍ଷର ଅଭିଜ୍ଞତା, ''ଓଡ଼ିଆ ସାହିତ୍ୟର ଇତିହାସ ''ପରି ଅନନ୍ୟ ଗବେଷଣା ଗ୍ରନ୍ଥ, ସମାଲୋଚକ ଭାବେ ଖ୍ୟାତି- ଏତେ ଥାଇ ମଧ୍ୟ ସେ ହୀନ ଚକ୍ରାନ୍ତର ଶିକାର ହେଲେ ।

ଗିରି ଅଙ୍ଗେ ହୁଏ ସିନା ବଜ୍ରର ପ୍ରହାର,
ତହିଁ ସଙ୍ଗେ ଆହା ଗିରିବାସୀଙ୍କ ସଂହାର ।

ଉଦାହରଣ ଦେଇ ନିଜ ଜୀବନର ଦୁଃଖଦ ସ୍ମୃତିକଥା କହୁଥିଲେ । ଏଡ଼େ ଟାଣୁଆ ବ୍ୟକ୍ତି ଥିଲେ ସେ । ଅଥଚ ଗୋଟିଏ ଦୁଃଖର କଥା କହି କାନ୍ଦି ପକାଉଥିଲେ । ମୁଁ ତାଙ୍କୁ ସେଦିନ କହିଥିଲି, ସାର୍ ଆପଣ ତ ଆମକୁ ପଢ଼ାଇଥିଲେ,

'ଶିଳାରେ ଘଷିଲେ ଚନ୍ଦନ
ସୁବାସ କରେ ବିତରଣ'

ଏ ଯେତେ ସବୁ ବିପଦ ଆସିଛି ଏ ସବୁ ଥିଲା ଭଗବାନଙ୍କର ପ୍ରଚ୍ଛନ୍ନ ଆଶୀର୍ବାଦ । ଆପଣ ଆଜି 'ବିଦ୍ୟା ବାରିଧି ' ସମ୍ମାନର ଅଧିକାରୀ, ଓଡ଼ିଆ ସମାଲୋଚନା ସାହିତ୍ୟରେ ଅପ୍ରତିଦ୍ୱନ୍ଦୀ ବ୍ୟକ୍ତିତ୍ୱ । ମୁଁ ବହୁଥର ଦେଖିଛି ବହୁ ଅଧ୍ୟାପକ, ଅଧ୍ୟାପିକା ଓ ପ୍ରଫେସର ତାଙ୍କ ପାଖକୁ ଆସନ୍ତି, ଯେ କୌଣସି କବି ବା ଲେଖକଙ୍କ ସମ୍ବନ୍ଧରେ କିଛି ନୂତନ ତଥ୍ୟ ଜାଣିବା ପାଇଁ । ବାଇମାହାନ୍ତି ପାଞ୍ଜିପରି ତାଙ୍କର ଦଶଖଣ୍ଡ ମୋଟା ମୋଟା ନୋଟ୍‌ଖାତା । ସେଥିରେ ଲେଖାଅଛି ପୁରାଣ ଓ ଦୁଷ୍ପ୍ରାପ୍ୟ ପତ୍ରପତ୍ରିକାରୁ ସଂଗୃହୀତ ତଥ୍ୟରାଜି । ପାଟିରେ ବାଟୁଳି ବାଜୁନଥିବ, କହି ଚାଲିଥିବେ ତ୍ରିକାଳଦର୍ଶୀ ପରି । ଶ୍ରୋତାର ଧୈର୍ଯ୍ୟଚ୍ୟୁତି ଘଟିପାରେ ।

ମାତ୍ର ତାଙ୍କ କଥାରେ ଶେଷ ନଥିବ । ଓଡ଼ିଆ ଅଧ୍ୟାପକଙ୍କୁ ସେ ବେଶି ଗାଳି ଦିଅନ୍ତି । ସେମାନେ ବିଭିନ୍ନ ଭାଷାର ଉପାଦେୟ ପୁସ୍ତକ କିଣି ପଢ଼ିବାରେ ଆଗ୍ରହ ପ୍ରକାଶ କରୁ ନଥିବାରୁ ।

ଥରେ ସଂସ୍କୃତ ବିଭାଗ ପ୍ରଫେସର ବନ୍ଧୁ ଡଃ ଗୋପୀନାଥ ମହାପାତ୍ର ମୋତେ କହିଲେ, 'ନଟବାବୁ ତାଙ୍କ ଥେସିସ୍ ଇଂରାଜୀରେ ଲେଖିଥିଲେ ବାହାର ଦୁନିଆଁ ସହିତ ସେ ପରିଚିତ ହୋଇପାରିଥାନ୍ତେ ।' ଏକଥାଟି ମୁଁ ସାର୍‌ଙ୍କୁ କହିଲି । ସେ କହିଲେ, 'ହଁ, ଭଲ କଥାଟିଏ ସେ କହିଛନ୍ତି । ତୁ ବୋଧେ ଜାଣିନୁ, ଆମ ଓଡ଼ିଆ ଭାଷା ଓ ସାହିତ୍ୟର ଯଦି କେହି ଶତ୍ରୁ ଥାଆନ୍ତି, ସେମାନେ ହେଉଛନ୍ତି କେତେଜଣ ଇଂରାଜୀ ଅଧ୍ୟାପକ । ଓଡ଼ିଆ ଅଧ୍ୟାପକମାନଙ୍କୁ ହୀନଦୃଷ୍ଟିରେ ଦେଖିବା ଓ ଦେଖାଇବା, ସଂସ୍କୃତକୁ ମୃତଭାଷା କହି ହତାଦର କରିବା, ଘରେ ବାହାରେ ଇଂରାଜୀରେ କଥା ହେବା, ଓଡ଼ିଆ କହି ଓଡ଼ିଆ ବୋଲି ନିଜକୁ ପରିଚିତ କରାଇବାରେ ସେମାନଙ୍କର କୁଣ୍ଠା- ଏପରି ହୀନମନ୍ୟତା ଅନ୍ୟ କୌଣସି ପଡ଼ୋଶୀ ରାଜ୍ୟରେ, ଶିକ୍ଷିତ ଲୋକମାନଙ୍କଠାରେ ଦେଖାଯାଏ ନାହିଁ ।' ତା'ପରେ କହିଲେ, 'ଅନେକ ଇଂରାଜୀ ଅଧ୍ୟାପକ ଓଡ଼ିଆ ସାହିତ୍ୟ ମଧ୍ୟ ଖୁବ୍ ଭଲଭାବରେ ଜାଣନ୍ତି ।'

ବି.ଜେ.ବି କଲେଜରେ ଥିବା ସମୟରେ ଗୋଟିଏ ଘଟଣା ।

ଝଙ୍କାରରେ ପ୍ରାଚୀନ ସାହିତ୍ୟ ଉପରେ ଅନେକ ଆଲୋଚନା ପ୍ରକାଶ ପାଉଥାଏ । ସେସବୁ ତାଙ୍କୁ ବିଜ୍ଞାନଭିତ୍ତିକ ତର୍କସିଦ୍ଧ ମନେ ହେଲା ନାହିଁ । ତାଙ୍କ ମନରେ ଗୋଟିଏ ପ୍ରଶ୍ନ ଆସିଲା, ଯାହା ପାଠ କରି ବୁଝିହୁଏ ତାହା ସତ୍ୟ ନା ଯାହା ବୁଝି ହୁଏ ନାହିଁ ତାହା ସତ୍ୟ ? 'ଶିଶୁବେଦ' ଆଲୋଚନା ଆଗରୁ ସେ ପାଠ କଲେ 'ଗୋରକ୍ଷ ବାନୀ' । ସେଥିରେ ଲେଖା ଅଛି ''ଆହୁଠ ହାତ କଳେବର'', ଅର୍ଥାତ ପ୍ରତ୍ୟେକ ମଣିଷ ନିଜ ହାତରେ ତିନିହାତ ଡାଖଣ୍ଡେ ଲମ୍ବ । ଏ ସହଜ ଅର୍ଥ ନ କରି 'ଆହୁଠ'କୁ ଘୂର୍ଣ୍ଣନ ଓ 'କଳେବର'କୁ 'କଲେବର' ଭାବରେ ଗ୍ରହଣ କରିବା ସଂପୂର୍ଣ୍ଣ ଅସଙ୍ଗତ । ତାଙ୍କର ଏ ଆଲୋଚନାଟି 'ନବରବି'ରେ ପ୍ରକାଶ ପାଇଲା । ସହକର୍ମୀ ଇଂରାଜୀ ବିଭାଗ ପ୍ରାଧ୍ୟାପକ ଶ୍ରୀ ଚନ୍ଦ୍ରଶେଖର ରଥ ସେ ଲେଖାଟି ପଢ଼ିଥିଲେ । ଥଟ୍ଟା କରି କହିଲେ, 'ହଇହେ ନଟବାବୁ ଆପଣ ଏମିତି ଏ ବିଚ୍‌ରାସ୍ତାରେ ଭଦ୍ରଲୋକମାନଙ୍କୁ ପ୍ରହାର କରୁଛନ୍ତି କାହିଁକି ?' ନଟବାବୁ କିଛି ବୁଝି ନପାରି କହିଲେ, 'ମୁଁ କ'ଣ ଭୁଲ୍ କଲିକି ?' ତା'ପରେ ହାସ୍ୟରୋଳ । ଏଇପରି ବନ୍ଧୁମାନଙ୍କର ପ୍ରିୟପାତ୍ର ଥିଲେ ସେ ।

ସାମ୍ପ୍ରଦାୟିକ ସଦ୍‌ଭାବ କଥା ପଡ଼ିଲେ ସେ କହନ୍ତି, 'ଏ ରାଜନୈତିକ ନେତାମାନେ ସବୁ ଅନର୍ଥର ମୂଳ ।' ପୁରୀ ଜିଲ୍ଲା ସ୍କୁଲର ଗଣିତ ଶିକ୍ଷକ ରହମତ୍ ଅଲ୍ଲୀ ଆମ ସାଙ୍ଗେ ମହାପ୍ରସାଦ ସେବନ କରୁଥିଲେ । ତାଙ୍କ ମତରେ, ଜଣେ ପ୍ରତିଷ୍ଠିତ ବ୍ୟକ୍ତିର ସାହାଯ୍ୟ ବିନା କେହି ଉପରକୁ ଉଠିପାରିବେ ନାହିଁ । ଡଃ ମହତାବ ଝଙ୍କାରରେ ତାଙ୍କ ଲେଖା ପ୍ରକାଶ କରି ନଥିଲେ ତାଙ୍କୁ ଓଡ଼ିଶାରେ ଜାଣିଥାନ୍ତା କିଏ ? କବି ନଜରୁଲ୍ ଥରେ ରବୀନ୍ଦ୍ରନାଥଙ୍କ ପାଖରେ ବସିଥା'ନ୍ତି । ହଠାତ୍ ଉଠିପଡ଼ି କହିଲେ, 'ଆମି ତୋମାକେ ମାର୍‌ବୋ ।' ରବୀନ୍ଦ୍ରନାଥ ଶାନ୍ତ ଗଳାରେ କହିଲେ, 'ମୋତେ ତୁମେ ମାରିବାକୁ ଚାହୁଁଛ କାହିଁକି ?' ସେ ଉତ୍ତର ଦେଲେ 'ତୁମେ ଥିବା ପର୍ଯ୍ୟନ୍ତ ଆମକୁ କେହି ପଚାରିବେ ନାହିଁ ।' ରବୀନ୍ଦ୍ରନାଥ ଓ ନଜରୁଲ୍‌ଙ୍କ

ସମ୍ପର୍କ କେତେ ନିବିଡ଼ ଥିଲା ତାହା ସମସ୍ତେ ଜାଣନ୍ତି ।

ତା ୨୨.୨.୯୮ରେ ଶ୍ରୀ ଶୁଭକାନ୍ତ ବେହେରାଙ୍କ 'ରେବତୀ' ଉପରେ ଲେଖାଟିଏ ବାହାରି ଥାଏ । ଶୁଭକାନ୍ତଙ୍କ ମତରେ ଫକୀରମୋହନ ନାରୀଶିକ୍ଷା ସପକ୍ଷରେ ନଥିଲେ । ସାର୍ କହିଲେ, 'ନୂଆଧାରା ପ୍ରବର୍ତ୍ତନ ସମୟରେ ଯେଉଁମାନେ ପ୍ରତ୍ୟକ୍ଷଦର୍ଶୀ ଥା'ନ୍ତି ସେମାନଙ୍କର ଚିନ୍ତାଧାରା ସାହିତ୍ୟରେ ଭିନ୍ନ ରୂପରେ ପ୍ରକାଶ ପାଇଥାଏ । ସପକ୍ଷରେ କହିଲେ ତା'ର ପରିଣତି କ'ଣ ହେବ ସେ କଥା ଚିନ୍ତା କରିପାରିଲେ ଆମେ ଏପରି କହନ୍ତୁ ନାହିଁ ।' 'ଶାସ୍ତି'ରେ ଧୋବିକୁ ଲେଖକ ପଥର ପ୍ରତିମା କରିଦେଲେ । ସେତେବେଳର ସାମାଜିକ ବ୍ୟବସ୍ଥାର ତାହା ଅନୁକୂଳ ଥିଲା । ଲେଖକଙ୍କର ଏହା ଦୁର୍ବଳତା ନୁହେଁ । ଏହା କଳା ବୈଭବ । ଆଉଦିନେ କହିଲେ, 'ସେ ଶୁଭକାନ୍ତ କିଏ ଜାଣିଛୁ ? ସେ ପରା ଆମ କୃଷ୍ଣବାବୁଙ୍କ (ଡଃ କୃଷ୍ଣଚରଣ ବେହେରା) ପୁଅ, ଆଇ.ଏଫ୍.ଏସ୍ ।' ସାର୍‌ଙ୍କର ଏଇପରି ସନ୍ଧାନୀ ଦୃଷ୍ଟି ଥିଲା । ଡଃ ମାନସିଂହ 'କୋଣାର୍କ' କବିତା କେବେ ଲେଖିଲେ, ରାଧାନାଥ କେଉଁଠି ବସି ଭାଲେରି ଶିଖରେ ଅସ୍ତ ସୂର୍ଯ୍ୟର ଆଭା ନିରୀକ୍ଷଣ କରିଥିଲେ ଏବଂ କେଉଁ କାରଣରୁ ସେ ରାଜାଙ୍କ ପ୍ରତି ବିମୁଖ ହେଲେ ଏମିତି କେତେ କଥା ତାଙ୍କଠାରୁ ଶୁଣିଥିଲି ।

ଡଃ ସାମନ୍ତରାୟଙ୍କର ଉତ୍କଟ ଜାତି ପ୍ରୀତିଥିଲା । ସେ ଖଣ୍ଡାୟତ ବୋଲି ଗର୍ବ କରୁଥିଲେ । ''ଯେଉଁ ଦେଶର ବୀର କଥା କଥାକେ ମଥାଦିଏ ଓ ନିଏ, ଯାହାର ରକ୍ତତତଟା ସଂଗୀତର ସ୍ୱରରେ ଆକାଶ ପବନ ଭରିଯାଏ, ସେଇ ଖଣ୍ଡାୟତର ରକ୍ତ ଯେତେ କ୍ଷୀଣ ଧାର ହେଲେ ବି ମୋ ଦେହରେ ପ୍ରବାହିତ । ସେହି ଦେଶ କୋଳରେ ଜନ୍ମଲାଭ କରି ମୁଁ କେବେ ଦୀନହୀନ ହୋଇ ନପାରେ ।'' କବି ଗଡ଼ନାୟକଙ୍କ ଏ ଉକ୍ତିଟି ତାଙ୍କୁ ଖୁବ୍ ଭଲ ଲାଗେ ।

ତାଙ୍କ ସର୍ବଶେଷ ଗ୍ରନ୍ଥ 'କବି ଗୋପବନ୍ଧୁଙ୍କ କାବ୍ୟ ସୃଷ୍ଟିମାନସ'ର ପାଣ୍ଡୁଲିପି ମୋତେ ଉତାରିବାକୁ ଦେଇଥିଲେ । ହେଲେ ମୋ ନାଁ ବହିର ମୁଖବନ୍ଧରେ ଲେଖି ନଥିଲେ । ମୁଁ ପଚାରିବାରୁ କହିଲେ, 'ମୁଁ ତୁମ ସମସ୍ତଙ୍କୁ ଭୁଲିଯିବାକୁ ଚାହୁଁଛିରେ । ମୋ ବହିରେ ତୋ ନାଁ ଲେଖିଦେଲେ ତୁ କ'ଣ ବଡ଼ ହୋଇଯିବୁ ? ତୁ ନିଜେ ଲେଖାଲେଖି କର । ନ ମରି କିଏ ସ୍ୱର୍ଗ ଦେଖିଲାଣି ?'

ମୃତ୍ୟୁ ପୂର୍ବର ଘଟଣା । ତାଙ୍କଠାରେ ରକ୍ତହୀନତା ଦେଖାଦେଲା । ତାଙ୍କୁ ରକ୍ତ ଦିଆଗଲା । ସେ ଯେତେବେଳେ ଏକଥା ଜାଣିଲେ ତାଙ୍କୁ ଆଉ ସମ୍ଭାଳେ କିଏ ? 'କୋଉ ଅଜଣା ଲୋକର ରକ୍ତ ଆଣି ମୋ ରକ୍ତକୁ ଦୂଷିତ କରିବାକୁ ତୁମମାନଙ୍କୁ ଅଧିକାର ଦେଲା କିଏ ?' ସତେ କି ଦୁର୍ବାସା ! ଏମିତି ଏକବାଗିଆ ମଣିଷ ଥିଲେ ସାର୍ । ଯାହାକୁ ଭଲ ପାଇବେ ଜୀବନ ଦେଇ ଭଲ ପାଇବେ । ଥରେ ବିଗିଡ଼ି ଗଲେ ଆଉ ମୁହଁକୁ ଚାହିଁବେ ନାହିଁ । ମୋର ସୌଭାଗ୍ୟ ମୁଁ ତାଙ୍କର ପ୍ରିୟଜନ ମଧ୍ୟରେ ଜଣେ ହୋଇ ରହିଥିଲି ।

*ଶ୍ରୀରାମ ନଗର*
*ଭୁବନେଶ୍ୱର-୨*

# ନୈର୍ବ୍ୟକ୍ତିକ ନିବିଡ଼ତା

*ସୌରୀନ୍ଦ୍ର ବାରିକ*

ସେତେବେଳେ ମୁଁ ସ୍କୁଲରେ ପଢୁଥାଏ । କେଉଁ କ୍ଲାସ୍‌ରେ ମନେନାହିଁ । ବାରିପଦାରେ ନୂଆ ନୂଆ କଲେଜ ଖୋଲିଥାଏ । ସାରା ସହରରେ ଖେଳି ଯାଇଥାଏ ଗୋଟେ ନୂଆ ଚଞ୍ଚଳତା । କେତେ ନୂଆ ମୁହଁ, କେତେ ନୂଆ ଢଙ୍ଗ, ସ୍କୁଲ ହତାର ପାରମ୍ପରିକ ବାତାବରଣ ପୂରା ବଦଳେଇ ଦେଇଥାଏ । ଏଇ ନୂଆ ଭାବକୁ ମୁଁ ଦେଖୁଥାଏ, ଚକିତ ହେଉଥାଏ । କାରଣ ସ୍କୁଲ୍ ହତାରେ ଥାଏ ହେଡ୍‌ମାଷ୍ଟରଙ୍କ କ୍ୱାଟର୍ସ । ହେଡ୍‌ମାଷ୍ଟର ଥାଆନ୍ତି ମୋ' ବାପା ଶ୍ରୀଯୁକ୍ତ ଦୈତାରୀ ବାରିକ । ସକାଳୁ ଆରମ୍ଭ ହୁଏ ଆମ ଘର ଆଗରେ କଲେଜର ନୂଆ ଜୀବନ ।

ନୂଆ ନୂଆ ଅଧ୍ୟାପକମାନେ ଆସନ୍ତି । ଆମ ସ୍କୁଲ୍ ସାର୍‌ମାନଙ୍କଠାରୁ ସେମାନେ କେମିତି ମୋତେ ଅଲଗା ଲାଗନ୍ତି । ସେମାନେ ଆମ ଘରକୁ ଆସନ୍ତି । ବାପାଙ୍କ ସହ ଗପ କରନ୍ତି । ସେତେବେଳେ ଘରେ ଚା'ର ଚଳଣି ନଥାଏ । ସେମାନେ ପାନ ଖାଆନ୍ତି । ଏହି ପରି ଦିନେ ଜଣେ ନୂଆ ଅଧ୍ୟାପକ ଆମ ଘରକୁ ଆସିଲେ । ତାଙ୍କୁ ଦେଖି ମୋତେ ଅଲଗା ଲାଗିଲା । ସେ ଆମ ସ୍କୁଲ ସାର୍‌ଙ୍କ ପରି ଦିଶୁଥିଲେ । ପିନ୍ଧିଥିଲେ ଧୋତି, ବୋଧହୁଏ ଗୋଟେ ହାଫ୍ ସାର୍ଟ । ତାଙ୍କ ସାଥିରେ ଥିଲେ ଶ୍ରୀଯୁକ୍ତ ପରମାନନ୍ଦ ଆଚାର୍ଯ୍ୟ । ସେମାନେ ଗଲାପରେ ମୁଁ ବାପାଙ୍କୁ ପଚାରିଲି ଆଜି ଯିଏ ଆସିଥିଲେ ସିଏ କ'ଣ ଜଣେ ପ୍ରଫେସର । ବାପା ହଁ ଭରିବା ସହ କହିଲେ ସେ ଓଡ଼ିଆ ପ୍ରଫେସର୍ । ପ୍ରଫେସର ହେବା ଆଗରୁ ସ୍କୁଲରେ ଅଙ୍କ ପଢ଼ାଉଥିଲେ । କଥାଟା ଶୁଣି ମୁଁ କିଛି ବୁଝିପାରିଲି ନାହିଁ । ଅଙ୍କକୁ ମୋର ପ୍ରାଣେ ଡର । କିନ୍ତୁ ସାହିତ୍ୟ ମୋର ପ୍ରିୟ । ଅଙ୍କ ସାଥିରେ ଯେ ଜଣେ ସାହିତ୍ୟ ବି ଭଲ କରେ ଏ ବିଶ୍ୱାସ ମୋର ନଥିଲା । ଏକ ପ୍ରକାର ବିସ୍ମୟଭରା ଆଖିରେ ସେହି ସାଧାରଣ ଲୋକଟିକୁ ଦୂରରୁ ଦେଖିଲି । ବାପାଙ୍କ କଥା ଯେତେ ଯେତେ ମନେ ପଡୁଥିଲା ସେହି ସାଧାରଣ ଲୋକଟି ମୋ' ପାଖରେ ଅବିଶ୍ୱାସ୍ୟ ଭାବରେ ଅସାଧାରଣ ହୋଇ ଉଠୁଥିଲା । ବୁଝି ପାରୁନଥିଲି କେମିତି ଗୋଟିଏ ମୁଣ୍ଡ ଭିତରେ ଏକ ସାଙ୍ଗରେ ଅଙ୍କ ଓ ସାହିତ୍ୟ ମିଶି ପାରିଲା !

ସେହି ସାଧାରଣ ଅସାଧାରଣ ବ୍ୟକ୍ତିତ୍ୱଟି ହେଉଛନ୍ତି ମୋ' କଲେଜ ଜୀବନର ପ୍ରଥମ ସାହିତ୍ୟ ଅଧ୍ୟାପକ ଡଃ ନଟବର ସାମନ୍ତରାୟ । ଧୀରେ ଧୀରେ ସେ ଆମ ଘର ସହ ଘନିଷ୍ଠ ହୋଇଗଲେ । ମୋ' ବଡ଼ଭାଇ ତାଙ୍କର ଛାତ୍ର ଥିଲେ, ଅତି ପ୍ରିୟ ବି । ସେତେବେଳେ ସେ ରହୁଥା'ନ୍ତି ସରକାରୀ କବିରାଜି ଡାକ୍ତରଖାନା ସାମ୍ନା ଗୋଟିଏ ଭଡ଼ା ଘରେ । ଆମ ଗାଁରୁ ଗୁଡ଼ କଦଳୀ ଆସିଲେ ବାପା ତାଙ୍କ ଘରକୁ ପ୍ରଥମେ ପଠାଉଥିଲେ । ଗୁଡ଼ ଦେବା ଉଦ୍ଦେଶ୍ୟରେ ତାଙ୍କ ଘରକୁ ଯାଇଛି । ତାଙ୍କର ଅମାୟିକ ବ୍ୟବହାର, ସ୍ନେହ, ଶ୍ରଦ୍ଧା କିନ୍ତୁ ମୋ' ଭୟକୁ ଦୂରେଇ ପାରୁନଥିଲା । ସେ ଥିଲେ ମୋ' ପାଖରେ ଏକ ବିସ୍ମୟର ପ୍ରତୀକ

ଯେଉଁଠି ଅଙ୍କ ଆଉ ସାହିତ୍ୟ ଏକ ହୋଇଯାଏ । ତେଣୁ ତାଙ୍କ ପାଇଁ ପ୍ରଥମରୁ ମୋ' ମନରେ ସୃଷ୍ଟି ହୋଇଥିଲା ଏକ ଦୋସର ଦୂରତା । ଯେଉଁ ଦୂରତା ନିକଟତାକୁ ଅଧିକ ଗଭୀର କରେ, ପ୍ରାଞ୍ଜଳ କରେ ।

ଘଟଣାକ୍ରମରେ ମୁଁ କଲେଜରେ ବିଜ୍ଞାନ ଶ୍ରେଣୀରେ ଭର୍ତ୍ତି ହେଲି । ଆମ ଟ୍ୟୁଟୋରିଆଲ୍ କ୍ଲାସ ସେ ନେଲେ । ସେଦିନ ଗୋଟାଏ ପ୍ରବନ୍ଧ ଲେଖିବାକୁ ଦେଇଥିଲେ । ଆମେ ସବୁ ଘରୁ ଲେଖି ନେଇଗଲୁ । ସେଦିନ ଖାତାଗୁଡ଼ିକ ସେ ଘରକୁ ନେଇଗଲେ । ସେତେବେଳେ ଟ୍ୟୁଟୋରିଆଲ୍ କ୍ଲାସଗୁଡ଼ିକ ଆମ ପାଇଁ ବଡ଼ ଗୁରୁତ୍ୱପୂର୍ଣ୍ଣ ଥିଲା । ଆମେ ସାର୍‌ଙ୍କର ଦୃଷ୍ଟି ଆକର୍ଷଣ କରିବା ପାଇଁ ଅତି ଯତ୍ନର ସହ ଦିଆ ଯାଇଥିବା ବିଷୟଗୁଡ଼ିକୁ ଲେଖିଥାଉଁ । ସାର୍‌ଙ୍କର ମତାମତ ଆମ ପାଖରେ ଥିଲା ମଣିମାଣିକ୍ୟ । ମୋ' ଟ୍ୟୁଟୋରିଆଲ୍ ଖାତାର ପ୍ରଥମ ପୃଷ୍ଠାରେ ମୁଁ ଗୋଟାଏ ଛୋଟ କବିତା ଲେଖି ଦେଇଥିଲି । ମୋର ଉଦ୍ଦେଶ୍ୟ ସାହିତ୍ୟ ଖାତାଟିକୁ ଅଧିକ ସୁନ୍ଦର ଓ ସାହିତ୍ୟମୟ କରିବା । ପର କ୍ଲାସ୍‌ରେ ସାର୍ ଖାତାଗୁଡ଼ିକ ଫେରାଇ ଦେଲେ । ଲେଖାଗୁଡ଼ିକ ଉପରେ ମତାମତ ଦେଲେ । ନମ୍ବର ବି ଦେଇଥିଲେ । ସବା ଶେଷରେ ମୋତେ ଠିଆ କରାଇ ପଚାରିଲେ, 'ତୁମ ଖାତା ଆରମ୍ଭରେ ଥିବା କବିତାଟି କାହାର ଲେଖା ?' ମୁଁ ଉତ୍ତର ଆଉ ଲାଜରେ କିଛି କହି ପାରିଲିନାହିଁ । ସେ କହିଲେ, ' ମୁଁ ତ ଆଗରୁ ସେ କବିତା କେଉଁଠି ପଢ଼ିନି, କାହାର ଲେଖା ?' ମୁଁ ଧୀରେ ଧୀରେ କହିଲି, 'ସାର୍, ଭୁଲ୍ ହୋଇଗଲା । ଖାତରେ ମୁଁ ମୋ' କବିତା ଲେଖିଥିଲି ।' ଏତିକିରେ ସାର୍ ହସିଲେ । କହିଲେ 'ତୁମ ବାପା କହୁଥିଲେ ତୁମେ କୁଆଡ଼େ ଡାକ୍ତର ହେବ । ତୁମେ କ'ଣ କବିତା ଲେଖୁଛ ?' ମୁଁ ଚୁପ୍‌ଚାପ୍ ଠିଆ ହୋଇଥାଏ । ସାର୍ କହିଲେ 'କବିତା ଶବ୍ଦଯୋଖା କାରିଗରୀ ନୁହେଁ । ତୁମେ ଯେଉଁ ଶବ୍ଦ ଲେଖୁଛ ତାକୁ ଭଲକରି ଜାଣ, ବୁଝ, ତା'ପରେ ବ୍ୟବହାର କର । ତେବେ ଯାଇ ତୁମ କବିତା ଭଲ ହେବ ଅର୍ଥାତ୍ ଯାହା କରିବାକୁ ଯାଉଛ ଠିକ୍ ଭାବରେ ନିଜ ଭାବରେ କରିପାରିବ ।' ସେତେବେଳେ ତାଙ୍କ କଥାକୁ ବୁଝି ନଥିଲି । ଆଜି ହେଜୁଚି ସିଏ ସେଦିନ କେତେ ବଡ଼ କଥା କହିଥିଲେ । ଘଟଣା କ୍ରମେ ମୁଁ ଡାକ୍ତର ହୋଇପାରିଲି ନାହିଁ । କବିତା ଲେଖିଲି । ମାତ୍ର କବିତା ଲେଖା ବିଷୟରେ ସେଦିନ ସାର୍‌ଙ୍କର ସେଇ କେତେ ପଦ କଥା ଯେ ମୋ' ଅଜାଣତରେ ବୀଜମନ୍ତ୍ର ପରି କାମ କରିଛି, ଏବେ ବୁଝୁଛି । ମୁଁ କେବଳ ଶବ୍ଦ କାରିଗର ନହୋଇ ଭାବର ସତ୍ୟ ପ୍ରକାଶ ପାଇଁ ଚେଷ୍ଟା କରିଛି ।

ଆମେ ସେତେବେଳେ କଥାବାର୍ତ୍ତା ହେଉଥିଲୁ ସାର୍ କୁଆଡ଼େ ରିସର୍ଚ୍ଚ କରୁଛନ୍ତି । ସେଇଥି ପାଇଁ ସାର୍ ଅନେକ ସମୟରେ ଜୁବୁଲି ଲାଇବ୍ରେରୀକୁ ଯାଉଥିଲେ । ପୁଣି ପରମାନନ୍ଦ ବାବୁଙ୍କ ଘରକୁ ମଧ୍ୟ ଯାଉଥିଲେ । ଜଣେ ତ କହିଲେ ସେଇଥିପାଇଁ ସାର୍ ପରା ଜୁବୁଲି ଲାଇବ୍ରେରୀ ପାଖରେ ଘର ଭଡ଼ା ନେଇଛନ୍ତି । ଆମର ଧାରଣା ଜୁବୁଲି ଲାଇବ୍ରେରୀ ପାଖରେ ରହିଲେ କୁଆଡ଼େ ଜଣେ ରିସର୍ଚ୍ଚ କରିପାରିବ । ସାର୍ କ'ଣ 'ରିସର୍ଚ୍ଚ କରୁଥିଲେ ? ରିସର୍ଚ୍ଚ କ'ଣ ? ସେତେବେଳେ ଏସବୁ ଆମ ଧାରଣାର ବାହାରେ । କିନ୍ତୁ ଆମ ସାର୍ ଯେ ରିସର୍ଚ୍ଚ କରୁଛନ୍ତି, ସେଇ ଆମର ଗର୍ବ ଓ ଗୌରବ ।

ସାର୍‌ଙ୍କ ରିସର୍ଚ୍ଚ ଉପରେ ମୋର କିଛି କହିବାର ନାହିଁ । ସେକଥା କହିବାର ଯୋଗ୍ୟତା

ବି ମୋର ନାହିଁ । ମାତ୍ର ତାଙ୍କ ଲେଖାରୁ ମୁଁ ମୋର ସେଇ ପ୍ରଥମ ବିସ୍ମୟଟିକୁ ବୁଝିପାରିଛି । ଅଙ୍କ ଓ ସାହିତ୍ୟର କୋଳାକୋଳି ଭାବ । ତାଙ୍କ ପାଖରୁ ଶିଖିଛି ଗୋଟିଏ ରିସର୍ଚ୍ଚ ସ୍କଲାର୍‌ର ମାନସିକତା କ'ଣ ହେବା ଉଚିତ୍ । ସେ ଶିଖାଇଛନ୍ତି ଖାଲି ସତ୍ୟଟିକୁ ଖୋଜିବା ନୁହେଁ, ସତ୍ୟ ଖୋଜିବାର ଧାରାଟିକୁ ମଧ୍ୟ ଆମୂଳ୍ଚ କରିବା । ସାହିତ୍ୟ କ୍ଷେତ୍ରରେ ଏହି ଧାରାଟି ଅଧିକ ପ୍ରାଧାନ୍ୟ ଲାଭ କରିଥାଏ କାରଣ ସାହିତ୍ୟ ହେଉଛି ଆବେଗର କଥା । ମାତ୍ର ଏହି ଆବେଗଟିର ମୂଳଉତ୍ସ ସ୍ରଷ୍ଟାର ମନଟି କିନ୍ତୁ ବହୁଭାବରେ ଅଣଆବେଗ ପ୍ରଭାବ ଦ୍ୱାରା ନିୟନ୍ତ୍ରିତ । ତେଣୁ ସାହିତ୍ୟର ମଞ୍ଜିଟିକୁ ବୁଝିବାକୁ ହେଲେ ଆମକୁ ଉଭୟ ଏହି ଆବେଗ ଏବଂ ଅଣଆବେଗ ଜଗତକୁ ଜାଣିବାକୁ ପଡ଼ିବ, ବୁଝିବାକୁ ପଡ଼ିବ । ସାହିତ୍ୟ କ୍ଷେତ୍ରରେ ରିସର୍ଚ୍ଚ କରୁଥିବା ମାନସିକତାଟି ସେହି ଅଙ୍କ ଏବଂ ସାହିତ୍ୟର ସମନ୍ୱୟ ଘଟାଇବ । ଅର୍ଥାତ୍ ଗୋଟିଏ ଦିଗରେ ମାନିନେବ ଯୁକ୍ତି, ପ୍ରଜ୍ଞା, ବିଶ୍ଳେଷଣର ନୈର୍ବ୍ୟକ୍ତିକ ଧାରା ଅର୍ଥାତ୍ ବୈଜ୍ଞାନିକଟିଏ ହେବ । ଅନ୍ୟ ଦିଗରେ ଆବେଗ, କଳ୍ପନା, ସ୍ୱପ୍ନର ଗୁରୁତ୍ୱକୁ ମଧ୍ୟ ସ୍ୱୀକାର କରିବ ଅର୍ଥାତ୍ ହେବ ସାହିତ୍ୟିକଟିଏ । ଏହି ଉଭୟର ସମନ୍ୱୟ ହିଁ ରସିକପଣ । ଏଥିରେ ଥାଏ ଉଦାରତା, ଆନ୍ତରିକତା ଏବଂ ସମ୍ବେଦନା । ଏହି ଉଭୟ ଜଗତର ବାସିନ୍ଦା ହେଉଛନ୍ତି ଡଃ ନଟବର ସାମନ୍ତରାୟ । ତାଙ୍କ ମାନସିକତା ଏକ ରସିକ ସମନ୍ୱୟ, ଯେଉଁଠି ବର୍ତ୍ତମାନ ଏବଂ ଇତିହାସ, ନୈର୍ବ୍ୟକ୍ତିକ ବିଶ୍ଳେଷଣ ଏବଂ ଉଦାର ଆବେଗୀୟ ଗ୍ରହଣ ଏକ ହୁଏ । ଏହା ହିଁ ସାହିତ୍ୟ ଗବେଷଣାର ମୂଳମନ୍ତ୍ର । ଏହି ମନ୍ତ୍ରଟି ମୁଁ ପାଇଛି ତାଙ୍କ କୃତିରୁ । ସେ ଭଲ ଭାବରେ ବୁଝିଥିଲେ ଇତିହାସର ଛୋଟ ଛୋଟ ଘଟଣା, ଗୋଟିଏ ଗୋଟିଏ ତାରିଖ ସାହିତ୍ୟର ଧାରା ପରିବର୍ତ୍ତନରେ ସହାୟକ ହୁଏ । ତାଙ୍କ ଆଖି, ତାଙ୍କ ଚେତନା ଥିଲା ଆକାଶରେ ଉଡୁଥିବା ଚିଲର ଦୃଷ୍ଟିଠାରୁ ଆହୁରି ତୀକ୍ଷ୍ଣ, ଆହୁରି ବ୍ୟାପକ । ଇତିହାସରେ ସାହିତ୍ୟ ପ୍ଲାବନ ଭିତରୁ ସେ ସେହି ସୂକ୍ଷ୍ମାତିସୂକ୍ଷ୍ମ ଚେତନାକୁ ଧରି ପାରୁଥିଲେ । ତେଣୁ ତାଙ୍କ ପାଖରେ ଥିଲା ସବୁ ମୁଖ୍ୟ । ସବୁର ଖୁଣ୍ଟିନାଣ୍ଟି ଆଲୋଚନା, ବିଶ୍ଳେଷଣ ତାଙ୍କର ସମାଲୋଚନାର ବିଶେଷତ୍ୱ । ମାତ୍ର କେତେବେଳେ ସେ ଏହି ବିଶ୍ଳେଷଣଟିକୁ ତାଙ୍କ ଗବେଷଣାର ଶେଷ ପରିଣତି ବୋଲି ଧରିନଥିଲେ । ଏହା ଥିଲା ସତ୍ୟାନୁଭବର ଏକ ମାଧ୍ୟମ, ଏକ ଖଣ୍ଡାଧାର ମାର୍ଗ । ଏହି ଖଣ୍ଡାଧାରରେ ଚାଲିବା ପାଇଁ ପ୍ରୟୋଜନ ନିଷ୍ଠା ଓ ସାଧନା । ସାର୍ ହେଉଛନ୍ତି ସାଧନାର ପ୍ରତୀକ ।

ତେଣୁ ସେ ଦୁଇଟି ଜଗତ ପାଖରେ ସବୁବେଳେ ସତ୍ୟଶୀଳ ଥିଲେ । ଗୋଟିଏ ସାହିତ୍ୟର ଜଗତ, ତା'ର କ୍ରମ ବିକାଶର ଧାରା ଓ ଅନ୍ୟଟି ନିଜର ଅନୁସନ୍ଧିତ୍ସୁ ମନ । ଗୋଟିଏ ପାଇଁ ଅନ୍ୟ ଗୋଟିକୁ ସେ ଜଳାଞ୍ଜଳି ଦେଇ ନଥିଲେ । ତେଣୁ ତାଙ୍କ ଲେଖା ପଢ଼ିଲାବେଳେ କେଉଁଠି କିଛି ଖୁଣ ରହିଲା ପରି ମନେ ହୁଏ ନାହିଁ କିମ୍ବା କୌଣସିଠାରେ ସେ କୌଣସି ନିର୍ଦ୍ଦିଷ୍ଟ ଧାରା ଦ୍ୱାରା ଅଯଥା ପ୍ରଭାବିତ ହେବାର ଜଣାଯାଏ ନାହିଁ । ତେଣୁ ତାଙ୍କ ଲେଖା ପକ୍ଷପାତୀ ବିଚାରର ବହୁ ଊର୍ଦ୍ଧ୍ୱରେ । ସେଗୁଡ଼ିକ କେବଳ ସତ୍ୟର ସନ୍ଧାନୀ, ସତ୍ୟ ପିପାସୀ । ସେଗୁଡ଼ିକର ଅନ୍ୱେଷା କେବଳ ସତ୍ୟର । ଏଥିପାଇଁ ତାଙ୍କ ପାଖରେ ଇତିହାସ କେବଳ ଘଟଣାର ସମାହାର ହୋଇଯାଏ ନାହିଁ । ଏହା ହୋଇ ଉଠେ ଏକ ଚେତନାର ଦ୍ୟୋତକ । ଇତିହାସର ଐତିହାସିକତା ଆବେଗର ନୈର୍ବ୍ୟକ୍ତିକ ଉତ୍ସ ହୋଇଯାଏ ।

ଏହି ନୈର୍ବ୍ୟକ୍ତିକତାର ବ୍ୟକ୍ତିକ ଉଚ୍ଚାରଣର ସନ୍ଧାନ ସେ ସାହିତ୍ୟରେ କରିଥିଲେ । ଫଳରେ ତାଙ୍କ ପାଖରେ ସାହିତ୍ୟ କାଳଚ୍ୟୁତ ଅବା ଇତିହାସ-କ୍ରାନ୍ତ ନୁହେଁ । ଏହା ଏକ ବାହ୍ୟ ଧାରାର ଆତ୍ମିକ ଆବେଗମୟୀ ଉଚ୍ଚାରଣ । ଏହି ଉଚ୍ଚାରଣକୁ ବୁଝିବାକୁ ହେଲେ ସେହି ଧାରାଟିକୁ ମଧ୍ୟ ବୁଝିବାକୁ ପଡ଼ିବ । ତାଙ୍କ ଲେଖା ଏହି ବୁଝିବାର ପ୍ରୟାସ ।

ତାଙ୍କ ଆଲୋଚନାରେ ପାଣ୍ଡିତ୍ୟ ଥିଲା ମାତ୍ର ତାହା ଥିଲା ଆବେଗ ଦଗ୍ଧ । ତେଣୁ ତାଙ୍କ ଲେଖାଗୁଡ଼ିକ ନିରସ ତଥ୍ୟ ସମ୍ବଳିତ ଦଲିଲ୍ ମାତ୍ର ନୁହେଁ; ସେଗୁଡ଼ିକ ଏକ ରସିକ ମନର ଉଦାର ସମ୍ବେଦନଶୀଳ ପ୍ରତିକ୍ରିୟା । ଏହି କଥା କେତେ ସରଳଭାବରେ ସେ ମୋତେ ସେଦିନ ଟ୍ୟୁଟୋରିଆଲ୍ କ୍ଲାସ୍‌ରେ କହିଥିଲେ । କହିଥିଲେ ଶବ୍ଦ ସବୁକୁ ବୁଝିବାକୁ । ମାତ୍ର ବୁଝିବା କେବଳ ବୁଦ୍ଧି ସାହାଯ୍ୟରେ ଅର୍ଥ ଖୋଜିବା ନୁହେଁ । ସେଗୁଡ଼ିକ ସହ ଆତ୍ମିକ ହେବା-ଶବ୍ଦକୁ 'ମୁଁ' ରେ ରୂପାନ୍ତରିତ କରିବା ସଙ୍ଗେ ସଙ୍ଗେ 'ମୁଁ' କୁ ଶବ୍ଦମୟ କରିଦେବା । ସେ ସାହିତ୍ୟରେ ଏହି ସମ୍ପର୍କକୁ ଖୋଜୁଥିଲେ । କାରଣ ଏହି ସମ୍ପର୍କରେ ହିଁ ସାହିତ୍ୟର ସତ୍ୟ, ତା'ର ଆବେଦନ । ତେଣୁ ତାଙ୍କର ବିଶ୍ଳେଷଣରେ ଥିବା ବୈଜ୍ଞାନିକ ଦୂରତା ସମ୍ପୂର୍ଣ୍ଣ ନୈର୍ବ୍ୟକ୍ତିକ ନୁହେଁ, ତାହା ଏକ ଦୋସର ଦୂରତା । ଏହି ଦୂରତାରେ ନିବିଡ଼ତା ମଧ୍ୟ ଅଙ୍ଗାଙ୍ଗୀ ।

ଆଜିର କେନ୍ଦ୍ରଚ୍ୟୁତ ଜଗତରେ ଯେଉଁଠି ଅର୍ଥର ଅର୍ଥ ଉପରେ ପ୍ରଶ୍ନବାଚୀ, ସାହିତ୍ୟ କୃତିର ନିର୍ଦ୍ଦିଷ୍ଟତା ଉପରେ ପ୍ରଶ୍ନବାଚୀ, ସବୁ ମୂଲ୍ୟବୋଧ, ସବୁ ପାରମ୍ପାରିକ ଧାରା ଏପରିକି ସତ୍ୟର ସତ୍ୟଶୀଳତା ଏବଂ ତା'ର ଧ୍ରୁବପଣ ଉପରେ ମଧ୍ୟ ପ୍ରଶ୍ନବାଚୀ, ସେତିକିବେଳେ ମୋ' ମନକୁ ଆସନ୍ତି ମୋର ସାର୍ । ମୋ' ପାଖରେ ସବୁ ପ୍ରଶ୍ନର ଉର୍ଦ୍ଧ୍ୱରେ ଗୋଟିଏ ପ୍ରଶ୍ନ ମଣିଷର ମନ, ତା'ର ସତ୍ୟ ସନ୍ଧାନୀ ମନ । ମୋ' ପାଖରେ ସତ୍ୟର ରୂପରେଖ ସ୍ପଷ୍ଟ ନୁହେଁ, ମାତ୍ର ସାର୍‌ଙ୍କର ସେହି ସତ୍ୟାନ୍ୱେଷୀ ରସିକ ବୈଜ୍ଞାନିକ ମନ ସବୁବେଳେ ସତେଜ, ମହାଧ୍ରୁବ ।

ରେଭେନ୍ସା କଲେଜ୍‌ରେ ପୁଣି ତାଙ୍କ ଛାତ୍ର । ହସିହସି ପଚାରିଲେ, 'କିହୋ, ମେଡିକାଲ୍ କଲେଜ ଛାଡ଼ି ଏଠାରେ ।' ମୁଁ କିଛି କହି ନଥିଲି । ମନେ ମନେ ଭାବୁଥିଲି ସେହି ଶବ୍ଦ ସମ୍ପର୍କ ମୋତେ ବେଶି ଟାଣିଲା । ମୁଁ ଡାକ୍ତରି ପଢ଼ିବା ବଦଳରେ ସାହିତ୍ୟ ପଢ଼ିଲି । ବହୁତ ଦିନ ପରେ ଭୁବନେଶ୍ୱରରେ ଦେଖା ହେଲା । ସେହି ପୁରୁଣା ଉଷ୍ମତା । ପ୍ରଥମେ ବାପାଙ୍କ କଥା, ଭାଇଙ୍କ କଥା, ଆମ ବାରିପଦା ଘର କଥା । ଶେଷରେ କହିଲେ 'ତୁମେ ଆଧୁନିକ କବିତା ଉପରେ ବହି ଲେଖୁଚ ମୋତେ ଦେବ ତ । ତୁମ ବହି ପଢ଼ିବି ।' ମୁଁ ହଁ କହିଥିଲି । ମାତ୍ର ମୋର ଅବହେଳା, ଘଟଣାଚକ୍ର ଯୋଗୁଁ ଦେଇ ପାରିଲି ନାହିଁ । ଗୋଟିଏ ଅବଶୋଷ ମୋର ରହିଗଲା ।

ମୁଁ ତାଙ୍କର ଖୁବ୍ ନିକଟ ନଥିଲି । ଏକା ସାଙ୍ଗରେ କେବେ ଚାକିରୀ କରିନାହିଁ । ତଥାପି ସେ ମୋ' ସ୍ମୃତିରେ ସବୁଦିନ ସତେଜ । ତାଙ୍କ ପାଖରୁ ଯାହା ପାଇଛି ତାହା ଏକ ମାନସିକତା, ଦୃଷ୍ଟିଭଙ୍ଗୀ, ସାହିତ୍ୟକୁ ଆପଣେଇବାର ଏକ ମାର୍ଗ । ସେ ମୋ ପାଇଁ ଏକ ପ୍ରକାର ପଥ ପ୍ରଦର୍ଶକ ।

*ପ୍ଲଟ୍ ନଂ-୪୮୩/୧, ପୁନାମାଗେଟ୍ ପାଖ,*
*ଏରୋଡ୍ରୋମ ରୋଡ୍, ଭୁବନେଶ୍ୱର*

# କେତୋଟି ଚିଠି

ଡଃ ସୁଦର୍ଶନ ଆଚାର୍ଯ୍ୟ

ଗବେଷଣାତ୍ମକ ସନ୍ଦର୍ଭ କିମ୍ବା ସମାଲୋଚନାତ୍ମକ ପ୍ରବନ୍ଧ ଭିତରୁ ଜଣେ ସାହିତ୍ୟ-ସାଧକଙ୍କ ଜ୍ଞାନଦୀପ୍ତ ପ୍ରତିଭା ତଥା ଅଧ୍ୟୟନ-ପରିସର ଆକଳନ କରାଯାଇ ପାରେ, ଗଳ୍ପ ଉପନ୍ୟାସ କିମ୍ବା କାବ୍ୟ ନାଟକ ମଧ୍ୟରୁ ଜଣେ ସୃଜନଶୀଳ ସ୍ରଷ୍ଟାଙ୍କ ଜାଗତିକ ଦୃଷ୍ଟି କିମ୍ବା ସମ୍ବେଦନଶୀଳ ମାନସିକତାର ପରିଚୟ ଲାଭ କରିବା କଷ୍ଟକର ନ ହୋଇ ପାରେ, କିନ୍ତୁ ଜଣେ ସାରସ୍ୱତ ଶିଳ୍ପୀଙ୍କ ବ୍ୟକ୍ତିଗତ ଚିଠିପତ୍ର ଭିତରୁ ତାଙ୍କର ଯେଉଁ ସହଜ ସରଳ ଏବଂ ଅମଳିନ ଭାବ ମୂର୍ତ୍ତିଟି ଫୁଟି ଉଠିଥାଏ, ତା'ର ଅନୁସନ୍ଧାନ କରିବା ଅନ୍ୟତ୍ର ସମ୍ଭବପର ନୁହେଁ । ଏଗୁଡ଼ିକ ତାଙ୍କ ବ୍ୟକ୍ତି-ଜୀବନର ସମସ୍ତ ସୁଖ ଦୁଃଖ, ହସ ଅଶ୍ରୁ, ଆଶା ଆକାଂକ୍ଷା, ଚିନ୍ତା ଚେତନା ବେଦନା ସଂବେଦନାର ଏକାନ୍ତ ବିଶ୍ୱାସଯୋଗ୍ୟ ପ୍ରମାଣପତ୍ର । ସାଧନାର ପୃଷ୍ଠଭୂମିରେ ଥିବା ସାଧକଟିର ବ୍ୟକ୍ତିଗତ, ପାରିବାରିକ, ତଥା ସମାଜିକ ଜୀବନ ଓ ପରିବେଶ ସହିତ ପରିଚିତ ନ ହେଲେ ଅନେକ ସମୟରେ ସିଦ୍ଧିର ମହତ୍ତ୍ୱ ସଠିକ୍ ଭାବରେ କଳନା କରିହୁଏ ନାହିଁ । ସାମ୍ପ୍ରତିକ ଆଲୋଚକମାନେ ଏଥିପାଇଁ ଲେଖକମାନଙ୍କ ଚିଠିପତ୍ର ଓ ଦିନଲିପି ଅନୁସନ୍ଧାନ କରି ଥାଆନ୍ତି; ତାଙ୍କର ନିଜ ଗ୍ରନ୍ଥ ସଂଗ୍ରହାଳୟ ସହିତ ପରିଚିତ ହେବା ପାଇଁ ଉଦ୍ୟମ କରିଥାଆନ୍ତି । ରାଧାନାଥ, ଗଙ୍ଗାଧର, ଫକୀରମୋହନ, ମାନସିଂହ ପ୍ରଭୃତିଙ୍କ ପତ୍ରାବଳୀ ସେମାନଙ୍କ ସାରସ୍ୱତ ସୃଷ୍ଟିର ବିଶ୍ଳେଷଣ ଦିଗରେ କିପରି ସହାୟକ ହୋଇ ପାରିଛି, ତା'ର ଉଦାହରଣ ଦେବା ନିଷ୍ପ୍ରୟୋଜନ । ଏ ଦୃଷ୍ଟିରୁ ବିଂଶ ଶତକର ଅସପନ୍ ସାହିତ୍ୟ ସମାଲୋଚକ ଓ ଗବେଷକ ନଟବର ସାମନ୍ତରାୟଙ୍କ ବ୍ୟକ୍ତିଗତ ଚିଠିପତ୍ରଗୁଡ଼ିକ ଭବିଷ୍ୟତ ଆଲୋଚକମାନଙ୍କୁ କିଛି ସାହାଯ୍ୟ କରି ପାରେ ବୋଲି, ଏଠାରେ ନିର୍ବାଚିତ କେତୋଟି ଚିଠିର କିଛି ଅଂଶ ଉଦ୍ଧାର କରାଯାଇଛି ।

ଚିଠି ଲେଖିବା କେତେକଙ୍କ ପାଇଁ ଏକ ବିଳାସ । ପ୍ରତିଦିନ କିଛିଟା ଚିଠି ନ ଲେଖିଲେ ସେମାନେ ମାନସିକ ଶାନ୍ତି ପାଇ ପାରନ୍ତି ନାହିଁ । ଏପରିକି କେହି କେହି ଏଥିପାଇଁ ଦିନର ଗୋଟିଏ ସମୟ ନିର୍ଦ୍ଧାରିତ ରଖିଥାଆନ୍ତି । ଚିଠିଟିଏ ପାଇବା ପରେ ତା'ର ଉତ୍ତରଟିଏ ନ ଲେଖିବା ପର୍ଯ୍ୟନ୍ତ ସେମାନେ ସ୍ଥିର ହୋଇ ରହି ପାରନ୍ତି ନାହିଁ । ଅନ୍ୟ କେତେକଙ୍କ ପାଇଁ ଚିଠିଟିଏ ଲେଖିବା ଅତ୍ୟନ୍ତ କଷ୍ଟକର ବ୍ୟାପାର । ନିହାତି ଆବଶ୍ୟକ ନ ହେଲେ ସେମାନଙ୍କଦ୍ୱାରା ଦି' ଚାରିଧାଡ଼ିର ଚିଠିଟିଏ ମଧ ଲେଖାଯାଇ ପାରେନାହିଁ । ଚିଠି ଲେଖିବାରେ ଆମେ ଗୁରୁଶିଷ୍ୟ ଥିଲୁ ସଂପୂର୍ଣ୍ଣ ବିପରୀତଧର୍ମୀ । ସାର୍‌ଙ୍କଠାରୁ ଦୁଇତିନି ପୃଷ୍ଠା ବ୍ୟାପୀ ତିନି/ଚାରିଟି ଚିଠି ପାଇବା ପରେ, ସମୟେ ସମୟେ ମୋର ଉତ୍ତର ନ ପାଇବା ଜନିତ ବିରକ୍ତିର ସୂଚନା ତାଙ୍କ ଚିଠିରୁ ମିଳିଲେ ମୁଁ ବାଧ୍ୟ ହୋଇ ଦି ଚାରି ଧାଡ଼ିର ଉତ୍ତରଟିଏ ଲେଖିଥାଏ । ଅବଶ୍ୟ ତାଙ୍କ ନିର୍ଦ୍ଦେଶ ଅନୁଯାୟୀ କାର୍ଯ୍ୟ କରିବା କିମ୍ବା ତାଙ୍କ ବରାଦ ଅନୁଯାୟୀ ତଥ୍ୟ ପଠାଇବାରେ କେବେ ହେଳା ହୁଏ ନାହିଁ । ୧୯୭୦ରୁ ୧୯୯୯ ମଧ୍ୟରେ ତାଙ୍କଠାରୁ

ପ୍ରାୟ ତିନିଶହରୁ କମ୍ ଚିଠି ମୁଁ ପାଇ ନଥିବି । ପ୍ରତ୍ୟେକଟି ଚିଠିରେ ବାତ୍ସଲ୍ୟ ଓ ଆଶୀର୍ବାଦର ସ୍ପର୍ଶ; ପ୍ରତ୍ୟେକଟିରୁ କିଛି ଶିକ୍ଷା ଲାଭ କରାଯାଇପାରେ । ଚିଠି ଗୁଡ଼ିକ ସାନ୍ତ୍ୱନାମୂଳକ ହେଉ କି ପ୍ରୋତ୍ସାହନମୂଳକ ହେଉ, ବ୍ୟାବସାୟିକ ହେଉ କି ଗବେଷଣା ବା ସମାଲୋଚନା ପାଇଁ ମାର୍ଗ ନିର୍ଦ୍ଦେଶମୂଳକ ହେଉ, ପ୍ରତ୍ୟେକଟି ଭିତରେ ଡକ୍ଟର ସାମନ୍ତରାୟଙ୍କ ଶିକ୍ଷକ ଏବଂ ଗବେଷକ ସୁଲଭ ବ୍ୟକ୍ତିତ୍ୱଟି ଫୁଟି ଉଠିଛି । ଏ ବ୍ୟକ୍ତିତ୍ୱର ସୁଦୂରପ୍ରସାରୀ ପ୍ରଭାବ ତାଙ୍କ ଲିଖିତ ପ୍ରାୟ ପ୍ରତ୍ୟେକଟି ପ୍ରବନ୍ଧ ଓ ଗ୍ରନ୍ଥରେ ଅନୁସନ୍ଧାନ କରିବା କଷ୍ଟ ସାଧ୍ୟ ନୁହେଁ । ତାଙ୍କର ଅସଂଖ୍ୟ ଗୁଣମୁଗ୍ଧ ବିଦଗ୍ଧ ପାଠକ, ଏ ଦେଶର ଭାବୀ ଗବେଷକ ଏପରି କି ଯେଉଁମାନଙ୍କ ମତକୁ ସେ ଖଣ୍ଡନ କରିଛନ୍ତି ସେମାନଙ୍କୁ ସାର୍ଥକ ଗବେଷଣାର ଉପଯୁକ୍ତ ମାର୍ଗଟି ଦର୍ଶାଇଦେବା ହିଁ ଥିଲା ତାଙ୍କ ରଚନାର ଅନ୍ୟତମ ପ୍ରମୁଖ ଲକ୍ଷ୍ୟ ।

ଡ଼କ୍ଟର ସାମନ୍ତରାୟଙ୍କ ପ୍ରତ୍ୟେକଟି ଚିଠି ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ସୁଲିଖିତ, ସୁବିନ୍ୟସ୍ତ ଓ ସୁସ୍ପଷ୍ଟ । ପୁସ୍ତକର ମୁଦ୍ରଣ ପରିପାଟୀ ହେଉ କି ଆବଶ୍ୟକୀୟ ତଥ୍ୟ ଯୋଗାଇବା ପାଇଁ ହେଉ, ତାଙ୍କ ଚିଠିର ନିର୍ଦ୍ଦେଶ ଗୁଡ଼ିକ ଏତେ ପ୍ରାଞ୍ଜଳ ଓ ସ୍ପଷ୍ଟ ଯେ, ସେଠି ସନ୍ଦେହ ବା ପ୍ରଶ୍ନ କରିବାର ଅବକାଶ ହିଁ ଆଉ ନ ଥାଏ । ଯେତେବେଳେ ଆଖିକୁ ଠିକ୍ ଦେଖାଯାଉ ନାହିଁ, ହାତ ଠିକ୍ ଲେଖିପାରୁ ନାହିଁ, ଅକ୍ଷର ଗୁଡ଼ିକ ଅସ୍ପଷ୍ଟ ହୋଇ ଯାଉଛନ୍ତି, ସେତେବେଳେ ବି ନିର୍ଦ୍ଦିଷ୍ଟ ତଥ୍ୟ ସମ୍ପର୍କୀୟ ବିବରଣୀର ପ୍ରାଞ୍ଜଳତା ଲକ୍ଷ୍ୟ କରିବାର କଥା । ତାଙ୍କ ଭାଷାରେ,'ଗବେଷଣା ଚିଠି ଲେଖିବାର କୌଶଳ ମଧ ଶିକ୍ଷା ଦିଏ ।'

ଡ଼କ୍ଟର ସାମନ୍ତରାୟଙ୍କ ଗୋଟିଏ ବଡ଼ ବିଶେଷତ୍ୱ ହେଲା, ସେ ନିଜ ସମ୍ପର୍କରେ, ନିଜ ପାରିବାରିକ ଜଞ୍ଜାଳ ଓ ଦୁଃଖ କିମ୍ବା ଆର୍ଥିକ ଦୁରାବସ୍ଥା ସମ୍ପର୍କରେ ଅନ୍ୟମାନଙ୍କୁ ବହୁ କମ୍ କଥା କହନ୍ତି । ଏଣୁ ଏହି ଖ୍ୟାତନାମା ଗବେଷକଟିର ନେପଥ୍ୟରେ 'ଗୋଟାଏ ବିରାଟ ପାରିବାରିକ ଜଞ୍ଜାଳର ବୋଝକୁ ଗଧଙ୍କ ପରି ବୋହି ନେଉଥିବା', ଜୀବନରେ ଆସୁଥିବା ସମସ୍ତ ଦୁଃଖର ଢ଼େଉକୁ ଦୀର୍ଘ ୬୫ ବର୍ଷ 'ଧୈର୍ଯ୍ୟ ଧରି ଗୋଡ଼କୁ ତଳକୁ ଚାପି ରଖି ଓ ମୁଣ୍ଡ ନୁଆଁଇ ଦେଇ' ଅତିକ୍ରମ କରି ଯାଉଥିବା, କୌଣସି ଦୁଃଖ ଓ ଅବିଚାରରେ ଭାଙ୍ଗି ନପଡ଼ି ଛିନ୍ନପ୍ରଜ୍ଞ ପରି ଦୁନିଆରେ ବଞ୍ଚି ରହିବାର ଅଧିକାର' ସାବ୍ୟସ୍ତ କରିବା ପାଇଁ କଠୋର ପରିଶ୍ରମ ମଧ୍ୟରେ ନିଜକୁ ହଜାଇ ଦେଇଥିବା, ଗୀତାର ବାଣୀ 'କର୍ମଣ୍ୟେବାଧିକାରସ୍ତେ ମା ଫଳେଷୁ କଦାଚନ' ଉପରେ ବିଶ୍ୱାସ ରଖି ସମସ୍ତ କର୍ମଫଳକୁ ଭଗବାନଙ୍କ ଉପରେ ନ୍ୟସ୍ତ କରିଦେଇ 'ଏକ ବିରାଟ ଅଭିଶାପ'କୁ ମୁଣ୍ଡେଇ ଥିବାପରି 'ଯମ-ଯନ୍ତଣା-ଦାୟକ' ପରିଶ୍ରମ କରୁଥିବା, ନିର୍ଦ୍ଦିଷ୍ଟ ବୟସ ସୀମାର ତିନିବର୍ଷ ପୂର୍ବରୁ ଚାକିରୀରୁ ଅବସର ଗ୍ରହଣ କରିବା ପାଇଁ ବାଧ ହୋଇ (ସାର୍ଟିଫକେଟ୍‌ରେ ତାଙ୍କ ଜନ୍ମ ସମ୍ବତ୍ସର ୧୯୧୮ ଥିଲେ ସୁଦ୍ଧା ସେ ପ୍ରକୃତରେ ୧୯୧୬ ମସିହାରେ ଜନ୍ମ ଗ୍ରହଣ କରିଥିଲେ) ସାହିତ୍ୟକୁ ଜୀବିକା ନିର୍ବାହର ପନ୍ଥା ଭାବେ ଗ୍ରହଣ କରି ନେଉଥିବା ନଟବର ସାମନ୍ତରାୟଙ୍କୁ ଏ ଦେଶର ବହୁ କମ୍ ଲୋକ ଜାଣନ୍ତି । ସିଦ୍ଧି ଲାଭ ପାଇଁ ତାଙ୍କ ତ୍ୟାଗ ବି କମ୍ ନୁହେଁ । ଅର୍ଥାଭାବରୁ ଟାଟା ଓ ବନାରସର ରାସ୍ତାକଡ଼ ଓ ଦୋକାନ ବାରଣ୍ଡାରେ ଆଶ୍ରୟ ନେଇ ଆତ୍ମହତ୍ୟା କରିବାକୁ ଯାଉଥିବା ଏବଂ ଦୈବକ୍ରମେ ଅନ୍ୟର ଆର୍ଥିକ ସହାୟତାରେ ବି.ଏ. ,ଡି.ଇଡ଼ି. ପାଶ୍ କରିଥିବା ଏଇ ଜ୍ଞାନପିପାସୁ ମଣିଷଟି ଚାକିରୀ ଜୀବନର ଆରମ୍ଭରୁ ନିଜର ଓ ପରିବାରର ପେଟକୁ କାଟି ସେତେବେଳେ

ଶହ ଶହ ଟଙ୍କାର ବହି କିଣି ଥିଲେ । ଦରମା ଟଙ୍କାରୁ ସଞ୍ଚୟ କରି ଛୁଟି ଦିନମାନଙ୍କରେ ପାଠାଗାରରୁ ସଂଗ୍ରହାଳୟ, ସଂଗ୍ରହାଳୟରୁ ରେକର୍ଡ଼ ରୁମ୍‌କୁ ଘୂରି ବୁଲୁଥିଲେ, ଭୁବନେଶ୍ୱର ଘର ଛାଡ଼ିଲେ ଗବେଷଣା ବ୍ୟାହତ ହେବ.ବୋଲି ବିନା ସାକ୍ଷାତକାରରେ ଅଯାଚିତ ଭାବେ ଛମାସରେ ପ୍ରଫେସର ହେବାର ପ୍ରତିଶ୍ରୁତି ସହିତ ପାଇଥିବା ବ୍ରହ୍ମପୁର ବିଶ୍ୱ ବିଦ୍ୟାଳୟର ପ୍ରାଧ୍ୟାପକ ପଦବୀକୁ ପ୍ରତ୍ୟାଖ୍ୟାନ କରିଥିଲେ, ବିଭିନ୍ନ ବିଶ୍ୱ ବିଦ୍ୟାଳୟରୁ ଆସୁଥିବା ପ୍ରଶ୍ନକର୍ତ୍ତା, ପରୀକ୍ଷକ ପ୍ରଭୃତି ନିଯୁକ୍ତିକୁ ନିର୍ଲୋଭ ଭାବେ ପରିତ୍ୟାଗ କରିଥିଲେ । ବ୍ରଜନାଥ ବଡ଼ଜେନାଙ୍କ ପରି 'ଯେତେବେଳେ ଅଭାବ ଅନଟନର ଉତ୍କଟ ଉତ୍‌ପୀଡ଼ନରେ କବି (ଲେଖକ)- ଜୀବନ ଶତଧା ଜୀର୍ଣ୍ଣ ବିଦୀର୍ଣ୍ଣ, ଅତି ଆକସ୍ମିକ ଭାବରେ ସେଇ ସମୟରେ କବି-ଚିତ୍ତରେ ହୁଏ ପ୍ରତିଭା ଦ୍ୟୋତକ ସୃଷ୍ଟି-ଶକ୍ତିର ଅପ୍ରତ୍ୟାଶିତ ପରିପ୍ରକାଶ ।' (ବଡ଼ଜେନା: ପୃ.୧୯୩) ଏଇ ସୃଷ୍ଟି ଶକ୍ତିର ବିନିଯୋଗ କରିବା ଭିତରେ ହିଁ ସେ ସବୁ ଦୁଃଖ ଓ ଅବିଚାରକୁ ଭୁଲିବା ପାଇଁ ଆଜୀବନ ଚେଷ୍ଟା କରିଛନ୍ତି । ତା ୧୫.୧୦.୭୪ର ଗୋଟିଏ ଚିଠିରେ ଥିବା ସାଧକ-ଜୀବନର ଏ କରୁଣ ସ୍ୱର ଶୁଣନ୍ତୁ - 'ମୁଁ ଏ ବିଷୟରେ ଏତେ ବୀତଶ୍ରଦ୍ଧ ହୋଇ ଯାଇଥିଲି ଯେ ତା' (ୟୁ.ଜି.ସି. ଫେଲୋସିପ୍) ମୋ ମନରେ କୌଣସି ଆନନ୍ଦ ଦେଇପାରି ନଥିଲା । ଏହା ପାଇବାରେ ହୁଏତ ଆସନ୍ତା ତିନିବର୍ଷ ଆର୍ଥିକ ଅନଟନରୁ କେତେକ ପରିମାଣରେ ମୁକ୍ତ ହେବି । କିନ୍ତୁ ଗଲା ୧୦ ମାସ ହେଲା ମୋର ଯାହା ଅଭିଜ୍ଞତା ହେଲା ସେଥିରୁ ବୁଝିଛି ଏ ନିଯୁକ୍ତି ମୋ ପକ୍ଷରେ ମୋ ମନରେ ଏକ ବୋଝ ହୋଇ ରହିଲା । ତେବେ ଏତିକି ସାନ୍ତ୍ୱନା ଯେ ଯେଉଁମାନେ ମୋତେ ଏଠାରେ ଅନାବୃତ କରି ରଖିଥିଲେ, ସେମାନେ ଯେ ମୋ ପ୍ରତି କଠୋର ଅବିଚାର କରିଥିଲେ, ତାହା ହିଁ ପ୍ରମାଣିତ ହେଲା । ଏଥିରେ କାହାକୁ ଦୋଷ ଦେଇ ଲାଭ ନାହିଁ । ମୋର ଦୁର୍ଭାଗ୍ୟ ବହୁ ଦିନରୁ ଆରମ୍ଭ ହୋଇଛି, ପ୍ରାୟ ଦଶ ବର୍ଷ ହେଲା । ଏଇଟା ବି ଜୀବନର ଏକ ଅନୁଭୂତି । ଦେହ ଓ ମନରେ ବଳ ଥିଲାବେଳେ ମୁଁ ଏଥି ପ୍ରତି ଆଦୌ ଭ୍ରୂକ୍ଷେପ କରି ନ ଥିଲି । ବର୍ତ୍ତମାନ ଦିନକୁ ଦିନ ଦୁର୍ବଳତା ଅନୁଭବ କରୁଛି । ବହୁ ଦିଗରୁ ଦୁଶ୍ଚିନ୍ତା । ଭଗବାନ୍ ଜାଣନ୍ତି ଆଗକୁ କ'ଣ ଅଛି । ତେବେ ବହି ପଢ଼ା ଭିତରେ ନିଜକୁ ଭୁଲି ଯିବାକୁ ଚେଷ୍ଟା କରୁଛି । ସେଇଟା ତ ଗୋଟିଏ ମାତ୍ର ବାଟ ବଞ୍ଚିବା ପାଇଁ ।'

'ଜୀବନରେ ବହୁ ଅବିଚାର ଦେଖିଛି, ସହିଛି ମଧ୍ୟ । କିନ୍ତୁ ବର୍ତ୍ତମାନ ଏ ସବୁ ଆଉ ଦେଖିବାକୁ ମନରେ ବଳ ନାହିଁ କି ସହିବାକୁ ଦେହରେ ଶକ୍ତି ନାହିଁ । ତେଣୁ ଗୋଟିଏ ବାଟ ଅଛି ନିଜକୁ ଅଲଗା କରି ରଖିବା । ସେଥିପାଇଁ ଜୀବନର ଅବଶିଷ୍ଟ ସମୟ କେଉଁ ଆଡ଼େ ନ ଯାଇ ଏକାକୀ କଟାଇ ଦେବି ବୋଲି ସ୍ଥିର କରି ନେଇଥିଲି ।'

ନୈରାଶ୍ୟ ମଧ୍ୟରୁ ଏଇ ଯେଉଁ ବୈରାଗ୍ୟ ଜାତ ହୋଇଥିଲା, ତାହା ହିଁ ପରବର୍ତ୍ତୀ ସମୟରେ ଡଃ ସାମନ୍ତରାୟଙ୍କୁ ଯଥେଷ୍ଟ ମନୋବଳ ଓ ଅଖଣ୍ଡ ଆତ୍ମବିଶ୍ୱାସ ଯୋଗାଇ ଦେଇଛି । ସେ ଉପଲବ୍ଧ କରିଛନ୍ତି :

'ସ୍ୱକୀୟ ଶକ୍ତି ଉପରେ ଅଖଣ୍ଡ ବିଶ୍ୱାସ ରଖି ସ୍ୱାତନ୍ତ୍ର୍ୟ ଓ ମୌଳିକତାର ପ୍ରବର୍ତ୍ତନ କରିବା ହେଉଛି ସୃଷ୍ଟି-ପ୍ରତିଭାର ସ୍ୱାଭାବିକ ଧର୍ମ ।' (ବଡ଼ଜେନା: ପୃ.୬୭)

ନିଜର ଗବେଷଣାତ୍ମକ ସନ୍ଦର୍ଭ ପ୍ରସ୍ତୁତି ବେଳେ ସେ ଯେଉଁ 'ଦୁଇଟି ଆଖି' ଆହରଣ କରିଥିଲେ, ତା'ରି ଉପରେ ଅଖଣ୍ଡ ବିଶ୍ୱାସ ରଖି ସେ ଆରମ୍ଭ କରିଥିଲେ ସାହିତ୍ୟିକ

ଦୁର୍ନୀତି ବିରୋଧରେ ତାଙ୍କର ସାରସ୍ୱତ ଅଭିଯାନ । ଏ ଅଭିଯାନର ପରିଣତି ସମ୍ପର୍କରେ ଧାରଣା କରିବାକୁ ହେଲେ ତାଙ୍କ 'ରାଧାନାଥ ଓ ଚିଲିକା-କାବ୍ୟ'ର 'ମୋ ଆଖିରେ *ଚିଲିକା* ' ଓ 'ଦରବାର' ପରିଚ୍ଛେଦଟି ଅନୁଧ୍ୟାନ କରିବା ଆବଶ୍ୟକ । ତା ୩.୧.୭୫ର ଗୋଟିଏ ଚିଠିରେ ତାଙ୍କର ଏଇ ଯୋଜନାବଦ୍ଧ ଦୁଃସାହସିକ ଅଭିଯାନର ସୂଚନା ଦେଖନ୍ତୁ-

'ଆମ ଦେଶର ଅତୀତ ସାହିତ୍ୟ ଉପରେ ସମାଲୋଚନା ଗୋଟିଏ ଗତାନୁଗତିକ ଧାରାରେ ଗଡ଼ି ଚାଲିଛି । ଏଥିରେ ପୂର୍ବରୁ କ'ଣ ଭୁଲ ରହିଯାଇଛି ତାହା କେହି ଚିନ୍ତା କରୁ ନାହାନ୍ତି । ଫଳରେ ଗୁଡ଼ିଏ ଭୁଲକୁ ଆମେ ଅନୁସରଣ କରି ଚାଲିଛୁ ଓ ତା' ସଙ୍ଗେ ସଙ୍ଗେ ଆମେ ଅଧିକ ଭୁଲ ଯୋଗ କରିଦେଉଛୁ । ଏ ଭୁଲଟି ଗଡ଼ି ଚାଲିଛି ସମାଲୋଚକମାନଙ୍କ ଦୃଷ୍ଟି ଅଭାବରୁ । ମୋର, ତେଣୁ, ଲକ୍ଷ୍ୟ ହେଉଛି ଆଲୋଚନାରେ ଗୋଟିଏ ନୂତନ ଦିଗ୍‌ବଳୟ ଦେଖାଇଦେବା । ତେଣୁ ମୋର ପୂର୍ବ ଆଲୋଚକମାନଙ୍କ ଦୃଷ୍ଟି କୋଣର ପ୍ରମାଦକୁ ଦେଖାଇଦେବା ମୋ ଆଲୋଚନାର ପ୍ରଥମ ଦାବୀ ରୂପେ ଦେଖା ଦେବା ସଂପୂର୍ଣ୍ଣ ସ୍ୱାଭାବିକ । କାହାକୁ ଖୁସି କରିବା କିମ୍ବା ନିନ୍ଦା କରିବାପାଇଁ ମୁଁ ଯଦି ଏପରି ପରିଶ୍ରମ କରୁଛି ବୋଲି କିଏ ଭାବେ ତା' ହେଲେ ସେଥିପାଇଁ ମୋର କହିବାର କିଛି ନାହିଁ । କିନ୍ତୁ ମୋର ବିଶ୍ୱାସ ଭଗବାନଙ୍କ କୃପାରୁ ମୁଁ ଯଦି ଆଉ ଦୁଇ ତିନି ବର୍ଷ ଏପରି କିଛି ଲେଖି ଦିଏ, ତା'ହେଲେ ମୋ ଲେଖାର ପ୍ରଭାବଟି କ'ଣ ତାହା ଦେଖିବାକୁ ପାଇବ । ଏ ବିଷୟରେ ମୁଁ ଏକ ବିଧିବଦ୍ଧ ଯୋଜନା ଅନୁସାରେ କାମ କରୁଛି ।'

ଏଇ ବିଧିବଦ୍ଧ ଯୋଜନା ଅନୁଯାୟୀ ସେ କେବଳ ଦୁଇ ତିନି ବର୍ଷ ନୁହେଁ, ଦୀର୍ଘ ପଚିଶି ବର୍ଷ ଧରି କାମ କରି ଚାଲିଛନ୍ତି । ଆର୍ଥିକ ଦୁଃସ୍ଥିତି, ପେଟ ବେମାରୀ, ହାତବିନ୍ଧା, ଦୃଷ୍ଟି ଶକ୍ତିର ଶିଥିଳତା, ଗୋଡ଼ ଭଙ୍ଗା, ଚଳତ୍‌ଶକ୍ତି ହୀନତା, କନ୍ୟାର ମୃତ୍ୟୁ କେହି ଆଉ ତାଙ୍କ ପଥରେ ଅନ୍ତରାୟ ସୃଷ୍ଟି କରି ପାରିନାହାନ୍ତି । ପୁରସ୍କାର ତାଙ୍କୁ ପ୍ରଲୋଭିତ କରି ପାରି ନାହିଁ । ଅହଙ୍କାରୀ, ଅନୁଦାର, ଅସହିଷ୍ଣୁ ଇତ୍ୟାଦି ଦୁର୍ନାମ ତାଙ୍କୁ ଦିଗ୍‌ଭ୍ରାନ୍ତ କରି ନାହିଁ । ତାଙ୍କ ଏକାନ୍ତ କୋଠରୀ ମଧ୍ୟରେ ସେ ଜ୍ଞାନ ସାଧନାରତ ତପସ୍ୱୀଟିଏ - ସମ୍ବଳ ଖଣ୍ଡିଏ ବାଡ଼ି, ଦୁଇ ତିନୋଟି ଯବକାଚ, କିଛି କାଗଜ, କଲମ ଏବଂ ଚୁକିଦିଆ ପୁସ୍ତକସ୍ତୂପ ।

ମିଥ୍ୟାକୁ ସତ୍ୟରୂପେ, ଫିକ୍‌ସନ୍‌କୁ ଫେକ୍ଟ ରୂପେ, ବିଶ୍ୱାସକୁ ରିଜନ୍ ରୂପେ ପ୍ରତିଷ୍ଠା କରିବା ପାଇଁ ଚେଷ୍ଟା କରୁଥିବା ସମାଲୋଚକଙ୍କ ବିରୋଧରେ କେବଳ ସ୍ୱର ଉତ୍ତୋଳନ କରିବା ନୁହେଁ; ପ୍ରାମାଣିକ ତଥ୍ୟ ସହାୟତାରେ ସତ୍ୟ ପ୍ରତିଷ୍ଠା କରିବା ଥିଲା ତାଙ୍କର ଏକମାତ୍ର ଲକ୍ଷ୍ୟ । ଯେଉଁମାନେ ମନ ଗଢ଼ା ତଥ୍ୟ ଏବଂ ପଲ୍ଲବଗ୍ରାହୀ-ପାଣ୍ଡିତ୍ୟ ସାହାଯ୍ୟରେ ତାଙ୍କ ମତର ଖଣ୍ଡନ କରିବା ପାଇଁ ଚେଷ୍ଟା କରୁଥିଲେ ସେମାନଙ୍କର ପ୍ରଜ୍ଞ୍ୟାଚକ୍ଷୁ ଉନ୍ମୀଳନ ପାଇଁ ତାଙ୍କ ସମାଲୋଚନାର ଭାଷା ଥିଲା ଅତ୍ୟନ୍ତ କଠୋର । ଏ ସମ୍ପର୍କରେ ସେ ଯେ ସଚେତନ ନ ଥିଲେ, ତା'ନୁହେଁ; ବର୍ତ୍ତମାନ ପ୍ରକାଶିତ ପ୍ରବନ୍ଧ ଗୁଡ଼ିକରେ ଯେଉଁ ଭାଷା ଦେଖିବାକୁ ମିଳୁଛି, ତାହା ତାଙ୍କ ନିଜ ଭାଷାକୁ ବାରମ୍ବାର କୋହଳ କରି ଲେଖା ଯାଇଥିବା ତୃତୀୟ କିମ୍ବା ଚତୁର୍ଥ ସଂଶୋଧିତ ପ୍ରତିଲିପିର ଭାଷା । ଏଥିରୁ ପ୍ରଥମେ ଲେଖାଯାଇଥିବା ପ୍ରବନ୍ଧର ଭାଷା ଅନୁମେୟ । କୌଣସି ପ୍ରବନ୍ଧକୁ ବାରମ୍ବାର ସଂଶୋଧନ କରି ତିନି ଚାରି ଥର ନ ଉତାରିବା ପର୍ଯ୍ୟନ୍ତ ତାକୁ ପତ୍ରିକା ବା ପ୍ରେସକୁ ପଠାଇବା ତାଙ୍କ ସ୍ୱଭାବ ବିରୁଦ୍ଧ ।

ତେଣୁ ସେ ବରାଦୀ ଲେଖା କମ୍ ଲେଖିଛନ୍ତି । ଭାଷାର କର୍କଶତା ବିଷୟରେ କିଛି ବନ୍ଧୁ ଓ ପାଠକଙ୍କ ମତାମତ ଜଣାଇବା ପରେ ତାଙ୍କ ପ୍ରତିକ୍ରିୟା ତା ୨୩.୮.୧୯୭୬ର ପତ୍ରରେ ଏପରି ଉଲ୍ଲେଖ ଅଛି;

'ଭାଷ୍ୟକାରମାନଙ୍କ ହସ୍ତରେ ଶିଶୁବେଦର ଭାଗ୍ୟ ବିପର୍ଯ୍ୟୟ' ଥରେ ଦୁଇଥର ପଢ଼ିନେବ । ସ୍ଥଳ ବିଶେଷରେ ଭାଷା ବଡ଼ କର୍କଶ ହୋଇଛି । ତେବେ ମୋଟାମୋଟି ଭାବେ କିଛି ଆପତ୍ତି ଜିନିଷ ଥିଲେ ଛାପାଖାନାକୁ ପଠାଇବା ପୂର୍ବରୁ ମୋତେ ଜଣାଇବ । କିଛି ପରିବର୍ତ୍ତନ ହୋଇ ପାରିବ ନା ନାହିଁ ।'

ଦୁର୍ନୀତି, ସାମାଜିକ, ରାଜନୈତିକ ବା ସାହିତ୍ୟିକ ଯାହା ବା ହେଉନା କାହିଁକି, ତାକୁ କଠୋର ହସ୍ତରେ ଦମନ କରିବା ଉଚିତ- ଏପରି ଏକ ବିଶ୍ୱାସ ୧୯୭୬ ବେଳକୁ ତାଙ୍କ ମନୋରାଜ୍ୟରେ ଦୃଢ଼ୀଭୂତ ହୋଇଉଠିଥିଲା । ସମାଲୋଚନା ବା ଗବେଷଣା ଯେ ସବୁବେଳେ ଅସମ୍ପୂର୍ଣ୍ଣ, ଏ ସମ୍ପର୍କରେ ସେ ସଚେତନ ଥିଲେ । ତାଙ୍କର ସମଗ୍ର ସିଦ୍ଧାନ୍ତ ଯେ ଅପରିବର୍ତ୍ତନୀୟ ନୁହେଁ, ଏହା ମଧ୍ୟରେ ଜାଣିଥିଲେ । କିନ୍ତୁ ତାଙ୍କ ଦୃଷ୍ଟିରେ ଆଲୋଚନାର ଅସମ୍ପୂର୍ଣ୍ଣତା ବା ଦୁର୍ବଳତା କ୍ଷମଣୀୟ କିନ୍ତୁ 'ମତଲବୀ' ବା ଜ୍ଞାତସାରରେ ଏକ ଅସତ୍ୟ ବା ଅର୍ଦ୍ଧସତ୍ୟକୁ ସତ୍ୟ ବୋଲି ପ୍ରତିଷ୍ଠା କରିବାର ପ୍ରଚେଷ୍ଟା ହେଉଛି ସାହିତ୍ୟିକ ଦୁର୍ନୀତି ଏବଂ ଏହା ଅକ୍ଷମଣୀୟ । କାରଣ-

'ବୈଜ୍ଞାନିକ ପ୍ରଣାଳୀରେ ସାହିତ୍ୟର ସାରସ୍ୱତ ସମ୍ପଦ ବିଶ୍ଳେଷଣ କରି ଅନ୍ୟମାନଙ୍କୁ ଯଥାର୍ଥ ମାର୍ଗ ଦେଖାଇବା ହେଉଛି ପ୍ରତ୍ୟେକ ଆଲୋଚନା ଓ ଗବେଷଣାର ଏକ ମୌଳିକ ଜାତୀୟ କର୍ତ୍ତବ୍ୟ । ପୂର୍ବ ପରିକଳ୍ପିତ ସିଦ୍ଧାନ୍ତ ପାଇଁ ଯେଉଁ ବିକୃତ, ଅବୈଜ୍ଞାନିକ ପ୍ରଣାଳୀ-ଅନୁସୃତ ଆଲୋଚନା ଦେଶରେ ଆବିର୍ଭାବ କରେ, ତାହା ଅନ୍ୟମାନଙ୍କୁ ବିପଥଗାମୀ ହେବାରେ କେବଳ ସାହାଯ୍ୟ କରିଥାଏ । ବୌଦ୍ଧିକ ଜଗତରେ ଚିନ୍ତାର ଏପରି ଅପମିଶ୍ରଣ ସାଧାରଣ ଜୀବନ ଯାତ୍ରାରେ ଦେଖା ଦେଉଥିବା ଖାଦ୍ୟ- ଅପମିଶ୍ରଣଠାରୁ ବହୁ ଗୁଣରେ ଅନିଷ୍ଟକର । ଖାଦ୍ୟ-ଅପମିଶ୍ରଣ ଦେଶର ପ୍ରଶାସନିକ ନିୟମ-କାନୁନ୍‌ରେ ନିୟନ୍ତ୍ରିତ ହୋଇପାରେ । ତା'ର ବିଷକ୍ରିୟା ସମ୍ପୂର୍ଣ୍ଣ ସାମୟିକ; ତଥାପି ଏଥିପାଇଁ ଦୋଷୀ ଅର୍ଥଦଣ୍ଡ ଦେଇପାରେ, ଜେଲଦଣ୍ଡ ମଧ୍ୟ ଭୋଗିପାରେ । କିନ୍ତୁ ବୌଦ୍ଧିକ ଅପମିଶ୍ରଣ ସମସ୍ତଙ୍କର ଅତି ଅଜ୍ଞାତରେ କାଳକ୍ରମେ ଏକ ପରମ ସତ୍ୟରେ ପରିଣତ ହୋଇଯାଇ ଯୁଗ ଯୁଗ ଧରି ଜାତିର ମାନସିକ ରାଜ୍ୟକୁ ବିକୃତ ବିକଳାଙ୍ଗ କରି ଦେଇଥାଏ ! (ଓଡ଼ିଆ ସାହିତ୍ୟରେ ସ୍ୱର ପରିବର୍ତ୍ତନ-ନିଜକଥା; ପୃ.୧୯)

ଏଥିପାଇଁ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କ ଜରୁରୀ ପରିସ୍ଥିତି ଘୋଷଣାକୁ ସେ ସମର୍ଥନ କରୁଥିଲେ । ବ୍ୟକ୍ତିଗତ ଜୀବନରେ ଜଣେ ସମାଲୋଚକ ଗୁରୁଜନ ହୁଅନ୍ତୁ କି ବନ୍ଧୁ ହୁଅନ୍ତୁ, ଛାତ୍ର ହୁଅନ୍ତୁ କି ନିକଟ ସମ୍ପର୍କୀୟ ହୁଅନ୍ତୁ, ସମାଲୋଚନା କ୍ଷେତ୍ରରେ କୂଟ ଓ କଠୋର ମନ୍ତବ୍ୟ ଦେବା ପାଇଁ ସେ କେବେ କୁଣ୍ଠା ପ୍ରକାଶ କରି ନାହାନ୍ତି । ଏଥିପାଇଁ ମଧ୍ୟ ତାଙ୍କୁ କମ୍ ମୂଲ୍ୟ ଦେବାକୁ ପଡ଼ିନି । ବିଶ୍ୱବିଦ୍ୟାଳୟ ପାଠ୍ୟକ୍ରମରେ ସହାୟକ ଗ୍ରନ୍ଥ ତାଲିକା ଦେଲାବେଳେ ତାଙ୍କ ପୁସ୍ତକ ଗୁଡ଼ିକୁ ବାଦ୍ ଦିଆଯାଇଛି, ଛାତ୍ର ଓ ଗବେଷକମାନଙ୍କୁ ତାଙ୍କ ପୁସ୍ତକ ଓ ପ୍ରବନ୍ଧ ପଢ଼ିବା ପାଇଁ ବାରଣ କରାଯାଇଛି, ପ୍ରଶ୍ନକର୍ତ୍ତା ଓ ପରୀକ୍ଷକ ନିଯୁକ୍ତି ବେଳେ ତାଙ୍କ ନାଁ

ଦେବାକୁ ଭୟ କରାଯାଇଛି, ତାଙ୍କ ନିକଟରେ ଗବେଷଣା କରିବା ପାଇଁ ନାମ ପଞ୍ଜୀକୃତ କରିଥିବା ଗବେଷକମାନଙ୍କୁ ସେଥିରୁ ନିବୃତ୍ତ ହେବା ପାଇଁ ଉପଦେଶ ଦିଆଯାଇଛି, ଇତ୍ୟାଦି ।

କିନ୍ତୁ ଯେଉଁମାନେ ତାଙ୍କ ବ୍ୟକ୍ତିଗତ ସମ୍ପର୍କରେ ଆସିଥିବେ ସେମାନେ ଏହି ସରଳ, ମିଷ୍ଟଭାଷୀ, ମେଳାପୀ, ସଦା ହାସ୍ୟମୁଖର ବନ୍ଧୁ କିମ୍ବା ସ୍ନେହ ପ୍ରବଣ, ଶୁଭାକାଙ୍‌କ୍ଷୀ, ଛାତ୍ରବତ୍ସଳ ଶିକ୍ଷକଟିର ପରିଚୟ ନିଶ୍ଚୟ ପାଇଥିବେ । ତାଙ୍କ 'ବାଣୀଭବନ'ରେ ପ୍ରବେଶ କଲେ ଭୁରିଭୋଜନ ସହିତ ନିଶ୍ଚିତ ଭାବେ କିଛି ମାନସିକ ଖାଦ୍ୟ ମିଳିବ - ସାହିତ୍ୟ, ସମାଲୋଚନାତ୍ମକ ପ୍ରବନ୍ଧ ପ୍ରସ୍ତୁତି, ସ୍ୱାସ୍ଥ୍ୟରକ୍ଷା, ବ୍ୟବସାୟ ହିସାବପତ୍ର ରକ୍ଷା ଯାହା ହେଉନା କାହିଁକି କୋଠରୀରୁ ବାରଣ୍ଡା, ବାରଣ୍ଡାରୁ ଗେଟ୍, ଗେଟ୍‌ରୁ ରାସ୍ତା, ରାସ୍ତାରୁ ଛକ ବା ପୋଲ ପର୍ଯ୍ୟନ୍ତ କଥାର ସୁଅ ଛୁଟି ଚାଲିଥିବ - ନିରର୍ଥକ ନୁହେଁ, ସାର୍ଥକ; 'ମୋ ଅନୁଭୂତିରୁ କିଛି ଶିଖି ଯା' ।

ଚିଠି ଗୁଡ଼ିକ ଭିତରୁ ଡଃ ସାମନ୍ତରାୟଙ୍କ ବ୍ୟକ୍ତିତ୍ୱର ଅନ୍ୟ ଦୁଇଟି ଦିଗକୁ ଲକ୍ଷ୍ୟ କରାଯାଇ ପାରିବ । ସେ ଥିଲେ ନିଷ୍ଠୁର ଭାବେ ହିସାବୀ ଏବଂ ପ୍ରଚଣ୍ଡ ଭାବେ ସ୍ୱାଭିମାନୀ ନୁହେଁ ଅଭିମାନୀ । ଗଣିତର ଛାତ୍ର ଓ ଏବଂ ଶିକ୍ଷକ ଥିବା ଯୋଗୁଁ ସେ ହିସାବ କିତାବ ସମ୍ପର୍କରେ ଯେ ଏତେ ସଚେତନ ଥିଲେ, ତାହା ନୁହେଁ, ଜୀବନର ବାସ୍ତବ ଅନୁଭୂତି ହିଁ ତାଙ୍କୁ ଏହା ଶିକ୍ଷା ଦେଇ ଥାଏ । ହିସାବୀ ହୋଇ ନଥିଲେ ନିମ୍ନ ମଧ୍ୟବିତ୍ତ ପରିବାରରୁ ଆସି ରିକ୍ତ ହସ୍ତରେ ସାଂସାରିକ ଜୀବନ ଆରମ୍ଭ କରିଥିବା ବ୍ୟକ୍ତିଟିଏ ଅସଦ୍ ଉପାୟରେ ପଇସାଟିଏ ଉପାର୍ଜ୍ଜନ ନ କରି ଏତେ ବଡ଼ ପରିବାରର ଦାୟିତ୍ୱ ତୁଲାଇ ପାରିବା ସମ୍ଭବ ହୋଇ ନଥାନ୍ତା । ବ୍ରହ୍ମପୁରରେ ପୁସ୍ତକ ଛାପା ଚାଲିଥିବା ବେଳେ ପ୍ରାୟ ପ୍ରତ୍ୟେକଟି ଚିଠିରୁ ତାଙ୍କର ଏହି ହିସାବ ମନୋବୃତ୍ତିର ପରିଚୟ ମିଳିଥାଏ । ଏଠାରେ ଗୋଟିଏ ଚିଠିର ଉଦାହରଣ ଦିଆଯାଇପାରେ :

'ଶୁଣି ଖୁସି ହେବେ ସବୁ କମିଶନ୍ ବାଦ ଯାଇ Deposit ବହି ବାବଦରେ ମୋତେ ଏବର୍ଷ ମିଳିବ ଅନ୍ତତଃ ପାଞ୍ଚହଜାର । ଏ ଟଙ୍କା ଅନ୍ତତଃ ଦଶହରା ପୂର୍ବରୁ ମିଳିବ । ତା' ବ୍ୟତୀତ ମୋ ହାତ ବିକ୍ରୀ ଅନ୍ତତଃ ଏକ ହଜାର ଟଙ୍କା । ଚାକିରୀ ନଥିଲେ ବହି ବାବଦରେ ମୁଁ କିଛି ରୋଜଗାର କରିବି- ପ୍ରଥମେ ଏପରି ଯେଉଁ କଳ୍ପନା କରିଥିଲି ଏହା ହିଁ ତା'ର ଏକ ପରିଣତି । x x x x ମୁଣ୍ଡ ଖେଳାଇଲେ ଲୋକ ମାଟିକୁ କିପରି ସୁନା କରେ ମୋ ବହିଛାପା ତା'ର ଏକ ନିଦର୍ଶନ ।' (୨୦.୪.୬୭)

ଏହା ବ୍ୟତୀତ ଅଭିମାନର ସ୍ୱର ତାଙ୍କ ଚିଠି ଗୁଡ଼ିକରେ ଶୁଣିବା ମଧ୍ୟ ଦୁର୍ଲଭ ନୁହେଁ । ଭୁବନେଶ୍ୱର ଯାଇ ତାଙ୍କ ଘରକୁ ନଗଲେ, ଚିଠିର ଉତ୍ତର ନ ଦେଲେ ସେ ଅଭିମାନ କରୁଥିଲେ । ଏପରି ଅଭିମାନ କେବଳ ମୋ ଉପରେ ନୁହେଁ, ମୋ ପରି ଅନ୍ତରଙ୍ଗ ଛାତ୍ରଙ୍କ ଉପରେ । ସମ୍ପର୍କ ଯେତେ ନିବିଡ଼, ତାଙ୍କ ଅଭିମାନ ସେତେ ପ୍ରଚଣ୍ଡ । ସମୟରେ ତାଙ୍କର ଏ ଅଭିମାନଙ୍କୁ ବୁଝି ନପାରି ସମ୍ପର୍କରେ ତିକ୍ତତା ବି ସୃଷ୍ଟି ହୋଇଛି । ସମ୍ପର୍କ ବି ତୁଟି ଯାଇଛି ।

ଅଭିମାନ କରିବା ପାଇଁ, ଅଭିମାନ ଭାଙ୍ଗିବା ପାଇଁ, ଜୀବନର ଦୁଃସ୍ଥିତିରେ ସହାୟତା କରିବା ପାଇଁ, ଶାରୀରିକ ଓ ମାନସିକ ବେଦନାର ଉପଶମ ନିମିତ୍ତ ସାନ୍ତ୍ୱନାର ପ୍ରଲେପ ବୋଳିଦେବା ପାଇଁ, ସାହିତ୍ୟିକ ଆଲୋଚନା ଗବେଷଣା ନିମିତ୍ତ ପ୍ରୋତ୍ସାହନ ଏବଂ ଦିଗ୍‌ଦର୍ଶନ

ଦେବାପାଇଁ ସେ ଆଉ ନାହାନ୍ତି । ହିସାବ ସବୁ ଖାତା ପତ୍ର ଓ ଚିଠି·ପତ୍ରରେ ସାଇତା ହୋଇ ରହିଛି । ସଂଗୃହୀତ ଟିପା ଖାତା ଓ ବହି ପତ୍ର ସବୁ ମୁହଁ ମାଡ଼ି ଶୋଇଛନ୍ତି । ବହୁ ଲେଖା ଅସମ୍ପୂର୍ଣ୍ଣ ହୋଇ ପଡ଼ିରହିଛନ୍ତି, ସଂମ୍ପୂର୍ଣ୍ଣ ହେବାର ଆଉ ଆଶା ନାହିଁ । କିନ୍ତୁ ଯାହା ପ୍ରକାଶ ପାଇଛି, ତାହା ଯେ ଓଡ଼ିଶାରେ ସାହିତ୍ୟ ସମାଲୋଚନାର 'ସ୍ୱର ପରିବର୍ତ୍ତନ' କରି ପାରିଛି । ଏହା ମୁକ୍ତ କଣ୍ଠରେ ଯେ କେହି ସ୍ୱୀକାର କରିବେ । 'ଶେଷ ଜୀବନରେ' ଏହା ହିଁ ତାଙ୍କୁ ଦେଇଛି ସବୁ ଦୁଃଖ, ସବୁ ଯନ୍ତ୍ରଣା ଏବଂ ସବୁ ଅବିଚାର ମଧ୍ୟରେ ପରମ ସନ୍ତୋଷ ।'

'କୋଡ଼ିଏ ବର୍ଷ ତଳେ ମୁଁ ସମାଲୋଚନାର ଯେଉଁ ଆଭିମୁଖ୍ୟ ଗ୍ରହଣ କରିଥିଲି ତା'ର ପ୍ରଭାବ ଆଜିର ପ୍ରତ୍ୟେକ ସମାଲୋଚନାରେ ପ୍ରତିଫଳିତ । ଏଇଟି ମୋ ଶେଷ ଜୀବନର ପରମ ସନ୍ତୋଷ । ପ୍ରାଚୀନ ଧର୍ମ ସାହିତ୍ୟ ମୁଁ ଯାହା ଲେଖିଛି ଓ ଯାହା ଲେଖିବାର ପ୍ରସ୍ତୁତି କ୍ଷେତ୍ରରେ ଅଛି ତାହା ପ୍ରକାଶ ପାଇଲେ ଫଳ କ'ଣ ହେବ ତାହା ତମେ ମାନେ ଦେଖିବ । ସେତେବେଳକୁ ମୁଁ ନ ଥିବି ।' (ତା ୨୦.୪.୭୬)

ଏହା ହିଁ ଜଣେ ସାରସ୍ୱତ- ସାଧକ ଜୀବନର ଚରମ ଓ ପରମ ଗୌରବ । ବିଂଶ ଶତାବ୍ଦୀର ଏହି ଅମିତ ପ୍ରଭାବଶାଳୀ ମାର୍ଗଦର୍ଶୀ ଗବେଷକଟିର 'ପରମ ସନ୍ତୋଷ' ଏକବିଂଶ ଶତାବ୍ଦୀର ଓଡ଼ିଆ ସାହିତ୍ୟ-ଗବେଷକ ମାନଙ୍କ ପାଇଁ ଅଭିଶାପ ହେଉ । ପ୍ରତ୍ୟେକ ସ୍ୱର୍ଗତ ନଟବର ସାମନ୍ତରାୟଙ୍କ ପରି ଅକ୍ଲାନ୍ତ ଓ ଅବିଶ୍ରାନ୍ତ ଅଧ୍ୟବସାୟ କରି ଶେଷ ଜୀବନରେ ନିଜ ନିଜକୁ ଜଣେ ଜଣେ 'ଅଭିଶାପ-ଗ୍ରସ୍ତ' ଜୀବ ବୋଲି ଉପଲବ୍ଧି କରି ପାରିଲେ ଓଡ଼ିଆ ସାହିତ୍ୟର ପ୍ରଭୂତ ଉନ୍ନତି ସାଧିତ ହୋଇପାରିବ ।

*ଯତିରାଜ ନିକେତନ, ୧- ଅଶୋକ ନଗର,*
*ବ୍ରହ୍ମପୁର-୭୬୦୦୦୪*

## ନଟବର ବାଣୀ

ସୃଷ୍ଟି ପରିକଳ୍ପନାର ଅଭିନବତା ଓ ବିଷୟବସ୍ତୁର ମନୋହର ସଜ୍ଜୀକରଣ, ଏ ଉଭୟ ମାଧ୍ୟମରେ କାବ୍ୟ ରୂପରେ ଯେଉଁ ବିଶିଷ୍ଟ ଚାହାଣୀଟିଏ ଫୁଟିଉଠେ ତାହା ହିଁ ହେଉଛି କାବ୍ୟର ରସ-ଘନ-ରୂପ, କାବ୍ୟର ସମଗ୍ର ସୌନ୍ଦର୍ଯ୍ୟ । ସୃଷ୍ଟି ପରିକଳ୍ପନା କାବ୍ୟ ରୂପରେ ରୂପାୟିତ ହେବା ପାଇଁ କବିର ଅପୂର୍ବ ସୃଷ୍ଟି ଶକ୍ତି ଦରକାର । ସେଇ ସୃଷ୍ଟି ଶକ୍ତି ପରିକଳ୍ପନାକୁ ସଫଳତାର ସହିତ ବିଷୟ ବିନ୍ୟାସ ମାଧ୍ୟମରେ ଫୁଟାଇ ଉଠାଇ ଯେଉଁ ବିଶିଷ୍ଟ କାବ୍ୟରସ ପରିବେଷଣ କରେ ସେଥିରେ ରସିକ ପାଠକର ଚିତ୍ତ ରସାପ୍ଲୁତ, ନିମୁଗ୍ଧ ହୋଇଯାଏ । କାବ୍ୟର ଏଇ ସମଗ୍ର-ସୌନ୍ଦର୍ଯ୍ୟ-ଅବବୋଧ ପଥରେ ବିଷୟବସ୍ତୁ ବିନ୍ୟାସର କୌଣସି ଅସଙ୍ଗତି ବା ଦୁର୍ବଳତା ରହିବା ଉଚିତ୍ ନୁହେଁ । ଏ ବିନ୍ୟାସ କୌଶଳରେ ଥିବା ପାରମ୍ପରିକ ଯୋଗସୂତ୍ର ଯେତେ ଦୃଢ଼ ଓ ଶକ୍ତିଶାଳୀ ହେବ ସେଇ ସମଗ୍ର-ସୌନ୍ଦର୍ଯ୍ୟଟି ସେତେ ପ୍ରାକୃତିକ ଭାବେ ସ୍ୱତଃ ପ୍ରକଟିତ ହୋଇ ଉଠିବ ।

*ଗଙ୍ଗାଧର ସାହିତ୍ୟ ସମୀକ୍ଷା (୧୯୭୫) ପୃ.୭୪*

# ନଟନନା-ଏକ ଶ୍ରଦ୍ଧାଞ୍ଜଳି

ଡଃ ପ୍ୟାରୀମୋହନ ସିଂ

ଆମ ପୂଜ୍ୟ ନଟନନା, ବିରାଟ ବ୍ୟକ୍ତିତ୍ୱ । ଯଥେଷ୍ଟ ଉଚ୍ଚମାନର ପ୍ରତିଭାବାନ ହୋଇ ମଧ୍ୟ ଅତ୍ୟନ୍ତ ସରଳ, ନିରୀହ ଚାଲିଚଳଣ ଓ ନିରାଡ଼ମ୍ବର । ବାହାରୁ ଏତେ ବଡ଼ ବୋଲି ଆଦୌ ଜାଣି ହୁଏ ନାହିଁ ।

ମୋର ସିଏ ବଡ଼ ସଜ୍ଞୁ । ମୋ ଠାରୁ ସେ ବୟସରେ ଅନେକ ବଡ଼ । ପ୍ରାୟ ୨୦ ବର୍ଷ ବ୍ୟବଧାନ । କିନ୍ତୁ ତାଙ୍କ କଥାବାର୍ତ୍ତା ଓ ବ୍ୟକ୍ତିତ୍ୱରେ ମୁଁ ନିଜକୁ ଅତି ଛୋଟ ମନେ କରୁଥିଲି । କଥାବାର୍ତ୍ତା ବେଳେ ଦୂରତ୍ୱ ରକ୍ଷା କରୁଥିଲି । ବିନୟୀ ହୋଇ କଥାବାର୍ତ୍ତା କରୁ, କାଳେ କିଛି ଭୁଲ ତ୍ରୁଟି ହୋଇଯିବ, ଯଦିଓ ସେ ମଧୁର ଭାଷୀ ଓ ସ୍ନେହବତ୍ସଳ ଥିଲେ ।

ସିଏ ଥିଲେ ଆମ ପରିବାରର ଗର୍ବ ଓ ଗୌରବ । ମୋ ଚାକିରୀ କାଳ ମଧ୍ୟରେ ବହୁ ସ୍ଥାନରେ ବୁଲିଛି । କେଉଁଠି କେମିତି ତାଙ୍କ କଥା ପଡ଼ିଲେ ଅଧିକାଂଶ ତାଙ୍କର ଛାତ୍ର ବୋଲି କୁହନ୍ତି ଓ ତାଙ୍କର ଛାତ୍ରବତ୍ସଳତାର ଗୁଣକୁ ବଖାଣି ଯାଆନ୍ତି । ବାରିପଦା ଜୀବନ, ଶିକ୍ଷକ ଜୀବନ, ଅଧ୍ୟାପକ ଭାବେ ବହୁ କଲେଜରେ ଅଧ୍ୟାପନା ଭିତରେ ବହୁ ପ୍ରତିଭାବାନ ଛାତ୍ର ଓ ସାହିତ୍ୟିକ ସୃଷ୍ଟି କରିଅଛନ୍ତି । ତାଙ୍କର ପ୍ରାକ୍ତନ ଛାତ୍ରମାନେ ତାଙ୍କ ଭଲପାଇବା ଓ ଦିଗ୍‌ଦର୍ଶନ ଦେବାକୁ ଭୂରି ଭୂରି ପ୍ରଶଂସା କରନ୍ତି ।

ଯେତେବେଳେ ଯେ କୌଣସି ମୂହୂର୍ତ୍ତରେ ତାଙ୍କ ଘରକୁ ଗଲେ ସେ କ'ଣ ଲେଖୁଥିବେ ବା କ'ଣ ପଢୁଥିବେ । କେବେ ବସିବା ଦେଖିନାହିଁ । ଘରସାରା ୪/୫ଟି ଆଲମାରୀରେ ବେଦଠାରୁ ଆଧୁନିକ ବହି ପର୍ଯ୍ୟନ୍ତ ସବୁ ଭର୍ତ୍ତି ହୋଇଥାଏ । ଏପରି କି ପ୍ରୌଢ଼ ଅବସ୍ଥାରେ ସୂର୍ଯ୍ୟକାଚ ଧରି ପୁରାତନ ପୋଥି ଓ ବହି ପଢ଼ିବାର ଦେଖୁଁ । ଗୋଟିଏ ଲୋକ ଏତେ ପଢ଼ିପାରେ ଓ ଏତେ ଲେଖିପାରେ ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ଫକୀରମୋହନଙ୍କ ଉପରେ ତାଙ୍କର ଗବେଷଣା, ଓଡ଼ିଆ ସାହିତ୍ୟର ଏକ ଅମୂଲ୍ୟ ସମ୍ପଦ । ବହୁ ଉଚ୍ଚକୋଟୀର ଗବେଷଣା ସାହିତ୍ୟ, ଓଡ଼ିଆ ସାହିତ୍ୟର କ୍ରମ ବିକାଶ ଇତ୍ୟାଦି ବହୁ ଅମୂଲ୍ୟ ସାହିତ୍ୟ ସେ ସୃଷ୍ଟି କରିଛନ୍ତି । ଛାତ୍ର, ଅଧ୍ୟାପକ ତଥା ଗବେଷକଙ୍କ ପାଇଁ ତାଙ୍କ ସୃଷ୍ଟି ଅମୂଲ୍ୟ ଗ୍ରନ୍ଥ ସମ୍ଭାର ।

ତାଙ୍କ ଗୋଡ଼ ଭାଙ୍ଗିଗଲା ପରେ ଆମେ ସମସ୍ତେ ତାଙ୍କୁ ବିଶ୍ରାମ ନେବା ପାଇଁ ଅନୁରୋଧ କରିଥିଲୁ । ତା' ସତ୍ତ୍ୱେ ସେ ତାଙ୍କର ଗବେଷଣା ଓ ଲେଖାରୁ ଉପଶମ ପାଉଥିଲେ । 'ଅତିବଡ଼ୀ' ସମ୍ମାନ ତାଙ୍କୁ ଯାହା ଆନନ୍ଦ ଦେଇଥିବ, ଥିବ, କିନ୍ତୁ ଆମ୍ଭେମାନେ ତା'ଠାରୁ ଅଧିକ ଆନନ୍ଦିତ ହୋଇଥିଲୁ ।

ସେ ଆମ୍ଭମାନଙ୍କୁ ଆଶୀର୍ବାଦ କରନ୍ତୁ, ଆମ୍ଭେମାନେ ଯେପରି ତାଙ୍କ ପରି ଉଦ୍ୟମୀ ହେଉ । ତାଙ୍କ ପିଲାମାନେ ସମସ୍ତେ ସାହିତ୍ୟ ସାଧନା କରନ୍ତି । ସେମାନଙ୍କୁ ସାହିତ୍ୟିକ କ୍ଷେତ୍ରରେ ତାଙ୍କ ପରି ହେବାକୁ ଆଶୀର୍ବାଦ କରନ୍ତୁ, ସେମାନେ ଯେପରି ସବୁଠି ଯଶସ୍ୱୀ ହେବେ ।

ଆମେ ସମସ୍ତେ ଭଗବାନଙ୍କଠାରେ ତାଙ୍କ ଆତ୍ମାର ସଦ୍‌ଗତି ପାଇଁ ପ୍ରାର୍ଥନା କରୁଛୁ ।

*ଅବସରପ୍ରାପ୍ତ ସଚିବ,*
*ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ*

# ପୂଜ୍ୟାସ୍ପଦ ପ୍ରଫେସର ନଟବର ସାମନ୍ତରାୟ

*ଦୀପ୍ତି ପଟ୍ଟନାୟକ*

୧୯୮୯ ମସିହା । ଅପରାହ୍ଣ ଚାରିଟା ହେବ । ଆମ ଟାକ୍ସି ଯାଇ ଅଟକିଲା ସାମନ୍ତରାପୁର ଛକର ଡାହାଣ ପଟକୁ । ବେଶ୍ ଖଣ୍ଡେ ଦୂରରେ । ମୁଁ ଟିକିଏ ଅସ୍ୱସ୍ତି ଅନୁଭବ କଲି, ଏତେ ବାଟରୁ କାହିଁକି ମୋ ସ୍ୱାମୀ ଓହ୍ଲାଇ ପଡ଼ିଲେ ବୋଲି । ଦେଖିଲି ଗୋଟିଏ ସିଧା କୋଠାଘର ସାମ୍ନାରେ ଛିଡ଼ା ହୋଇଛନ୍ତି ପ୍ରଫେସର ନଟବର ସାମନ୍ତରାୟ । ଆନନ୍ଦ ପରିବର୍ତ୍ତେ ବିସ୍ମୟରେ ଚାହିଁଛନ୍ତି । ଆମେ ପ୍ରଣାମ ବାଡ଼ିଲୁ । ସଙ୍ଗେ ସଙ୍ଗେ ସେ କହିଲେ- 'ମୁଁ ଜାଣିଥିଲି ଆଜି ତୁ ଆସିବୁ ।' ଏକଥା ଶୁଣୁ ଶୁଣୁ ଡକ୍ଟର ଅରବିନ୍ଦ ପଟ୍ଟନାୟକ ବ୍ୟସ୍ତ ହୋଇପଡ଼ି କହିଲେ- 'ଆପଣଙ୍କ ଦେହ କ'ଣ ହୋଇଛି ?'

ପୁଣି ବିସ୍ମୟ ! ସାର୍ ମତେ କହିଲେ- 'ବିନୋଦବାବୁଙ୍କର ଗୋଟିଏ ଚିଠି କାଲି ମିଳିଛି । ଆଜି ତମକୁ ମୁଁ ଆଶା କରିଥିଲି ।' 'ଆମେ ଏ ସମ୍ପର୍କରେ କିଛି ଜାଣିନୁ ।' ଖଣ୍ଡିଏ କାର୍ଡ଼ ଦେଖେଇଲେ ସାର୍ । ବାପାଙ୍କ ଅକ୍ଷର ସ୍ପଷ୍ଟ । ବିଷୟବସ୍ତୁ ଥିଲା- ସାହିତ୍ୟ ଏକାଡେମୀର ଏକ ଦରଦୀ ମନୋଗ୍ରାଫ- ଓଡ଼ିଆ ସାହିତ୍ୟକୁ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦାନ ଉପରେ । ସଦ୍ୟ ପ୍ରକାଶିତ ଗ୍ରନ୍ଥରେ ଚମତ୍କାର ବିଶ୍ଳେଷଣ - ମୋ ବାପା ବିନୋଦ କାନୁନ୍‌ଗୋ ଆର୍ତ୍ତବଲ୍ଲଭଙ୍କ ଏକମାତ୍ର ଭଉଣୀ ପୀରଙ୍କର ପୁତ୍ର । ଜଣେ ବ୍ୟକ୍ତି ସମ୍ପର୍କରେ ଲେଖିଲେ, ତାଙ୍କର ଜୀବନୀ ଓ କିଛି ତଥ୍ୟ ଦେବାକୁ ପଡ଼େ । ଯେଉଁମାନେ ଲେଖନ୍ତି ସେମାନେ ତଥ୍ୟ ସଂଗ୍ରହ କରନ୍ତି । ଯଦି ସେହି ବ୍ୟକ୍ତିଙ୍କ ଉତ୍ତରାଧିକାରୀ ଭାବରେ କେହି ତଥ୍ୟ ଦେଇଥାଆନ୍ତି ସେମାନେ ସଚେତନ ନହେଲେ ତଥ୍ୟ ଠିକ୍ ମିଳେ ନାହିଁ । ସେହିପରି ଏକ ତଥ୍ୟ ଭ୍ରମବଶତଃ ପାଇଥିଲେ ସାର୍ ନଟବର ସାମନ୍ତରାୟ ଓ ଆର୍ତ୍ତବଲ୍ଲଭ ଏକମାତ୍ର ସନ୍ତାନ ବୋଲି ସେ ଗ୍ରନ୍ଥରେ ଉଲ୍ଲେଖ କରିଥିଲେ । ଏକଥା କି ମୋ ବାପା ସହିପାରନ୍ତେ ! ଅତି ସଶ୍ରଦ୍ଧ, ସ୍ନେହପୂର୍ଣ୍ଣ ଭାବରେ ସେହି ପୋଷ୍ଟକାର୍ଡ଼ ଖଣ୍ଡିକରେ ତାଙ୍କ ମାମୁଁ ଆର୍ତ୍ତବଲ୍ଲଭଙ୍କ ସମ୍ପର୍କରେ ସୂଚାଇ ଦେଇଥିଲେ ।

ପୂର୍ଣ୍ଣଚନ୍ଦ୍ରରେ ବାଦଲ ଢଙ୍କା ହେବା ପରି ମୁଖମଣ୍ଡଳଟି ଉଜ୍ଜ୍ୱଳ ହୋଇଉଠିଲା- ଯେତେବେଳେ ସାର୍ ଜାଣିଲେ ବାପା ଆମକୁ କିଛି ନକହି ତାଙ୍କୁ ଏକଥା ଜଣାଇଛନ୍ତି ଓ ଆମେ ତାଙ୍କୁ ଦେଖିବାକୁ ସଙ୍ଖୋଳିବାକୁ ଏମିତି ଆସିଛୁ । କି ଆବେଗ ! ମତେ କ'ଣ ଖାଇବାକୁ ଦେବେ । ମୁଁ ତାଙ୍କର ବୋହୂ ପରି । ପ୍ରିୟତମ ଛାତ୍ରଙ୍କ ଧର୍ମପତ୍ନୀ । ଘରେ କୁଣିଆ ନୁହେଁ । ଦେଖିଲି ଘର ଭିତରକୁ ପଶିଗଲା ବେଳକୁ ଡାହାଣ ପଟେ ଗୋଟିଏ ବଡ଼ ହଲ୍ ।

ସେ ହଲ୍‌ରେ ଧାଡ଼ି ଧାଡ଼ି ଆଲମିରା । କେହି ବଡ଼ ନୁହେଁ । ସମାନ ଭାବରେ ଗୋଟିଏ ଗୋଟିଏ ବିଭାଗର ବହି ଗୋଟିଏ ଗୋଟିଏ ଆଲମିରାରେ ରଖା ଯାଇଥାଏ । ବେଶ୍ ଲମ୍ବା ଟେବୁଲ୍ ଓ ସିଧା ଚୌକି ପଡ଼ିଥାଏ । ରହିବା ବଖରା ଗୁଡ଼ିକ ମଧ୍ୟ ଚାରିକୋଣିଆ ପ୍ରଶସ୍ତ । ଅଗଣାରେ କେତେ କ'ଣ ଫଳ । ଡାଳିମ୍ବ ଥିଲା ବୋଧହୁଏ । ସାର୍ ଟିକିଏ ହସିଦେଲେ । କହିଲେ, ''ଏ ଘର ପିଲାଙ୍କର ମନକୁ ଆସୁନାହିଁ । ଆଜିକାଲି କେତେ ସୁନ୍ଦର ଡ଼ିଜାଇନ୍‌ର ଘର ସବୁ ହେଲାଣି ।'' ପାଖରେ ବସି ପଡ଼ିଲେ ମାଡାମ୍ । କ'ଣ କେତେ ତରକାରୀ, ଭଜା, ବାଡ଼ି ଭାତ ଖାଇବାକୁ ଦେଲେ । ଆମେ ରହିଲୁ ବେଶ୍ ସମୟ । ସେତକ ସମୟ ଓଡ଼ିଆ ଭାଷା, ସାହିତ୍ୟ କଥା ଓ ପରବର୍ତ୍ତୀ ମଣିଷଙ୍କ ଦାୟିତ୍ୱବୋଧ କଥା ହେଉଥିଲୁ ।

ଆଜି ମନେ ପଡୁଛି । ମୁମ୍ବାଇରେ ତାଙ୍କ ଜ୍ୟେଷ୍ଠାକନ୍ୟା ଡାକ୍ତର ସରଯୂ ମହାପାତ୍ରଙ୍କ ଅନୁରୋଧ । ''ବାପାଙ୍କ ଉପରେ ଆପଣ ବି ଲେଖିବେ । ସୁଲେଖା ଏହା ସମ୍ପାଦନା କରୁଛି ।''

ଏବେ ମୋର ଛାତ୍ର ବତ୍ସଳ ସାର୍‌ଙ୍କର ଗୋଟିଏ ସ୍ମୃତି ମନେ ପଡୁଛି । ରାଜମହଲ ଛକ ଉପରେ ଆମ ରିକ୍ସା ଉଠୁଥାଏ । ୧୯୭୨ ମସିହାର କଥା । ରିକ୍ସାରୁ ଛାତ୍ରଜଣଙ୍କ ଅଧ୍ୟାପକଙ୍କୁ ଦେଖି ଓହ୍ଲାଇ ପଡ଼ିଲେ ଓ ଆଖି ପିଛୁଳାକେ ଗୋଟାଏ ଆପଲ୍ ହାତରେ ଦେଲେ । ମତେ ଏ ଦୃଶ୍ୟ ବଡ଼ ଆନନ୍ଦ ଦେଉଥାଏ, କି ମନଖୋଲା ହସ ସାର୍‌ଙ୍କର । ''ବାୟାଟା.. ବୋହୂଟା ଅଛି...।'' ମୁଁ ସେଦିନ ଅଭିଭୂତ ହୋଇ ପଡ଼ିଲି । ଓଡ଼ିଶା ପ୍ରଦେଶର ଯେତେ ଜଣାଶୁଣା ମଣିଷଙ୍କୁ ମୁଁ ସାଧାରଣତଃ ଦାଦା ଡାକେ । ସେମାନଙ୍କ ଭିତରୁ ମତେ ଅନେକ ଝିଅ ବୋଲି କହନ୍ତି । ଆଜି କ'ଣ ଶୁଣିଲି... ''ବୋହୂ ।''

ମୋ ଶ୍ୱଶୁରଙ୍କ ଦେହାନ୍ତର ୧୦ ବର୍ଷ ପରେ ମୁଁ ଓଡ଼ିଶା ଆସିଥିଲି । କେହି ମତେ ବୋହୂ ବୋଲି ସମ୍ବୋଧନ କରିନଥିଲେ । ପୁଣି ସେହି ଶେଷ ଦେଖାରେ ବୋହୂ ଆସିଛି କ'ଣ ଖାଇବ ? ସେଦିନ ପୁଣି କହି ଉଠିଥିଲେ । ଆଜି ସବୁ ସ୍ମୃତି ପାଲଟିଛି । ଭାଷା, ସାହିତ୍ୟ ଓ ସଂସ୍କୃତି ପ୍ରତିଷ୍ଠାନ- 'ଇଲାକ' ବର୍ତ୍ତମାନ ଶିଶୁ ଅବସ୍ଥାରେ । ସାର୍‌ଙ୍କୁ ଡ଼ାକିବାକୁ ଯାଇଥିଲି ୧୯୯୫ ମହିହା ଜୁନ୍ ମାସରେ । ସରକାରୀ ଭାଷା ଓଡ଼ିଆ ଉପରେ କହିବା ପାଇଁ । ସାର୍ ହସି ଦେଇଥିଲେ ପୁଣି ସେହି ମନଖୋଲା ହସ । କହିଥିଲେ- 'ମୋର ଆଶୀର୍ବାଦ ପୂରା ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ଉତ୍‌ଥାନ ପାଇଁ ରହିଛି । Go ahead... Go ahead.

ଆଜି ସେହି ମହନୀୟ, ପୂଜାସ୍ପଦ ଶ୍ୱଶୁର ପ୍ରତିମ ଗୁରୁଦେବଙ୍କୁ ବିନମ୍ର ପ୍ରଣତି ବାଢୁଛି ଏହି ଭାଷା, ସାହିତ୍ୟ ଓ ସଂସ୍କୃତି ପ୍ରତିଷ୍ଠାନ- 'ଇଲାକ' ତରଫରୁ । ତାଙ୍କୁ ହଜାଇ ଓଡ଼ିଆ ଭାଷା, ସାହିତ୍ୟ ଏକ ମାଇଲଖୁଣ୍ଟକୁ ଦୁର୍ବଳ କରିଛି ।

*ଭାରପ୍ରାପ୍ତ ସହ ସମ୍ପାଦିକା,*
*'ଇଲାକ', ଭୁବନେଶ୍ୱର*

# ଆହେ ନଟବର

*ଡଃ. ପ୍ରସନ୍ନ ପାଟଶାଣୀ*

ଅକ୍ଷର ଭିତରେ ବାସ କରନ୍ତି ଦେବତା
ସେଇ ଅକ୍ଷର ଈଶ୍ୱରଙ୍କ ଘର
ସେ ଘର ଭିତରକୁ କେଡ଼େବେଗି
ଚାଲିଗଲ ଆହେ ନଟବର !
କେଉଁଠି ଥିବ ଏବେ କହି ପାରିବିନି
ଯେଉଁଠି ଥାଅ ପଛେ
ମୋ' ପାଇଁ ତମ ପାଖରେ
ଜାଗା ରଖିଥିବ ଟିକେ
ହେ ଓଡ଼ିଆ ସାହିତ୍ୟର ବିନ୍ଧାଣୀ
ତମ ପାଇଁ କାଲି ବଦଳରେ
ଅଶ୍ରୁ ଢାଳେ ପାଟଶାଣୀ ।

*ଲୋକସଭା ସାଂସଦ,*
*ଭୁବନେଶ୍ୱର ।*

# ବୈଠକଖାନାର ସଂଳାପ

*ଡଃ ବନମାଳୀ ବାରିକ*

୧୯୮୦ ମସିହାରେ ମୋର ବ୍ରହ୍ମପୁରରୁ ଭୁବନେଶ୍ୱର ବଦଳି ହେଲା । ସାନ୍ତରାପୁର (ଶ୍ରୀରାମ ନଗର)ରେ ଗୋଟିଏ ଘର ଭଡ଼ାନେଇ ମୁଁ ରହିଲି । ଘରଟି 'ଆର୍କିଓଲୋଜିକାଲ ସର୍ଭେ ଅଫ୍ ଇଣ୍ଡିଆ' ଅଫିସ୍ ପଛରେ । ଦୁଇଦିନ ପରେ ଜାଣିବାକୁ ପାଇଲି- ଏଇ ପାଖରେ ରହୁଛନ୍ତି ଡଃ ନଟବର ସାମନ୍ତରାୟ । ସେତେବେଳେ ସେ ଆମ ଭଳି ତରୁଣ ଅଧ୍ୟାପକମାନଙ୍କୁ ଅଭିଭୂତ କରି ରଖିଥିଲେ । ତାଙ୍କର ସାହିତ୍ୟ ଚର୍ଚ୍ଚା ଓ ଜ୍ଞାନ ତପସ୍ୟା ଆମମାନଙ୍କର ଆଦର୍ଶ ଥିଲା । ପ୍ରବନ୍ଧ ଓ ସମାଲୋଚନା ଜଗତରେ ସେ ଥିଲେ ପ୍ରବାଦ ପୁରୁଷ ଆର୍ତ୍ତବଲ୍ଲଭ ଓ ନୀଳକଣ୍ଠଙ୍କ ପରି । ତାଙ୍କ ରଚନାରେ ତଥ୍ୟ ଓ ଯୁକ୍ତିର ଅଭୂତପୂର୍ବ ସମାହାର ଦେଖି ଆମେ ନିଜକୁ ନିଜେ ଲଜ୍ଜିତ ହେଉଥିଲୁ ।

ହଠାତ୍ ଦିନେ ମୁଁ ତାଙ୍କୁ ଭେଟିଲି । ଆଳାପ ଆଲୋଚନାରୁ ସମ୍ପର୍କ । ଗୋଟିଏ ବର୍ଷ ପରେ ସେ ଜାଗା ଛାଡ଼ି ମୁଁ ଦୁଇ ନମ୍ବର ସରକାରୀ ଘରକୁ ଆସିଲି । କିନ୍ତୁ ଅତୁଟ ସମ୍ପର୍କ । ପ୍ରାୟ କୋଡ଼ିଏ ବର୍ଷର । ସବୁବେଳେ ଆଗ ସାହିତ୍ୟ ବିଷୟରେ କଥା ପଡ଼େ । ମୋତେ କହନ୍ତି- 'ତୁ ଲେଖାଲେଖି କର । କ'ଣ ଲେଖୁଛୁ ଆଣି ଦେଖା ।' ଭୁବନେଶ୍ୱର ଆସିଲା ବେଳକୁ ମୋର ଗବେଷଣା କାର୍ଯ୍ୟ ସରିଥିଲା । ପରେ ପରେ ନିବନ୍ଧ ଲେଖାହେଲା । ଡିଗ୍ରୀ ବି ମିଳିଲା । କିନ୍ତୁ ମୁଁ ଲାଜରେ ଲେଖା ଦେଖାଇଲି ନାହିଁ କି ତାଙ୍କ କହିବା ମୁତାବକ ଲେଖାଲେଖି କରି ପାରିଲି ନାହିଁ । ସେ ମୋର ଦୁର୍ଭାଗ୍ୟ । ସେ ପାଠ ବତାଇ ଦେବାକୁ ଚାହୁଁଥିଲେ । ଓଡ଼ିଆ ସମାଲୋଚନା ସାହିତ୍ୟକୁ ମଜଭୁତ୍ କରିବାକୁ ଚାହୁଁଥିଲେ । ନିଜ ହାତରେ କିଛି ମଣିଷ ଗଢ଼ିବାକୁ ଚାହୁଁଥିଲେ ।

ଏବେ ସେସବୁ ଭାବିଲେ ମୋତେ ଆଶ୍ଚର୍ଯ୍ୟ ଲାଗେ । କେଡେ ବଡ଼ ସାହିତ୍ୟିକ । କେତେ ପାଖରେ ଥାଇ ମୁଁ ତାଙ୍କୁ ଦେଖିଛି, କଥା ହୋଇଛି, ପ୍ରଶ୍ନ ପଚାରିଛି । ସେ ଆମର ଆଖି ଖୋଲି ଦେଇଥିଲେ । ଆବେଗପ୍ରବଣ ଭାବନାକୁ ଭାଙ୍ଗିଦେଇ ସତ୍ୟ ଓ କଠୋର ପଥରେ ଚାଲିବାକୁ ଶିଖାଇଥିଲେ । ଅନେକ ସଂଧ୍ୟା/ଅନେକ ସକାଳ ତାଙ୍କ ଘରେ କଟିଛି । ଚର୍ଚ୍ଚାର ବିଷୟବସ୍ତୁ ଅନେକ । ଖିଅଟିଏ ଧରାଇ ଦେଲେ ଆଉ କଥା ସରେନାହିଁ । ଘଣ୍ଟାଏ, ଦୁଇଘଣ୍ଟା, ତିନିଘଣ୍ଟା- କେମିତି ସରିଯାଏ ଜଣାପଡ଼େ ନାହିଁ । ଅନେକ ପ୍ରସଙ୍ଗ ପଡ଼େ । କାହାଣୀର ପେଡ଼ି ଖୋଲିଯାଏ । ଘର କଥା, ଜମିକିଣା କଥା, ଖାଇବା, ସଉକି କଥା, ସାଇକେଲରେ ବୁଲିବା କଥା, ଗାଁ କଥା, ବନାରସ କଥା, ଚାକିରୀ ପାଇବା କଥା, ଗବେଷଣା କଥା, ପରମାନନ୍ଦ ଆଚାର୍ଯ୍ୟଙ୍କ କଥା, ଓଡ଼ିଆ ପ୍ରଫେସରମାନଙ୍କ କଥା, ବିଭିନ୍ନ ବିଶ୍ୱବିଦ୍ୟାଳୟ କଥା, ସାହିତ୍ୟ ଏକାଡେମୀ କଥା, ସାହିତ୍ୟର ରଥୀ ମହାରଥୀମାନଙ୍କ କଥା, ନିକଟରେ ବାହାରୁଥିବା ପ୍ରବନ୍ଧ ଓ ଆଲୋଚନା କଥା ।

ତାଙ୍କର କେଉଁ କଥା କହିବି । ତାଙ୍କୁ ଦେଖି ଏକଦା ନିଜେ ଅପାଠୁଆ ବୋଲି ଲାଜରେ ସଙ୍କୁଚିତ ହୋଇ ରହୁଥିଲି । ସେ କିନ୍ତୁ ଆନ୍ତରିକତାରେ, ଆତ୍ମୀୟତାରେ ଆପଣାର କରି ନେଇଥିଲେ । କଥା ପ୍ରସଙ୍ଗରେ ଆମ ସାହିତ୍ୟ ଚର୍ଚ୍ଚାର ଅନେକ ଗୁମର କଥା ଜଣାପଡୁଥିଲା । ଆମେ ଯାହାଙ୍କୁ ବଡପଣ୍ଡା ବୋଲି ଭାବୁ ସେମାନେ ସତରେ କେତେ କପଟୀ, ଚତୁର ଓ ଧୂର୍ତ୍ତ ! କାମ ଥିଲାବେଳେ କେତେ ସୁନ୍ଦର କଥା କୁହନ୍ତି, ପାଦ ଛୁଇଁ ତଳକୁ ନଇଁ ପଡ଼ନ୍ତି, କାମ ସରିଗଲେ ଆଉ ଦେଖା ନଥାଏ । ସେ ଅନେକଙ୍କୁ ସାହାଯ୍ୟ କରିଛନ୍ତି । ଅନେକ କିନ୍ତୁ ତାଙ୍କୁ ଠକିଛନ୍ତି । ସବୁ କଥା ତ ଲେଖା ଯାଇପାରିବ ନାହିଁ । ବ୍ୟକ୍ତିଗତ ଆଳାପରୁ କେଉଁଠି ପ୍ରମାଣରୂପେ ଠିଆ କରାଯାଇ ପାରିବନାହିଁ ।

ପ୍ରଥମେ ପ୍ରଥମେ ଦେଖାରେ ସେ ମୋତେ ତିନୋଟି ବିଷୟରେ ତାଗିଦ୍ କରି ଦେଇଥିଲେ । ୧- ବାବୁରେ କଲେଜ ପଇସା ହାତରେ ଧରିବୁ ନାହିଁ । ସେଥିପାଇଁ ଅନେକ ଲୋକ ଅଛନ୍ତି । ଏବେ ତୋ ଉପରେ ସିନିୟର ଲୋକ ଥିବେ । ଆଉ ତୁ ଯେତେବେଳେ ସିନିୟର ହେବୁ ପଇସା ଆଣିବା ବା ଖର୍ଚ୍ଚ କରିବା ପାଇଁ ଅନ୍ୟ ଜଣକୁ 'ଅଥରାଇଜ୍' କରିଦେବୁ । ଝଂଝଟ ନଥିବ । ତୁ ଲେଖାପଢ଼ାରେ ମନ ଦେଇପାରିବୁ । ୨- କଲେଜର ଅଧ୍ୟାପକ- ତା'ର ଗୋଟିଏ ସ୍ୱତନ୍ତ୍ର ସମ୍ମାନ । ଛାତ୍ରୀ ବା ଅଧ୍ୟାପିକାଙ୍କ ସହ ଆଳାପ କଲାବେଳେ, ପାଠଚର୍ଚ୍ଚା କଲାବେଳେ, ଭୋଜିଭାତ କଲାବେଳେ ଲୋକେ ଯେପରି ତୋତେ ସନ୍ଦେହୀ ଦୃଷ୍ଟିରେ ନ ଦେଖନ୍ତି । ୩- ବର୍ତ୍ତମାନର ଲେଖକ ବା ଜୀବିତ ଲେଖକମାନଙ୍କ ସମ୍ପର୍କରେ ଲେଖିବୁ ନାହିଁ । ତୁ ଯଦି ପ୍ରଶଂସା ନକରିବୁ ସେମାନେ ମନ ଊଣା କରିବେ । ଦରକାର ହେଲେ ସେମାନେ ତୋତେ ଅସୁବିଧାରେ ପକାଇବେ । ଯଦି ଅଯୋଗ୍ୟର ପ୍ରଶଂସା କଲୁ-ତା'ହେଲେ ସାହିତ୍ୟର ନିନ୍ଦା କଲୁ । ସମୟ ଅସମୟରେ ପ୍ରଥମ ଉପଦେଶଟି ରକ୍ଷା କରିପାରିଲି ନାହିଁ । ପଇସା ଆଣିବା ଓ କାମ ସରିବା ପରେ ହିସାବ ତୁଟାଇ ଦେବା- ଏଇ ନୀତିରେ ଆଜି ପର୍ଯ୍ୟନ୍ତ ଚାଲିଛି ।

କେତେବେଳେ ତାଙ୍କର ପ୍ରିୟ ଛାତ୍ରମାନଙ୍କ କଥା ପଡ଼େ । ଜଣେ ଛାତ୍ର ଗବେଷଣା କରିବା ପାଇଁ ତାଙ୍କ ସାହଯ୍ୟ ମାଗିଲା । ତାଙ୍କ ଅଧୀନରେ ଗବେଷଣା କରିବା ଥିଲା ଏକ ଗୌରବର କଥା । ଡଃ ସାମନ୍ତରାୟ ସାଧାରଣତଃ ଏଣ୍ଣୁତେଣ୍ଣୁ ଛାତ୍ରଙ୍କୁ ପ୍ରୋତ୍ସାହିତ କରୁନଥିଲେ । କାରଣ ଅନେକ ଲୋକ କିଛି ଗୋଟିଏ ମତଲବରେ ଥାଆନ୍ତି । କେଉଁଠି ଇଣ୍ଟରଭ୍ୟୁ ଅଛି, କେଉଁଠି କାମ ଅଛି । ତାଙ୍କର ଚିଠି ବା ପ୍ରଶଂସାପତ୍ରର ମାନେ ଥିଲା ଅଲଗା । ମାତ୍ର ପୂର୍ବୋକ୍ତ ଛାତ୍ର ଅତି ଭକ୍ତି ଓ ଆଗ୍ରହ ଦେଖାଇ ତାଙ୍କଠାରୁ କେତେକ ବହିପତ୍ର ଓ ଉପାଦାନ ସବୁ ନେଇଗଲେ । ନିଜର ନିବନ୍ଧ ରଚନାରେ ସେସବୁ ବ୍ୟବହାର କଲେ । ବିଶ୍ୱବିଦ୍ୟାଳୟରେ ଡ଼ିଲିଟ୍ ପାଇଁ ତାହା ଉପସ୍ଥାପିତ ହେଲା । ଥରେ ବାଣୀବିହାରରେ ତାଙ୍କ ସହ ଦେଖାହେଲା । ବିନମ୍ର ହୋଇ କହିଲେ- 'ଥେସିସ୍ ଦାଖଲ କରି ଦେଇଛି । ମୋ ଥେସିସ୍ କଥା ଆପଣଙ୍କୁ ଲାଗିଲା ।' ଡଃ ସାମନ୍ତରାୟ ଖୁସିରେ ସଂପୃକ୍ତ ବିଭାଗକୁ ଯାଇ ଖବର ନେଲେ । ବିଭାଗୀୟ ଲୋକ କହିଲେ- ତାଙ୍କ ଗାଇଡ଼ ତ ପ୍ରତିଦିନ ଆସି ବୁଝୁଛନ୍ତି । ସେ ପର୍ଯ୍ୟନ୍ତ ସବୁ କଥା ଲୁଚାଇ ନିଜେ ସ୍ୱାଧୀନ କାର୍ଯ୍ୟ କରୁଛନ୍ତି ବୋଲି ଧାରଣା ଦେଇଥିଲେ । ମାତ୍ର ଗାଇଡ଼୍ ନାଁ ଶୁଣି ତାଙ୍କ ଦୁଇଗାଲରେ ଦୁଇ ଚାପୁଡ଼ା ଲାଗିଲା । ପ୍ରଥମତଃ ସ୍ୱାଧୀନ

କାର୍ଯ୍ୟ କରିବାର ବାହାନା, ଦ୍ୱିତୀୟତଃ ପରମ ଶତ୍ରୁର ଶରଣ । ଏହାକୁ କ'ଣ କୁହାଯିବ- ପ୍ରତାରଣା ନା ଅପମାନ ନା ଧୂର୍ତ୍ତବୁଦ୍ଧି ?

ଆମ ବିଶ୍ୱବିଦ୍ୟାଳୟ ଚାକିରୀ ସମ୍ପର୍କରେ ତାଙ୍କର ଧାରଣା ଭିନ୍ନ ଥିଲା । ସେଠାରେ ପାଠ ପରିବର୍ତ୍ତେ ଶାଠର ଆଦର ବେଶୀ । ନିଜ ଅଙ୍ଗେନିଭା କଥା କେତେଥର କହିଛନ୍ତି । ହଠାତ୍ ୫୫ ବର୍ଷ ବୟସରେ ତାଙ୍କୁ ସରକାରୀ ଚାକିରୀରୁ ଅବସର ନେବାକୁ ପଡ଼ିଲା । ଘରକରଣା, ପିଲାମାନଙ୍କ ପାଠପଢ଼ା ଏବଂ ଆର୍ଥିକ ଅବସ୍ଥାକୁ ଚାହିଁ ଗୋଟିଏ ଚାକିରୀ ପାଇଁ ଦରଖାସ୍ତ ଦେଲେ । ନିଜ ଉପରେ ଗଭୀର ବିଶ୍ୱାସ ଥିଲା । ଡଃ ସାମନ୍ତରାୟଙ୍କୁ ଇଣ୍ଟରଭ୍ୟୁରେ ପରାସ୍ତ କରିବା ସହଜ କଥା ନଥିଲା । କିନ୍ତୁ ରାଜନୀତି ପ୍ରବୀଣମାନେ ସେମାନଙ୍କର ସ୍ୱାର୍ଥକୁ ଅଗ୍ରାଧିକାର ଦେଲେ । ଗୋପନରେ ଚକ୍ରାନ୍ତ ଚାଲିଲା । ସେ ନିଜ ପ୍ରାପ୍ୟରୁ ବଞ୍ଚିତ ହେଲେ । ଦୁଃଖ ଓ ଗ୍ଲାନିରେ ତାଙ୍କ କଲମ କିଛି ଦିନ ସ୍ଥିର ହୋଇଗଲା । ତା'ପରେ ତାଙ୍କର ଉଦାମତା ପୁଣି ଫେରି ଆସିଲା । ସାହିତ୍ୟ ସଂସ୍କୃତି ଚର୍ଚ୍ଚାରେ ନିଜକୁ ପୁଣି ହଜାଇଦେଲେ । ବିଶ୍ୱବିଦ୍ୟାଳୟର ପଣ୍ଡିତମାନଙ୍କ ମୁହଁ ଫିଟିଲାନାହିଁ । ବେଳେବେଳେ କେହି ନିଜର ଗୋଡ଼ାଣିଆମାନଙ୍କୁ ଧରି କିଛି କିଛି କହିବାକୁ ଚାହିଁଲେ । ଅନେକ ଆଶା କରିଥିଲେ ପଣ୍ଡିତଙ୍କ କଥା ରଖିଲେ ବିଶ୍ୱବିଦ୍ୟାଳୟରେ ଆସନଟିଏ ମିଳିଯିବ । ମାତ୍ର କିଛି ନମିଳିବାରୁ ପୁଣି ବଦ୍‌ହେ ଶୋଧିଲେ । ଏଣେ ଡଃ ସାମନ୍ତରାୟଙ୍କ ଜ୍ୟୋତି ଆହୁରି ଉଜ୍ଜ୍ୱଳ ହେବାକୁ ଲାଗିଲା ।

ଶିକ୍ଷା ବିଭାଗରେ ପଦୋନ୍ନତିର ଦ୍ୱାର ପ୍ରାୟ ବନ୍ଦଥିଲା । ଯେଉଁଠି ଅନର୍ସ ପାଠର ବ୍ୟବସ୍ଥା ଥାଏ- ସେଠାରେ ଜଣେ ରିଡର ଓ ଯେଉଁଠି ଏମ୍.ଏ. ଶ୍ରେଣୀ ଥାଏ ଜଣେ ପ୍ରଫେସର ଓ ଦୁଇଜଣ ରିଡର ରହୁଥିଲେ । ତାଙ୍କ ସମୟରେ ରେଭେନ୍ସାରେ କେବଳ ଓଡ଼ିଆ ଅନର୍ସ ଓ ଏମ୍.ଏ.ଶ୍ରେଣୀ ଥିଲା । ସୁତରାଂ ଜଣେ ପ୍ରଫେସର ଓ ଦୁଇଜଣ ରିଡରଙ୍କ ବ୍ୟତୀତ ଅନ୍ୟମାନେ ଅଧ୍ୟାପକ ଭାବେ ଅବସର ଗ୍ରହଣ କରୁଥିଲେ । ଶ୍ରୀ ବନମାଳୀ ପଟ୍ଟନାୟକ ଶିକ୍ଷାମନ୍ତ୍ରୀ ଥିଲାବେଳେ ତାଙ୍କ ନଜରକୁ ଏକଥା ଆସିଲା । ଡଃ ସାମନ୍ତରାୟଙ୍କ ସହ ତାଙ୍କର ପରିଚୟ ଥିଲା । ମନ୍ତ୍ରୀ ମହୋଦୟ ତାଙ୍କୁ ଡାକି ସମସ୍ୟା ସମ୍ପର୍କରେ ବୁଝିଲେ । ଶିକ୍ଷା ବିଭାଗରେ ପଦୋନ୍ନତିର ବ୍ୟବସ୍ଥା ହେଲା, ସବୁ ବିଷୟ ପାଇଁ ଶତକଡା ୨୦ ଭାଗ । ଡଃ ସାମନ୍ତରାୟଙ୍କ ସମେତ ଅନେକ ପୁରୁଖା ବ୍ୟକ୍ତି ଏହା ଫଳରେ ଉପକୃତ ହେଲେ ।

ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ ମୁଖ୍ୟମନ୍ତ୍ରୀତ୍ୱ କାଳରେ ସରକାରୀ ଚାକିରୀଆଙ୍କ ମୁଣ୍ଡରେ ଚଡ଼କ ପଡ଼ିଲା । ୫୫ ବର୍ଷ ବୟସରେ ସମସ୍ତଙ୍କୁ ବିଦାୟ କରିଦେବାକୁ ସେ ସ୍ଥିର କଲେ । ନିୟମ ବଦଳିଲା । ଡଃ ସାମନ୍ତରାୟଙ୍କ ଚାକିରୀ ଗଲା । ସେ କହୁଥିଲେ- ଏଥିରେ ମଧ୍ୟ ରାଜନୀତି ଥିଲା । ତାଙ୍କୁ ସୁହାଉ ନଥିବା କିଛି ଲୋକଙ୍କୁ ବିଦା କରିଦେବାକୁ ସେ ଚାହୁଁଥିଲେ, ତାହା ହିଁ ହେଲା । ଦୁଇ ଚାରିଜଣଙ୍କ ପାଇଁ ଶହ ଶହ ଲୋକଙ୍କ ଦାନାପାଣି ବୁଡ଼ିଲା । ରାଜନୀତିଆଙ୍କ ସେଥିରେ ଯାଏ ଆସେ ନାହିଁ । ସେମାନଙ୍କର ଲକ୍ଷ୍ୟଟି ସାଧିତ ହେଲେ ସେମାନେ ଖୁସ୍ ।

କଲେଜ ସଂଖ୍ୟା ବଢିବା, ଅଧ୍ୟାପକ/ଅଧ୍ୟାପିକାମାନଙ୍କ ସଂଖ୍ୟା ବଢିବା, ପତ୍ରପତ୍ରିକାର ସଂଖ୍ୟା ବଢିବା ଫଳରେ ଆମେ ତରୁଣମାନେ ନୂତନ କ୍ରାନ୍ତିର ସ୍ୱପ୍ନ ଦେଖୁଥିଲୁ । କେତେ

ଜଣ ଉଦୀୟମାନ ଆଲୋଚକ, ଗବେଷକଙ୍କ ସମ୍ପର୍କରେ ଆମର ଧାରଣା ଭିନ୍ନଥିଲା । ସେମାନେ ଉଚ୍ଚ ପଦପଦବୀ ପାଇଲେ ଅନେକ କିଛି ବଦଳିଯିବ ବୋଲି ଆମେ ଆଶା କରିଥିଲୁ । କିନ୍ତୁ ଡଃ ସାମନ୍ତରାୟ ଭିନ୍ନ ମତ ପୋଷଣ କରୁଥିଲେ । କହୁଥିଲେ ବଂଶୀବାବୁ (ଉତ୍କଳ), ଗୋପାଳବାବୁ (ସମ୍ବଲପୁର), କାହ୍ନୁବାବୁ (ବ୍ରହ୍ମପୁର)ଙ୍କ ଅମଳରେ ଯାହା ଅଛି- ତାଙ୍କ ପରେ ଅବସ୍ଥା ଆହୁରି ଖରାପ ହେବ । ଏବେ ପାଠ ପାଇଁ କନ୍ଦଳ ନାହିଁ । ଖାଲି ଚଉକି ପାଇଁ କନ୍ଦଳ, ପଇସା, ଟି.ଏ., ଡି.ଏ ପାଇଁ କନ୍ଦଳ । ତାଙ୍କ ଭବିଷ୍ୟତବାଣୀ ସତ ହୋଇଥିଲା । ବର୍ତ୍ତମାନ ପ୍ରତି ବିଶ୍ୱବିଦ୍ୟାଳୟରେ ଓଡ଼ିଆ ପ୍ରଫେସରଙ୍କ ସଂଖ୍ୟା ୩ ରୁ ୫ । ପରସ୍ପର ଟଣାଟଣିରେ ବ୍ୟସ୍ତ । ପାଠ ପୋଥିରେ ଡୋର ।

ଯେନତେନ ପ୍ରକାରେଣ ଡିଗ୍ରୀ ହାସଲ କରିବା ନୀତିରେ ଡଃ ସାମନ୍ତରାୟ ଘୋର ବିରୋଧୀ ଥିଲେ । "୨୦/୩୦ ଖଣ୍ଡ ବହି ପକାଇ ୩୦୦ ପେଜ୍‌ର କ'ଣ ଗୋଟାଏ ଲେଖିଆଣ କିମ୍ବା ୨/୩ଟା ପୋଥି ପକାଇ ଗୋଟିଏ କାବ୍ୟର ସମ୍ପାଦନା କରିପକା କିମ୍ବା ଗୋଟିଏ ଅପ୍ରକାଶିତ ପୋଥି ସଂଗ୍ରହ କରି ତା'ର ଉପକ୍ରମଣିକାଟିଏ ଲେଖିଆଣ"- ଏପରି ପ୍ରହସନକୁ ଗବେଷଣା ବୋଲି ସେ ସ୍ୱୀକାର କରୁନଥିଲେ । ତାଙ୍କ ଘରେ ବିଭିନ୍ନ ଲୋକଙ୍କ ନୂଆ ନୂଆ ନିବନ୍ଧ ସମ୍ପର୍କରେ ଆଲୋଚନା ହେଉଥିଲା । ଅନେକ ନିବନ୍ଧର ପ୍ରତିଲିପି ତାଙ୍କୁ ମିଳୁଥିଲା । ବାକ୍ୟଗଠନରେ ତ୍ରୁଟି, ବନାନ୍ ତ୍ରୁଟି ଦେଖିବାକୁ ମଧ୍ୟ ଗାଇଡ୍‌ମାନେ କିପରି ସମୟ ନଦେଇ ତାଙ୍କୁ ପାସ୍ କରି ଦେଉଥିଲେ- ତାହା ହିଁ ଥିଲା ଚିନ୍ତାର ବିଷୟ । ତଥ୍ୟ ପ୍ରମାଦ ବା ବିଶ୍ଳେଷଣ ତ ଦୂରର କଥା ।

ଡଃ ସାମନ୍ତରାୟ ବହୁ ସମୟରେ ତାଙ୍କର ବାରିପଦା ଅନୁଭୂତି ବର୍ଣ୍ଣନା କରୁଥିଲେ । ସେ କିପରି ଗବେଷଣା ଆରମ୍ଭ କଲେ ତାହା ଆମକୁ ଶୁଣାଉଥିଲେ । ପରମାନନ୍ଦ ଆଚାର୍ଯ୍ୟଙ୍କ ଘରେ କିପରି ତାଙ୍କର ସମୟ କଟୁଥିଲା, ନିଜ ସମସ୍ୟାର ସମାଧାନ ପାଇଁ କିପରି ସୂତ୍ର ଖୋଜା ଚାଲିଥିଲା- ତାହା ଆମକୁ ରୋମାଞ୍ଚିତ କରୁଥିଲା ।

ଓଡ଼ିଆ ସାହିତ୍ୟର ଆଲୋଚନା ପ୍ରସଙ୍ଗରେ ସେ ଅନେକ ନୂଆ ବିଚାର ଆମ ଆଗରେ ଉପସ୍ଥାପିତ କରିଛନ୍ତି । ବାର୍ଦ୍ଧକ୍ୟରେ ମଧ୍ୟ ଅନୁସନ୍ଧିତ୍ସା ଅବ୍ୟାହତ ଥିଲା । ମୋର ମନେପଡୁଛି- 'ଧଡ଼ିଆ ପଣ୍ଡିତଂ ମନ୍ୟ' ପ୍ରବନ୍ଧ ବିଷୟରେ । କବି ରାଧାନାଥ ଇନ୍‌ସପେକ୍ଟର ଥିଲାବେଳେ ପୁରୀ ଜିଲ୍ଲା ସ୍କୁଲର ଛାତ୍ର ଗୋପବନ୍ଧୁଙ୍କ ବୃତ୍ତି କାଟିଦେବା କଥା ଗୋଟିଏ କିମ୍ବଦନ୍ତୀ ହୋଇ ସାରିଥିଲା । ଏହାର ସତ୍ୟତା ନିରୂପଣ କରିବାକୁ ଯାଇ ଡଃ ସାମନ୍ତରାୟ ପୁରୀ ଜିଲ୍ଲାସ୍କୁଲର ରେଜିଷ୍ଟାର ଓ ଆନୁଷଙ୍ଗିକ ତଥ୍ୟର ଅବତାରଣା ସହ ତାହା କିପରି ମିଥ୍ୟା ପ୍ରମାଣ କରିଥିଲେ । ସେ କହୁଥିଲେ, କାହାଣୀଟି ଆମର ଜାତୀୟ କଳଙ୍କ । ସେଥିପ୍ରତି କାହାରି ନଜର ନାହିଁ । ରାଧାନାଥ ଓ ଗୋପବନ୍ଧୁ ଦୁଇ ଜଣଙ୍କ ଚରିତ୍ର କଳୁଷିତ ହୋଇଛି । ଅସତ୍ୟ ଆଧାରିତ କାହାଣୀ ସବୁ କିପରି ଆମକୁ ବିଭ୍ରାନ୍ତ କରୁଛି ସେସବୁ କେହି ପରୀକ୍ଷା କରୁନାହାନ୍ତି । ସେହିପରି 'ଧର୍ମପଦ ଉପାଖ୍ୟାନ' । କୋଣାର୍କ ସମ୍ପର୍କିତ ଅନେକ ତଥ୍ୟର ଆଲୋଚନା କରି ଧର୍ମପଦ ଚରିତ୍ରକୁ ସେ ଖୋଜିଛନ୍ତି ଓ ତାଙ୍କୁ ପାଇବାରେ ବିଫଳ ହୋଇଛନ୍ତି ।

ଥରେ ଝଙ୍କାରରେ ଓଡ଼ିଆ ବର୍ଣ୍ଣମାଳା ସମ୍ପର୍କରେ ଗୋଟିଏ ପ୍ରବନ୍ଧ ବାହାରିଥିଲା ।

ସେଦିନ ସଂଧ୍ୟାରେ ତାଙ୍କ ଘରକୁ ମୁଁ ଯାଇଥାଏ । ପଚାରିଲେ- 'ଲେଖାଟି ପଢ଼ିଛୁ ? କିଏ ଲେଖିଛି ଜାଣୁ ?' ମୁଁ ସେଇ ବ୍ୟକ୍ତିଙ୍କୁ ଅବଶ୍ୟ ଜାଣିଥିଲି । ପୁଣି କହିଲେ- 'ବୁଝିଲୁ, କେହି କିଛି ପଢୁନାହାନ୍ତି । ଯାହା ଯେତେବେଳେ ମନକୁ ଆସିଲା ଲେଖି ପକାଉଛନ୍ତି ।' ମୁଁ କହିଲି- ଆଜିକାଲି ଭାଷାତତ୍ତ୍ୱବିତ୍‌ମାନେ ତ ସେଇକଥା କହୁଛନ୍ତି । ଓଡ଼ିଆ ବର୍ଣ୍ଣମାଳାରେ କେତେଗୁଡ଼ିଏ ଅନାବଶ୍ୟକ ବର୍ଣ୍ଣ ରହିଛି । ସେ ବର୍ଣ୍ଣମାଳା ସହ ତନ୍ତ୍ରର ସମ୍ପର୍କ କଥା କହିଲେ । ବହି ଆଣି ତା' ପଛରେ ଥିବା ଧାର୍ମିକ ପରମ୍ପରା କଥା ବୁଝାଇ ବସିଲେ ।

ଓଡ଼ିଆ ସାହିତ୍ୟର ବିଶିଷ୍ଟ ଗବେଷକ ରୂପେ ତାଙ୍କୁ ସମସ୍ତେ ଜାଣନ୍ତି । ଓଡ଼ିଶାର ଇତିହାସ, ଧର୍ମ ଓ ସଂସ୍କୃତି ସମ୍ପର୍କରେ ତାଙ୍କର ପାଣ୍ଡିତ୍ୟ ଥିଲା । ବାହାର ବିଶ୍ୱବିଦ୍ୟାଳୟ ମୁଖ୍ୟତଃ ଦିଲ୍ଲୀ ଓ କଲିକତାରୁ ଅନେକ ଗବେଷକ ତାଙ୍କ ଘରକୁ ଆସୁଥିଲେ । ବିଶେଷତଃ ଊନବିଂଶ ଶତାବ୍ଦୀର ଯେ କୌଣସି ଉପାଦାନ, ପତ୍ରପତ୍ରିକା, ପୁସ୍ତକ ସେ ସାଇତି ରଖିଥିଲେ । ଅନେକ ଲୋକ ସେସବୁର ଉପଯୋଗ କରିଛନ୍ତି ।

ସାରଳା ପୁରସ୍କାର ତାଙ୍କୁ ଦିଆଯାଇ ନଥିଲା । ଅଥଚ କେତେ ଚତୁରତାରେ ତାଙ୍କୁ ହାତେଇ ନେଉଥିଲେ ଜଣେ ପ୍ରଫେସର-ସାହିତ୍ୟିକ । ଘରକୁ ଆସି ତାଙ୍କର ଭୂରି ଭୂରି ପ୍ରଶଂସା କରୁଥିଲେ । ଅଥଚ ପୁରସ୍କାର କମିଟିରେ ଘୋର ବିରୋଧ କରୁଥିଲେ । ଅନେକ କଥା ଅଛପା ରହେନାହିଁ । ତାଙ୍କ ପାଖରେ ବସିଲେ ଏପରି ଦିମୁଣ୍ଡିଆ ଲୋକଙ୍କ କଥା ମଧ୍ୟ ପଡୁଥିଲା । ଏଭଳି ଲୋକଙ୍କୁ ସାବଧାନ ଥିବୁ ବୋଲି ମୋତେ ଉପଦେଶ ଦେଉଥିଲେ ।

'ପଞ୍ଚସଖା' ବିତର୍କ ସମ୍ପର୍କରେ ତାଙ୍କୁ ଥରେ ପଚାରିଥିଲି । କହିଲେ- ଇତିହାସ ଆଗ ନା ତମ ପୋଥି ଆଗ । ଇତିହାସ ଯାହା ପ୍ରମାଣ କରୁନାହିଁ ତାକୁ ମୁଁ ଗ୍ରହଣ କରିବାକୁ ନାରାଜ । 'ମଠ୍ ସଂଗୃହୀତ ପୋଥି'ର କିଛି ସତ୍ୟତା ଅଛି । କେତେ ପୋଥି ରାତାରାତି ଲେଖା ହେଉଛି । ମାଟି ତଳେ ପୋତାଯାଇ ତାକୁ ପୁରୁଣା କରାଯାଉଛି । ସବୁ ଯୁକ୍ତି ଅବାନ୍ତର । ଏ ନାଟର ଗୋବର୍ଦ୍ଧନ କିଏ ତୁ ଜାଣି ପାରୁନୁ ।

ଭାଷା ଆନ୍ଦୋଳନ ସମ୍ପର୍କରେ ତାଙ୍କ ସହ କେତେଥର ଆଲୋଚନା ହୋଇଥିଲା । ସେ କହୁଥିଲେ- ୫୦ ବର୍ଷ ତଳେ ମୁଁ ଯାହା ଉପାଦାନ ପାଇଥିଲି ତାକୁ ଧରି ମୁଁ ଗଣା କରିଥିଲି । କେତୋଟି ଚିଠି ମୋ ନଜରକୁ ଆସି ନଥିଲା । ହେଲେ କିଛି ନୂଆ କଥା ଜଣା ପଡ଼ିଲା । ଗଗନ ମୋର ପ୍ରିୟ ଛାତ୍ର । ପାଠୁଆ ପିଲା ।

ଡଃ ସାମନ୍ତରାୟଙ୍କ କାହାଣୀ ଅସରନ୍ତି । ତାଙ୍କୁ ଗୋଟିଏ ଲେଖା ମଧ୍ୟରେ ସଜାଡ଼ି ରଖିବା ମୋର ସାଧ୍ୟାତୀତ । ସେ ମହାଦ୍ରୁମ । ମୁଁ ତାଙ୍କ ଶୀତଳ ଛାୟାର ଅନୁଭବୀ ପଥିକ । ତାଙ୍କର ସାନ୍ନିଧ୍ୟ ପାଇ ମୁଁ ଧନ୍ୟ ହୋଇଛି ।

*ଅଧ୍ୟକ୍ଷ,*
*ରାଜଧାନୀ ଜୁନିଅର କଲେଜ,*
*ଭୁବନେଶ୍ୱର*

# ସ୍ମୃତି ସଞ୍ଚିତ
# ଡକ୍ଟର ନଟବର ସାମନ୍ତରାୟ

ରାଜେନ୍ଦ୍ର ପ୍ରସାଦ୍ ଷଡ଼ଙ୍ଗୀ

୧୯୮୩ ମସିହା, ମଇମାସ । ସାମନ୍ତରାପୁର ବାଣୀଭବନ ଗେଟ୍ ପାଖରେ ରହି ଭିତରେ ଠିଆହୋଇଥିବା ଜଣେ ବ୍ୟକ୍ତିଙ୍କୁ ପଚାରିଲି- 'ସାର୍ ଅଛନ୍ତି ?'

ଉତ୍ତର ଆସିଲା- 'ହଁ, ଅଛନ୍ତି ।'

ପୁଣି ପଚାରିଲି- 'ଟିକେ ଦେଖାହୋଇ ପାରିବ ? ଆମେ (ସାଙ୍ଗରେ ଆଉ ଜଣେ ବନ୍ଧୁଥିଲେ) ଭଞ୍ଜନଗରରୁ ଆସିଛୁ, ସାର୍‌ଙ୍କୁ ଦେଖାକରିବା ପାଇଁ ।'

ଉତ୍ତର ଆସିଲା- 'ଆଚ୍ଛା, ମୁଁ ବୁଝିଆସେ ।'

ଆମେ ଦୁହେଁ ସେଠାରେ ଠିଆହୋଇ ଅପେକ୍ଷା କଲୁ । ମନରେ ସନ୍ଦେହ ଥାଏ ଯଦି ସାର୍‌ଙ୍କ କିଛି ଗବେଷଣା ଚାଲିଥିବ କିମ୍ବା ଅଧ୍ୟୟନରେ ମନୋନିବେଶ ଥିବ, ତା'ହେଲେ ହୁଏତ ସାକ୍ଷାତ ହୋଇ ନପାରେ । ଆମେ ଯେଉଁ ଉଦ୍ଦେଶ୍ୟ ନେଇ ଯାଇଥିଲୁ, ତା'ହୁଏତ ସଫଳ ହୋଇ ନପାରେ । ଯିବାର ଉଦ୍ଦେଶ୍ୟଟି ଜଣାଇଦିଏ ।

୧୯୮୩ ମସିହା ଜାନୁଆରୀ ମାସରେ ଆମେ କେତେଜଣ ସାହିତ୍ୟାଗ୍ରହୀ ଉତ୍ସାହୀ ଯୁବବନ୍ଧୁ ମିଶି ଭଞ୍ଜନଗରରେ ସାହିତ୍ୟ ସଂସ୍ଥାଟିଏ ଗଢ଼ିଥିଲୁ । ନାମ ଦେଇଥିଲୁ ଭଞ୍ଜ ଯୁବ ସାହିତ୍ୟ ସଂସଦ । ଲକ୍ଷ୍ୟ ସାହିତ୍ୟ କ୍ଷେତ୍ରରେ ନୂତନ କିଛି କରିବା । ସେଥିନେଇ ଯେଉଁ ପରିକଳ୍ପନାଟି ଆମେ କରିଥିଲୁ ତାହାଥିଲା :-

କ) ଓଡ଼ିଶାର ଲେଖକ ଓ ସାହିତ୍ୟିକମାନଙ୍କର ସାମଗ୍ରିକ ଆକଳନ ।

ଖ) ସେମାନଙ୍କର କୃତି ସମ୍ପର୍କରେ ସ୍ୱତନ୍ତ୍ର ସମୀକ୍ଷାଗ୍ରନ୍ଥ (ବିଭିନ୍ନ ଦୃଷ୍ଟିରୁ ଆଲୋଚନା ସମୃଦ୍ଧ) ପ୍ରକାଶ ।

ଗ) ସାହିତ୍ୟିକ ଓ ସେମାନଙ୍କ ରଚନାବଳୀ ସମ୍ପର୍କରେ ଆଲୋଚନା ଚକ୍ରର ଆୟୋଜନ ।

ଘ) କବି, ଲେଖକ ଓ ସମାଲୋଚକମାନଙ୍କୁ ସାକ୍ଷାତ କରିବା ଓ ସେମାନଙ୍କ ଜୀବନୀ ଓ ରଚନା ସମ୍ପର୍କରେ ତଥ୍ୟ ସଂଗ୍ରହ ।

ଙ) ପତ୍ରିକାଟିଏ ପ୍ରକାଶ କରିବା, ଯାହା କେବଳ ଏକକ କାବ୍ୟ, ଉପନ୍ୟାସ କିମ୍ବା କବି, ଲେଖକମାନଙ୍କୁ ନେଇ ବିଶେଷାଙ୍କ ରୂପେ ପ୍ରକାଶିତ ହେବ ।

ଅନୁଷ୍ଠାନ ତରଫରୁ ଏକ ପତ୍ରିକା ମଧ୍ୟ ପ୍ରକାଶ ପାଇଲା । ନାମ ଥିଲା 'ବହିତ୍ର' । ଯେହେତୁ ଭଞ୍ଜଙ୍କ ନାମରେ ଏହି ଅନୁଷ୍ଠାନଟି ନାମିତ, ତେଣୁ କବି ଉପେନ୍ଦ୍ର ଭଞ୍ଜ ଓ ତାହାଙ୍କ କାବ୍ୟକୃତିର ଆଲୋଚନାରୁ ଏହାର ଆରମ୍ଭ ହେଲା । ପ୍ରଥମ ସଂଖ୍ୟାଟି 'ଉପେନ୍ଦ୍ର ଭଞ୍ଜ ବିଶେଷାଙ୍କ' ରୂପେ ପ୍ରକାଶ ପାଇଲା । ଓଡ଼ିଶାର ବିଭିନ୍ନ ସ୍ତରରୁ ଏହି ପତ୍ରିକା ପ୍ରକାଶ

ପାଇଁ ଲେଖା, ଉତ୍ସାହ, ପ୍ରେରଣା ଓ ସହଯୋଗମାନ ପ୍ରାପ୍ତ ହେଲା । 'ବହିତ୍ର' ପ୍ରଥମ ସଂଖ୍ୟାଟି ପ୍ରକାଶ ପାଇବା ପରେ, ଏହା ଓଡ଼ିଶାର ଲେଖକ, ଆଲୋଚକ, ପ୍ରାବନ୍ଧିକ ଓ ସାହିତ୍ୟିକମାନଙ୍କ ନିକଟକୁ ପ୍ରେରଣ କରାଯିବା କିମ୍ବା ସେମାନଙ୍କୁ ସାକ୍ଷାତକରି ପତ୍ରିକା ପ୍ରଦାନ କରିବା ଓ ପରବର୍ତ୍ତୀ ସଂଖ୍ୟା ପାଇଁ ଲେଖା ଓ ମତାମତ ସଂଗ୍ରହ କରିବାର ଦାୟିତ୍ୱ ନେଇଥିଲା ଏହି ଲେଖକ । ଓଡ଼ିଶାର ବିଭିନ୍ନ ଅଞ୍ଚଳକୁ ଯାଇ ସାହିତ୍ୟିକମାନଙ୍କୁ ସାକ୍ଷାତ କରି ଭଞ୍ଜ ଯୁବ ସାହିତ୍ୟ ସଂସଦର ଉଦ୍ଦେଶ୍ୟ ଓ ଆଭିମୁଖ୍ୟ ସଂପର୍କରେ ସେମାନଙ୍କ ସହିତ ଆଲୋଚନା କରୁଥିଲା, ପରାମର୍ଶ ଓ ମତାମତ ସଂଗ୍ରହ କରୁଥିଲା ଏବଂ ପତ୍ରିକା ପାଇଁ ଲେଖା ପଠାଇବାକୁ ନିବେଦନ କରୁଥିଲା । ସେହି ସୂତ୍ରେ ଡକ୍ଟର ନଟବର ସାମନ୍ତରାୟଙ୍କୁ ସାକ୍ଷାତ କରିବାର ସୁଯୋଗ ଅପେକ୍ଷାରେ ରହିଥିଲା ।

କିଛି ସମୟ ପରେ 'ବାଣୀ ଭବନ' ମଧ୍ୟରୁ ଡାକରା ଆସିଲା ।

"ଆସନ୍ତୁ, ସାର୍ ଡାକୁଛନ୍ତି ।"

ସେହି ସମୟ ପର୍ଯ୍ୟନ୍ତ ଡକ୍ଟର ସାମନ୍ତରାୟଙ୍କ ନାମ ଶୁଣିବା ବ୍ୟତୀତ ଦେଖିବାର ସୁଯୋଗ ପାଇ ନଥିଲା, ଏ ଲେଖକ । ଅବଶ୍ୟ ଓଡ଼ିଆ ସମ୍ମାନ ଓ ଏମ୍.ଏ ପଢ଼ିଲାବେଳେ ତାଙ୍କର ରଚିତ ଅଧିକାଂଶ ଗ୍ରନ୍ଥ ଅଧ୍ୟୟନର ସୌଭାଗ୍ୟ କିନ୍ତୁ ଜୁଟିଥିଲା । 'ଓଡ଼ିଆ ସାହିତ୍ୟର ଇତିହାସ' (ଆଧୁନିକ), 'ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ', 'ବ୍ୟାସକବି ଫକୀର ମୋହନ', 'ନନ୍ଦକିଶୋର ସାହିତ୍ୟ ସମୀକ୍ଷା', 'ବଡ଼ଜେନା ସାହିତ୍ୟ ସମୀକ୍ଷା', 'ଓଡ଼ିଆ ପଲ୍ଲୀ ସାହିତ୍ୟ', 'ସଖାହୀନ ପଞ୍ଚସଖା', 'ଓଡ଼ିଆ ବୈଷ୍ଣବ ସାହିତ୍ୟ' ପ୍ରଭୃତି ବହୁ ଗ୍ରନ୍ଥରୁ ତାଙ୍କର ପାଣ୍ଡିତ୍ୟ ଓ ଆଲୋଚନା ଦେଖି ଆମେ ବିସ୍ମିତ ହେଉଥିଲୁ । ମୂଳତଃ ତାଙ୍କର ଆଲୋଚନା ଓ ସାହିତ୍ୟ ଚର୍ଚ୍ଚାର ଯେଉଁ କେତୋଟି ଦିଗ ଆମକୁ ବିଶେଷ ଆକର୍ଷିତ କରିଥିଲା, ସେଗୁଡ଼ିକ ହେଲା-

କ) ଅଧ୍ୟୟନରେ ଗଭୀରତା, ବିଷୟ ନିର୍ବାଚନ ପରେ ଏହାର ପୃଷ୍ଠଭୂମିର ଅଧ୍ୟୟନ, ସମୟ, ସାମାଜିକ ଓ ଶୈକ୍ଷିକ ପରିବେଶର ଅନୁଧ୍ୟାନ ପ୍ରଭୃତିର ଆଧାରରେ ଲେଖକ ଓ ସେମାନଙ୍କ କୃତି ଗୁଡ଼ିକର ବିଚାର ।

ଖ) ଗବେଷଣା ପଦ୍ଧତି- ବୈଜ୍ଞାନିକ ପଦ୍ଧତିରେ ଆହରଣ ଓ ପର୍ଯ୍ୟବେକ୍ଷଣ ଦ୍ୱାରା ସଂଗୃହୀତ ଉପାଦାନ ଗୁଡ଼ିକର ପରୀକ୍ଷା ଓ ନିଷ୍କର୍ଷ ପ୍ରକାଶ ।

ଗ) ଗବେଷଣାରେ ମୌଳିକତାର ପ୍ରତିଫଳନ ।

ଘ) ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାବ ମଧ୍ୟରେ ତାଙ୍କର ପ୍ରବେଶ ଯଥା- ଆଧୁନିକ ଓଡ଼ିଆ ସାହିତ୍ୟ, ପଞ୍ଚସଖା ସାହିତ୍ୟ, ବୈଷ୍ଣବ ସାହିତ୍ୟ, ଲୋକ ସାହିତ୍ୟ ପ୍ରଭୃତି ।

ସେହି ବିଶିଷ୍ଟ ଗବେଷକଙ୍କ ସହିତ ସାକ୍ଷାତର ସୁଯୋଗ ହାତଛଡ଼ା କରିବାର ନୁହେଁ । ପୁଣି ଆମେ ଆରମ୍ଭ କରିଥିବା ସାହିତ୍ୟିକ ପରିକଳ୍ପନା ସମ୍ପର୍କରେ ତାଙ୍କର ପରାମର୍ଶ ନେବା ଜରୁରୀ । ଆମେ ଘର ଭିତରକୁ ପର୍ଦ୍ଦା ଆଡ଼େଇ ପ୍ରବେଶ କଲୁ । ଦେଖିଲୁ, ଆଗରେ ଚେୟାରରେ ବସିଛନ୍ତି ଜଣେ କୃଶଶରୀର, ଗୌରବର୍ଣ୍ଣ ବିଶିଷ୍ଟ ବୃଦ୍ଧବ୍ୟକ୍ତି । ଆଖିରେ ମୋଟା ଚଷମା ନାଇ, ଗୋଟିଏ ଲେନ୍ସ ହାତରେ କୌଣସି ଏକ ପୁସ୍ତକକୁ ଅଧ୍ୟୟନ କରୁଥିଲେ । ସେ ଡକ୍ଟର ସାମନ୍ତରାୟ ! ଏଥିରେ ସନ୍ଦେହର ଅବକାଶ ନଥିଲା । ଆମେ ନିଜର ପ୍ରଣତି ଜଣାଇଲୁ । ମୁଣ୍ଡ ଉଠାଇ ଆମକୁ ଦେଖି ସ୍ୱାଗତ କରି କହିଲେ- "ଆସ

ବାବୁ ଆସ ଆସ, ବସ । ତୁମେ ଦୁହେଁ ଯୁବକ, କୁଆଡ଼େ ଆସିଲ, ମୋ ପାଖରେ କିଛି କାମଥିଲା ?''

ମୁଁ ଉତ୍ତର ଦେଲି- 'ସାର୍, ଆମେ ଭଞ୍ଜନଗରରୁ ଆସିଛୁ ।'

- 'ଭଞ୍ଜନଗର । ଓଃ ପୂଜାରୀ (ଡଃ ଉମାଚରଣ ପୂଜାରୀ, ଓଡ଼ିଆ ଅଧାପକ) ଯେଉଁଠି ଅଛି ! ଆଚ୍ଛା ! ଆଚ୍ଛା ! ତୁମେ ପୂଜାରୀର ଛାତ୍ର କି ? ପୂଜାରୀ ମୋର ରିସର୍ଚ୍ଚ ସ୍କଲାର । ଓଡ଼ିଆ ଉପନ୍ୟାସ ସମ୍ପର୍କରେ ଗବେଷଣା କରୁଛି । ତା'କୁ ଦେଖିଲେ କହିବ, ମୁଁ ମନେ ପକାଉଥିଲି । ଆଚ୍ଛା, କୁହ ମୋ ପାଖକୁ କାହିଁକି ଆସିଥିଲ ?'

-'ସାର, ଆମ ଭଞ୍ଜନଗରରେ ଭଞ୍ଜ ଯୁବ ସାହିତ୍ୟ ସଂସଦ ନାମରେ ଏକ ସଂସ୍ଥା ଗଠନ କରିଛୁ । ସେଥିରେ 'ବହିତ୍ର' ନାମରେ ଏକ ପତ୍ରିକା ପ୍ରକାଶ କରୁଛୁ । ଏହାର ପ୍ରତ୍ୟେକ ଖଣ୍ଡ ଲେଖକ କିମ୍ବା ଲେଖକଙ୍କ କୃତିର ବିଶେଷାଙ୍କ ରୂପେ ପ୍ରକାଶ ପାଇବ । ପ୍ରଥମ ଖଣ୍ଡଟି ଉପେନ୍ଦ୍ରଭଞ୍ଜ,ବିଶେଷାଙ୍କ ରୁପେ ପାକାଶ ପାଇଛି । ଏଇ ଦେଖନ୍ତୁ'- (କହି ପତ୍ରିକା ଖଣ୍ଡିକ ଦେଲି)

-'ଆଚ୍ଛା ଦେଖେ ଦେଖେ, ଭଲ କାମଟିଏ କରିଛ । ହଇଓ ଅରବିନ୍ଦ ବାବୁ(ଡଃ ଅରବିନ୍ଦ ପଟ୍ଟନାୟକ) ଆସ, ଦେଖ ଦେଖ, ଏଇ ପିଲାମାନେ କିପରି ଭଲ କାମଟିଏ କରିଛନ୍ତି । ଆଉ ପରବର୍ତ୍ତୀ ସଂଖ୍ୟା କେବେ ପ୍ରକାଶ ପାଇବ ? ସେଥିରେ କେଉଁ ବିଷୟରେ ଆଲୋଚନା ହେବ ।'

-'ସାର, 'ବହିତ୍ର'ର ପରବର୍ତ୍ତୀ ସଂଖ୍ୟା 'ଲାବଣ୍ୟବତୀ ବିଶେଷାଙ୍କ' ରୂପେ ପ୍ରକାଶ ପାଇବ ।'

-'ଲାବଣ୍ୟବତୀ'...। ଭଞ୍ଜଙ୍କର ଏକ ଶ୍ରେଷ୍ଠକୃତି.....। ଭଲକଥା । ମୋ ପାଇଁ ଖଣ୍ଡିଏ ପଠାଇବ ନିଶ୍ଚୟ ।'

-'ନିଶ୍ଚୟ ସାର, କିନ୍ତୁ ଗୋଟିଏ ଅନୁରୋଧ । ଆପଣ ଭଞ୍ଜଙ୍କ ସମ୍ପକରେ କିଛି ଲେଖା ଦିଅନ୍ତୁ । ଯଦି ସମ୍ଭବ ଲାବଣ୍ୟବତୀର କୌଣସି ବିଭାଗ ସଂପର୍କରେ ଆଲୋଚନାଟିଏ ନେଲେ ଆମେ ଦ୍ୱିତୀୟ ସଂଖ୍ୟାରେ ପ୍ରକାଶ କରନ୍ତୁ ।'

ଟିକେ ରହି ଡଃ ସାମନ୍ତରାୟ କହିଲେ - 'ମୁଁ ବା କି ଲେଖା ଦେବି ଭଞ୍ଜଙ୍କ ସମ୍ପର୍କରେ । ଭଞ୍ଜ ସାହିତ୍ୟରେ ମୋର ତ ସେମିତି ପ୍ରବେଶ ନାହିଁ । ତୁମେ ତ ଜାଣ ମୁଁ ଆଧୁନିକ ଓଡିଆ ସାହିତ୍ୟବାଲା । ମଧ୍ୟଯୁଗ ସାହିତ୍ୟ କିମ୍ବା ଭଞ୍ଜଙ୍କ ସମ୍ପର୍କରେ ଲେଖିବା ମୋ ଦ୍ୱାରା ସମ୍ଭବ ହେବନି ।'

ମୁଁ କହିଲି - 'ଡଃ ନଟବର ସାମନ୍ତରାୟଙ୍କୁ ତ କେବଳ ଆଧୁନିକ ଓଡିଆ ସାହିତ୍ୟ ମଧ୍ୟରେ ସୀମାବଦ୍ଧ କରିନେଲେ ହେବନି । ସେଇ ଡଃ ସାମନ୍ତରାୟ ତ ପୁଣି ବୈଷ୍ଣବ ସାହିତ୍ୟ ସମ୍ପର୍କରେ ଲେଖିଛନ୍ତି, ପଞ୍ଚସଖା ଯୁଗ ସମ୍ପର୍କରେ ଆଲୋଚନା କରିଛନ୍ତି । ମଧ୍ୟଯୁଗର କବି ବ୍ରଜନାଥ ବଡ଼ଜେନାଙ୍କ ସାହିତ୍ୟ କୃତିର ମୂଲ୍ୟାୟନ ଓ ଉପେନ୍ଦ୍ରଭଞ୍ଜଙ୍କ ରଚନାବଳୀ ସମ୍ପର୍କରେ ବିଶେଷ ଆଲୋକପାତ କରିଛନ୍ତି ତ ସେଇ ଡଃ ସାମନ୍ତରାୟ । ସେ ଚାହିଁଲେ କ'ଣ ଲାବଣ୍ୟବତୀ ବୈଦେହୀଶ ବିଳାସ ସମ୍ପର୍କରେ ଲେଖିପାରିବେ ନାହିଁ ?'

ହସି ହସି ସେ କହିଲେ - 'ତୁମେ ତ ମୋତେ ଆଚ୍ଛା ବୋକା ବନାଇଲ ହୋ !

ମୋର ଅଧିକାଂଶ ବହି ବିଷୟରେ ତୁମେ ତା'ହେଲେ ଖବର ରଖିଛ । କିନ୍ତୁ ବାପା, ତୁମେ ଜାଣ ଗବେଷଣା କରିବା ଭାରି କଷ୍ଟ । ଏଣୁ ତେଣୁ ତ ଆଉ ଦୁଇ ଚାରି ପୃଷ୍ଠା ଲେଖିଦେଲେ ଚଳିବ ନାହିଁ । ମୁଁ ଫକୀର ମୋହନଙ୍କ ରଚନାବଳୀ ସମ୍ପର୍କରେ ବିଶେଷ ଅଧ୍ୟୟନରେ ଅଛି । ତେଣୁ ମୋଠାରୁ ବର୍ତ୍ତମାନ ଲେଖା ଆଶା କରନାହିଁ । ଭବିଷ୍ୟତରେ କେବେ ଦେବି । ତୁମେ କିନ୍ତୁ ମୋ ପାଖକୁ ପତ୍ରିକା ଖଣ୍ଡେ ଖଣ୍ଡେ ଦେବା ଭୁଲିଯିବନି ।'

ଏହା ପରେ ଅନ୍ୟାନ୍ୟ ବହୁ ବିଷୟରେ ଆଲୋଚନା ହୋଇଥିଲା । ତା' ମଧ୍ୟରେ ଥିଲା ସାହିତ୍ୟ ସଂସଦର ନାମ କରଣ, ପତ୍ରିକା ପ୍ରକାଶନ, ପ୍ରଥମ ସଂଖ୍ୟାରେ ପ୍ରକାଶିତ ଲେଖାର ମାନ, ଭଞ୍ଜନଗରର ଅବସ୍ଥିତି, ଏହାର ସାଂସ୍କୃତିକ ପରିବେଶ, ଭଞ୍ଜନଗର କଲେଜର ଓଡିଆ ବିଭାଗ ଓ ଏହାର କାର୍ଯ୍ୟଧାରା । ଭଞ୍ଜନଗରରେ ରହିଥିବା ସାଂସ୍କୃତିକ ଓ ସାହିତ୍ୟିକ ଉପାଦାନର ସଂଗ୍ରହ ଓ ତତ୍ ସମ୍ପର୍କୀୟ ଗବେଷଣା ଓ ଆଲୋଚନା ପ୍ରଭୃତି ।

ଏହି ଲେଖକ ସେହିଦିନ ଡଃ ସାମନ୍ତରାୟଙ୍କଠାରୁ ବିଦାୟ ନେଇ ଆସିଥିଲା ଏବଂ ପ୍ରତିଶ୍ରୁତି ମୁତାବକ 'ବହିତ୍ର' ପତ୍ରିକା ପଠାଇବାର ବ୍ୟବସ୍ଥା କରିଥିଲା । ୧୯୮୫ ମସିହା ଏପ୍ରିଲ ମାସରେ ଚିଠିପତ୍ର ଗୁଡିକ ଦେଖୁଥିବା ସମୟରେ ହଠାତ୍ ଏକ ଚିଠି ପ୍ରତି ଦୃଷ୍ଟି ଆକର୍ଷିତ ହୋଇଥିଲା । ବାଣୀଭବନ, ଭୁବନେଶ୍ୱରରୁ ଯାଇଥିଲା ସେ ପୋଷ୍ଟକାର୍ଡ ଖଣ୍ଡିକ । ଲେଖାଥିଲା -

''ବହିତ୍ରର ଲେଖାଗୁଡିକ ମୋଟା ମୋଟି ଭାବେ ଅତ୍ୟନ୍ତ ଉପାଦେୟ । ଉପେନ୍ଦ୍ର ସମାଲୋଚନା- ସାହିତ୍ୟରେ ଏହାର ଏକ ବିଶିଷ୍ଟସ୍ଥାନ ରହିବ ବୋଲି ଆଶା । ଏହି ଉଦ୍ୟମ ସର୍ବାଦୌ ପ୍ରଶଂସନୀୟ ।'' -ନଟବର ସାମନ୍ତରାୟ

ଏହି ପତ୍ରଟି ବହିତ୍ର- ୪ ବୈଦେହୀଶ ବିଳାସ ସଂଖ୍ୟାର ମତାମତ ପୃଷ୍ଠାରେ ସ୍ଥାନିତ ହୋଇଛି ।

ଡଃ ସାମନ୍ତରାୟଙ୍କ ସହିତ ହୋଇଥିବା ସାକ୍ଷାତକାର ଓ ଏହି ପତ୍ର ଏବେ ମଧ୍ୟ ସ୍ମୃତି ସାଇତା ହୋଇ ରହିଛି ଲେଖକର । ଏହି ସାକ୍ଷାତକାର ମଧ୍ୟରେ ଡଃ ସାମନ୍ତରାୟଙ୍କ ବ୍ୟକ୍ତିତ୍ୱର ଯେଉଁ କେତୋଟି ବିଶେଷତ୍ୱ ଏହି ଲେଖକ ଲକ୍ଷ୍ୟ କରିଥିଲା, ତାହା ହେଉଛି -

କ) ଓଡିଶାର ଲେଖକ, ସାହିତ୍ୟିକ ଓ ଗବେଷକମାନଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ଓ ଆନ୍ତରିକତା, ସେମାନଙ୍କୁ ଉତ୍ସାହ ଓ ପ୍ରେରଣା ପ୍ରଦାନ ।

ଖ) ଯେ କୌଣସି ଅଞ୍ଚଳ, ସେଠାକାର ଶିକ୍ଷା, ସାହିତ୍ୟ ଓ ସଂସ୍କୃତିର ଅଗ୍ରଗତି ସଂମ୍ପର୍କରେ ଆଗ୍ରହ ଓ ଅନୁସନ୍ଧିତ୍ସା ।

ଗ) ବିଭିନ୍ନ ଅଞ୍ଚଳରେ ଉପଲବ୍ଧ ଓ ଅନାବିଷ୍କୃତ ସାହିତ୍ୟିକ ଓ ସାଂସ୍କୃତିକ ଉପାଦାନର ସଂଗ୍ରହ ଓ ତତ୍ ସମ୍ପର୍କିତ ଗବେଷଣା ପ୍ରତି ଆଗ୍ରହ ।

ଘ) ଡଃ ନଟବର ସାମନ୍ତରାୟଙ୍କ ଭଳି ଗବେଷକ ମଧ୍ୟ ନିଜ ଗବେଷଣା ବ୍ୟତୀତ ଅନ୍ୟାନ୍ୟ ବିଷୟ ଆଲୋଚନା କିମ୍ବା ଲେଖାର ଅନୁରୋଧ ଆସିଲେ ନିଜର ଅସାମର୍ଥ୍ୟ ପ୍ରକାଶ କରୁଥିଲେ କିମ୍ବା ଏହା ବିଳମ୍ବିତ ହେବ ବୋଲି ଜଣାଉଥିଲେ, ଯଦିଓ ସାହିତ୍ୟର ପ୍ରତ୍ୟେକ ବିଭାଗରେ ତାଙ୍କର ଦଖଲ ଓ ଦକ୍ଷତା ରହିଥିଲା । ଅଥଚ ଆଜିର ସାହିତ୍ୟିକ ଓ ଆଲୋଚକମାନେ ଯେ କୌଣସି ବିଷୟରେ ରାତାରାତି ବିଶେଷଜ୍ଞ ହୋଇ ବାହାରି ପଡୁଛନ୍ତି

ଓ ଆସୁ ନଆସୁ ଯାହିତାହି ଲେଖି-ଦୁଇ ଚାରି ପୃଷ୍ଠା ପୋପାଡି ଦେଉଛନ୍ତି, ଯାହା ଓଡିଆ ସାହିତ୍ୟ ପାଇଁ ଆଦୌ ଶୁଭଙ୍କର ନୁହେଁ । ଡଃ ସାମନ୍ତରାୟଙ୍କୁ ସମସ୍ତେ ଏ କ୍ଷେତ୍ରରେ ଉଦାହରଣ ରୂପେ ଗ୍ରହଣ କରିବା ଉଚିତ ।

*ପ୍ରତିଷ୍ଠାତା ସଦସ୍ୟ*
*ଭଞ୍ଜ ଯୁବ ସାହିତ୍ୟ ସଂସଦ*
*ନୂଆସାହି, ଭଞ୍ଜନଗର*

## ନଟବର ବାଣୀ

ଦିବ୍ୟ ପ୍ରତିଭା ସମ୍ପନ୍ନ ଲେଖକ ବା ସ୍ରଷ୍ଟା ସବୁ ଯୁଗରେ ସାଧାରଣତଃ ଉପେକ୍ଷିତ ବା ଅବହେଳିତ ହୋଇଥାନ୍ତି । ପ୍ରତିଭା ଥାଏ ଏମାନଙ୍କ ବଞ୍ଚିବାର ଏକମାତ୍ର ମୂଳଧନ ବା ଅବଲମ୍ବନ । ଉଦର ପୋଷଣ ପାଇଁ ଏମାନେ ସାମନ୍ତବାଦୀ ସମାଜରେ ରାଜାନୁଗ୍ରହ ଭିକ୍ଷା କରିବାକୁ ବାଧ ହୋଇଥାନ୍ତି । କିନ୍ତୁ ରାଜ ଦରବାରରେ ସର୍ବସାଧାରଣଙ୍କ ସମ୍ମୁଖରେ ଏମାନଙ୍କର ପ୍ରତିଭାର ହୁଏ ଯଥାର୍ଥ ପରୀକ୍ଷା । ଆଜିକାଲିର ପରୀକ୍ଷାରେ ଜଣେ ଯାହା ଲେଖେ ତାକୁ କେବଳ ଜଣେ ଦେଖି ମୂଲ୍ୟାୟନ କରେ; ଏଇ ଜଣେ ଦେଖୁଥିବା ପରୀକ୍ଷକର ସାଧୁତା ଉପରେ ଏପରି ପରୀକ୍ଷା ପୂର୍ଣ୍ଣତଃ ନିର୍ଭର କରୁଥିବାରୁ ଆଜିର ଦୁର୍ନୀତିପୂର୍ଣ୍ଣ ସମାଜରେ ତାକୁ ସହଜରେ ସମୟ ପଡ଼ିଲେ ପ୍ରଭାବିତ କରିପାରିବା ବିଶେଷ କଷ୍ଟକର ବ୍ୟାପାର ନୁହେଁ । ଆଧୁନିକ ପରୀକ୍ଷା-ପଦ୍ଧତିରେ ଅସାଧୁତା ପ୍ରବେଶ କରିବାର ଯଥେଷ୍ଟ ସମ୍ଭାବନା ଥିବାରୁ ଜଣେ ଜଣେ ନିମ୍ନସ୍ତରର ଲେଖକ ଆକସ୍ମିକ ଭାବେ ସାକ୍ଷାତ ଗଣେଶ ପାଲଟି ଯିବାକୁ ବେଶି ସମୟ ନେଉ ନାହାନ୍ତି । ଏମାନଙ୍କ ପରୀକ୍ଷାରେ ପ୍ରତିଭା-ପରିମାପ ପାଇଁ ଜନତାର କୌଣସି ଅଧିକାର ନାହିଁ । କିନ୍ତୁ, ଗୁଣର ପରୀକ୍ଷା, ସାମନ୍ତବାଦୀ ସମାଜରେ ଥିଲା ଗୁଣ-ସ୍ୱୀକୃତି-ମୁଖୀ; କବି ବା ଲେଖକର ସମ୍ମାନ ଲାଭ କରିବାକୁ ହେଲେ ପ୍ରତିଯୋଗିତାମୂଳକ ଭାବରେ ଜଣକୁ ଗଣର ବିଚାରଧାରାର ସମ୍ମୁଖୀନ ହେବାକୁ ପଡୁଥିଲା- ଆଜିର ପ୍ରତିଭା ପରିମାପ-ପ୍ରଣାଳୀର ତାହା ଥିଲା ସମ୍ପୂର୍ଣ୍ଣ ବିପରୀତ ।

*ବର୍ଦ୍ଧନେନା ସାହିତ୍ୟ ସମୀକ୍ଷା (୧୯୭୧) ପୃ ୨୩*

# ମଉଡ଼ମଣି

ଶୁଭ୍ରା ମହାନ୍ତି

"କୋଟିଏ ତାରା ଥାଉ ନୀଳ ଆକାଶେ
ଗୋଟିଏ ଚନ୍ଦ୍ର ସିନା ଅନ୍ଧାର ନାଶେ"

କୋଟି କୋଟି ତାରା ନୀଳ ଆକାଶର ଅନ୍ଧକାରକୁ ଦୂରୀଭୂତ କରିପାରେ ନାହିଁ, କିନ୍ତୁ ଗୋଟିଏ ମାତ୍ର ଚନ୍ଦ୍ର ତାହାକୁ କ୍ଷଣିକ ଭିତରେ ଦୂରକରି ଆଲୋକର ପ୍ଲାବନରେ ସାରା ପୃଥିବୀକୁ ଝଲସାଇ ଦିଏ- ସେଥିପାଇଁ ଚନ୍ଦ୍ର ହୁଏ "ଆକାଶର ମଉଡ଼ମଣି ।"

ସେହିପରି ଓଡ଼ିଆ ସାହିତ୍ୟାକାଶରେ ଶ୍ରୀଯୁକ୍ତ ନଟବର ସାମନ୍ତରାୟ ଥିଲେ ଏକ 'ମଉଡ଼ମଣି'- ଆଜି ସିଏ ନାହାନ୍ତି ସତ କିନ୍ତୁ ତାଙ୍କ ଅମର ଲେଖନୀରୁ ନିସୃତ ସମୀକ୍ଷା ଗୁଡ଼ିକ ଓଡ଼ିଶାର କୃତି ସନ୍ତାନମାନଙ୍କ ପାଇଁ ଏକ ପ୍ରେରଣାର ଉତ୍ସ ଏହା କହିବା ନିଃସନ୍ଦେହ । ତାଙ୍କର ପ୍ରଚଣ୍ଡ ପ୍ରତିଭା ଓଡ଼ିଆ ସାହିତ୍ୟର ଗବେଷଣା କ୍ଷେତ୍ରରେ ଏକ ମାଇଲ ଖୁଣ୍ଟ ଯାହାକି ତାଙ୍କୁ ଅମର କରି ରଖିବ- ଯେ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟ ବଞ୍ଚି ରହିଥିବ ।

ମୁଁ ତାଙ୍କର ଛାତ୍ରୀ ନଥିଲି ପ୍ରତ୍ୟକ୍ଷରେ କିନ୍ତୁ ତାଙ୍କ ଲିଖିତ 'ଓଡ଼ିଆ ସାହିତ୍ୟର ଇତିହାସ' ଆମର ପଢ଼ା ହେଉଥିଲା, ସେ ହିସାବରେ ମୁଁ ତାଙ୍କୁ ଜାଣିଥିଲି । କିନ୍ତୁ ୧୯୮୨ରେ ଯେତେବେଳେ ତାଙ୍କ ଘର ପାଖେ ଆମ ଘର କରିଲୁ ଏବଂ ସାମନ୍ତରାପୁରକୁ ମୁଁ ନୂଆ ହୋଇ ଆସିଥାଏ, ଦରକାର ବେଳେ ମଝିରେ ମଝିରେ ତାଙ୍କ ଘରକୁ ଯାଏ ଏବଂ ସାର୍ ବୋଲି ଡ଼ାକେ । ତାଙ୍କ ସାନ ଝିଅ ଲିଚୁ ଓ ମୋ ସାନ ଝିଅ ସେଲି ଏକା ସ୍କୁଲରେ ପଢୁଥିଲେ ଏବଂ ସାଙ୍ଗ ହୋଇ ପ୍ରତ୍ୟେକ ଦିନ ସ୍କୁଲ ଯାଉଥିଲେ । ମୁଁ ରେଭେନ୍ସାରେ ପଢୁଥିଲା ବେଳେ ଶୁଣିଥିଲି ନଟସାର୍ ଭାରି ରାଗି ବୋଲି ଏବଂ ନମ୍ବର ମଧ୍ଯ ବହୁତ କଡ଼ାକରି ଦିଅନ୍ତି । କିନ୍ତୁ ପ୍ରଥମେ ଯେତେବେଳେ ତାଙ୍କ ଘରକୁ ଗଲି ମୋର ତାଙ୍କ ସହିତ ପ୍ରଥମ ଆଳାପରେ ତାଙ୍କ ପ୍ରତି ଥିବା ଧାରଣା ବଦଳି ଯାଇଥିଲା ଏବଂ ଏତେ ଜ୍ଞାନୀ, ମାନୀ ବ୍ୟକ୍ତି ଯେ ଏତେ ସରଳ, ନମ୍ର, ଭଦ୍ର ଆଉ ଆପଣାର ହୋଇପାରନ୍ତି ଭାବିଲେ ମତେ ଆଶ୍ଚର୍ଯ୍ୟ ଲାଗୁଥିଲା ।

ସାର୍ ଗବେଷଣା କ୍ଷେତ୍ରରେ ଥିଲେ ଅପ୍ରତିଦ୍ୱନ୍ଦୀ ସମ୍ରାଟ । ଓଡ଼ିଶାର ପଞ୍ଚସଖା ଏବଂ ନନ୍ଦକିଶୋର, ଫକୀରମୋହନ, ଗଙ୍ଗାଧର, ଗୋଦାବରୀଶ, ବଡ଼ଜେନା ପ୍ରଭୃତି ସମୀକ୍ଷା କରି ଓଡ଼ିଆ ସମାଲୋଚନା ସାହିତ୍ୟକୁ ସମୃଦ୍ଧ କରିଛନ୍ତି । ସାର୍‌ଙ୍କ ସଙ୍ଗେ କଥା ହେଲାବେଳେ ନିଜକୁ କାହିଁକି ଭାରି ସଙ୍କୁଚିତ ଲାଗେ । ମୁଁ ଭାବେ ଖାଲି ଜ୍ଞାନ ନୁହେଁ ତାଙ୍କ ମାର୍ଜିତ କଥାବାର୍ତ୍ତା ଚାଲିଚଳନ ସବୁଥିରେ ତାଙ୍କଠାରୁ ଶିଖିବା କଥା ରହିଛି ।

ସାର୍ ମର୍ଣ୍ଣିଂ ୱାକ୍ କରନ୍ତି, ମୁଁ ବି କରେ । ସେତିକି ବେଳେ ସବୁ ଦିନେ ଦେଖାହୁଏ । ମୁଁ ନମସ୍କାର କରେ, ସେ ବି ଭଲମନ୍ଦ କଥା ଦିପଦ ପଚାରନ୍ତି । ଯେଉଁ ଦିନ ମୋ ସାନଝିଅ ଆର୍ମିରେ ପ୍ରଥମ ଓଡ଼ିଆ ମହିଳା ଭାବେ ସିଲେକ୍ଟ ହେଲା ଏବଂ ଓଡ଼ିଶାର ସମସ୍ତ ସମ୍ବାଦପତ୍ର ଏବଂ ଟି.ଭିରେ ପ୍ରସାରିତ ହେଲା ସାର୍ ମତେ ବହୁତ ଖୁସିରେ ଅଭିନନ୍ଦନ ଜଣାଇଥିଲେ ସେଇ ମର୍ଣ୍ଣିଂ ୱାକ୍ ବେଳେ । ସାର୍‌ଙ୍କ ପ୍ରତି ମୋର ଧାରଣା ଥିଲା ଯେ ସେ ପୁରୁଣା କାଳିଆ

ବୋଲି । ସେଦିନ କିନ୍ତୁ ସେ ଧାରଣା ମୋର ବଦଳିଗଲା । ମୁଁ ଆସି ଘରେ ସମସ୍ତଙ୍କୁ ସେ କଥା କହିଥିଲି ।

ମୃତ୍ୟୁର ଅଳ୍ପଦିନ ପୂର୍ବରୁ ଥରେ 'ନବରବି'ର ସମ୍ପାଦିକା ସନ୍ଧ୍ୟା ମହାନ୍ତି ମୋତେ କହିଲେ, ଶୁଭ୍ରାମା ଟିକିଏ ନଟବର ସାମନ୍ତରାୟଙ୍କ ଘରକୁ ଯାଆନ୍ତେ, ତାଙ୍କର ସାକ୍ଷାତକାର ଆଣିବା ପାଇଁ । ତମ ଘର ପାଖରେ ତ ତାଙ୍କର ଘର । ମୁଁ ତାଙ୍କୁ ନେଇ ଆସିଲି । ଆମ ସଙ୍ଗେ ଲେଖିକା ନିର୍ମଳା ମହାନ୍ତି ମଧ୍ୟ ଆସିଥିଲେ । ସାର୍‌ଙ୍କ ସଙ୍ଗେ କଥାବାର୍ତ୍ତା କରି ସେମାନଙ୍କର ମଧ୍ୟ ଧାରଣା ବଦଳିଗଲା ଏବଂ ଆମେ କେତେ ସମୟ ପରେ ଗୋଟେ ଗୋଟେ ବହି ନେଇ ଫେରିଲୁ ।

ସାର୍‌ଙ୍କ ମୃତ୍ୟୁଦିନ । ସେଦିନ ସକାଳୁ ସକାଳୁ ଦାଣ୍ଡ ପଟରେ ଗୁଡ଼ାଏ ଗାଡ଼ି ଦେଖି ମନରେ କାହିଁକି ଛନକା ପଶିଲା, ସାର୍‌ଙ୍କ ଦେହ ବେଶୀ କ'ଣ ହେଲାକି ? ଛାତ ଉପରକୁ ଗଲି, କିଛି ଜାଣିପାରିଲିନି, ଭାବିଲି ଯଦି କାହାର ବାହାଘର ହଠାତ୍ ଠିକ୍ ହୋଇ ଯାଇଥାଏ । ଫୋନ୍ ବି କଲିନି, ପୁଅ ବି କହି ପାରିଲାନି -୧୧ଟା ବେଳକୁ ପଡ଼ିଶା ସ୍ୱାଇଁବାବୁଙ୍କ ସ୍ତ୍ରୀ ଯେମିତି ମତେ ସାର୍ ଚାଲିଗଲେ ବୋଲି କହିଛନ୍ତି ମୁଁ ସଙ୍ଗେ ସଙ୍ଗେ ଗଲି । ଚାରିଆଡ଼େ ଲୋକାରଣ୍ୟ,ଦାଣ୍ଡଯାକ ଗାଡ଼ି ଭର୍ତ୍ତି । ସାହିତ୍ୟିକ, ଲେଖକ, ଛାତ୍ର, ସାମ୍ବାଦିକ, ଟି.ଭି, ବନ୍ଧୁ ବାନ୍ଧବ, ସାଇ ପଡ଼ିଶା ସବୁ ଭର୍ତ୍ତି । ସେ ସବୁ ଦେଖିମନେ ହେଲା କଲମର ଶକ୍ତି କେତେ !

ସାର୍ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ତାଙ୍କର ଲେଖନୀ ଚାଳନା ଜାରି ରଖିଥିଲେ । ପୂର୍ବରୁ ଆମେ ବି.ଜେ.ବି. ପାଖରେ ତାଙ୍କୁ ଦେଖିବୁ ସାଇକେଲରେ ଆସୁଥିବାର ।

ହେ, ଯୋଗୀ ଶ୍ରେଷ୍ଠ, ଆଜି ତୁମେ ନାହଁ ସତ, ଜନ୍ମ ହେଲେ ତ ମୃତ୍ୟୁ ସତ୍ୟ- କିନ୍ତୁ ତୁମେ ନ ଥାଇ ମଧ୍ୟ ଓଡ଼ିଶାର ପ୍ରତି ଅଣୁ ପରମାଣୁରେ ବ୍ୟାପ୍ତ ହୋଇ ରହିଛ । ତମର ଲେଖନୀ ତମକୁ ଅମର କରି ରଖିଛି ଏବଂ ଓଡ଼ିଆ ଭାଷା ବଞ୍ଚିଥିବା ଯାଏ ତୁମେ ବଞ୍ଚିଥିବ ।

କବିଙ୍କ ଭାଷାରେ-

''ମନୁଷ୍ୟର ଆତ୍ମା ମରେ ନାହିଁ କେବେ
ଥିବା ଯାଏ ତା'ର ମନର ଆଶା
କବିର ଜୀବନୀ ସରେ ନାହିଁ କେବେ
ଥିବା ଯାଏ ଜାତି ମୁହଁରେ ଭାଷା ।''

ଆଜିର ଏହି ଶ୍ରାଦ୍ଧ ଦିବସରେ, ହେ ଗୁରୁଦେବ, ତୁମକୁ ମୋ ଅନ୍ତରର ଭକ୍ତି, ଶ୍ରଦ୍ଧା ନିବେଦନ କରୁଛି -

ଚାଲିଗଲ ତୁମେ ଚାଲିଗଲ
ଓଡ଼ିଆ ସାହିତ୍ୟ ସମୃଦ୍ଧ କରି
ଧ୍ରୁବ ତାରା ପରି ଜଳୁଥିଲ
ହଠାତ୍ କାହିଁକି ଲିଭିଗଲ କୁହ
ଲିଭିଗଲ ।

*ବନଶ୍ରୀ ନିବାସ*
*୩୧୧୯, ସାମନ୍ତରାପୁର*
*ଭୁବନେଶ୍ୱର-୨*

# କିଛି ସ୍ମୃତି

ଡ଼ାଃ ସରଯୂ ମହାପାତ୍ର

ଆମର ପୂଜ୍ୟ ପିତା ଡଃ ନଟବର ସାମନ୍ତରାୟ ଅଗଷ୍ଟ ମାସ ସତର ତାରିଖ, ୨୦୦୦ ମସିହାର ଏକ ସ୍ୱଚ୍ଛ ସକାଳରେ ସ୍ୱର୍ଗାରୋହଣ କଲେ । ସେ ଦିନର ତିଥି ଥିଲା ଭାଦ୍ରବ ମାସ କୃଷ୍ଣପକ୍ଷ ତୃତୀୟା । ବାପାଙ୍କ ଘରକୁ ଲାଗି ତାଙ୍କ ଝରକା ପାଖରେ ବେଶ୍ ଛନଛନିଆ ଆଉ ହୃଷ୍ଟପୁଷ୍ଟ ହୋଇ ବଢ଼ିଥିବା ଗୋଲାପି ରଙ୍ଗର ମୁଷାଣ୍ଡା ଫୁଲଗଛଟି ମୂଳରୁ ଉପୁଡ଼ି ପଡ଼ିଥିଲା ଠିକ୍ ତା'ର ପୂର୍ବଦିନ । ସେ ଫୁଲଗଛଟିକୁ ସାନଭାଇ ବୁଲୁ ୧୯୮୯ ମସିହାରେ ସେଇଠି ଲଗେଇଥିଲା । ଏପଟେ ମୋର ବ୍ରହ୍ମେଶ୍ୱର ବାଗ୍ ଘରେ ଲଗା ହୋଇଥିବା ଗୋଟିଏ ମନ୍ଦାର ଗଛରୁ ଡ଼ାଳଟିଏ ଫୁଲ ସହିତ ରାତିରୁ କେମିତି ଭାଙ୍ଗି ଯାଇଥିଲା । ପରବର୍ତ୍ତୀ କାଳରେ ସେ ଗଛଟି ସେଠାରେ ଆଉ ରହିପାରିଲା ନାହିଁ । ପୁରାପୁରି ନଷ୍ଟ ହୋଇଗଲା । କଥାରେ ଅଛି ଘରୁ ଯେତେବେଳେ କେହି ମୁରବୀ ଶ୍ରେଣୀୟ ଲୋକ ଇହଧାମରୁ ଯାଆନ୍ତି, ସେତେବେଳେ ଏପରି କିଛି କିଛି ସଙ୍କେତ ମିଳିଥାଏ । ଏହା ବିଶ୍ୱାସ ନ ହେଲେ ବି ସତ୍ୟ ।

ବାପାଙ୍କର ମୁଁ ହେଉଛି ପ୍ରଥମ ସନ୍ତାନ । ତାଙ୍କ ସହିତ ଜଡ଼ିତ ଥିବା ସ୍ମୃତି ଓ ଅନୁଭୂତି ଅନେକ । ସେ ସବୁ ଲେଖି ବସିଲେ ଏକ ବିରାଟ ଉପନ୍ୟାସ ହୋଇଯିବ । ତେବେ କିଛିଟା ଝଲକ ମୋର ଆଜି ମନେପଡୁଛି ।

ବାପା ଯେଉଁ ବର୍ଷ ଘରୋଇ ଭାବରେ ଏମ୍.ଏ. ପାଶ୍ କଲେ ସେଇ ବର୍ଷ ମୋର ଜନ୍ମ ହୋଇଥିବାରୁ ବାପା ପ୍ରଥମେ ମୋର ନାଁ 'ବିଦ୍ୟାବତୀ' ଦେଇଥିଲେ । କାହିଁକି କେଜାଣି ବୋଉର ସେ ନାଁଟି ପସନ୍ଦ ହେଲାନାହିଁ । କାବେରୀ ମାଉସୀଙ୍କର ଜଣେ ସାଙ୍ଗଙ୍କ ନାଁ ଅନୁସାରେ ମୋ ନାଁ ପରେ 'ସରଯୂ' ରଖାଗଲା । ଆମର ପୈତୃକ ସ୍ଥାନ ହେଉଛି ଡେଲାଙ୍ଗର ରାମଚନ୍ଦ୍ରପୁର ଗାଁ । ସେଇ ଗାଁର ଏକ ରକ୍ଷଣଶୀଳ ପରିବାର ହେଉଛି ଆମ ଘର । ସେଇ ଗାଁରେ ହିଁ ମୋର ଜନ୍ମ ହୋଇଥିଲା । ମୋର ଏବେ ବି ମନେ ଅଛି- ଆମ ଘରେ ଗୋଟିଏ 'ଭାଗବତ ଟୁଙ୍ଗୀ' ଥିଲା । ବାପା ଯେତେବେଳେ ବାରିପଦା ଏବଂ କଟକରେ ଥିଲେ, ସେ ସମୟରେ ଖରାଛୁଟି ଦୁଇମାସ ହେଲେ, ଗୋଟିଏ ମାସ ଆମେ ଗାଁରେ ରହୁ ଏବଂ ଆଉ ଗୋଟିଏ ମାସ ଭୁବନେଶ୍ୱରର ଅଜାଙ୍କ ଘରେ ରହୁ । ଛୋଟ ଥିବାବେଳେ ଆଗେ ଯେତେବେଳେ ଡେଲାଙ୍ଗ ଷ୍ଟେସନ୍‌ରେ ପହଞ୍ଚୁ, ସେତେବେଳେ ଆମକୁ ନେବାପାଇଁ ଗାଁରୁ ଶଗଡ଼ ଆସିଥାଏ । ଷ୍ଟେସନ୍‌ରେ ପହଞ୍ଚିବା ମାତ୍ରେ ଆଗେ ସେଠାରେ ମନଭରି ପଇଡ଼ ପାଣି ପିଉ । ତା'ପରେ ଘରକୁ ଯାଉ । ବାପା ଖୁବ୍ ଜୋରରେ ଚାଲନ୍ତି । ସେ ଆଦୌ ଶଗଡ଼ରେ ବସନ୍ତି ନାହିଁ । ଚାଲି ଚାଲି ଘରେ ପହଞ୍ଚନ୍ତି । ତେବେ ବାପା ତାଙ୍କର ଖିଆ ପିଆ ସାରି ଘର ସାମନା ପଟକୁ ରହିଥିବା ଭାଗବତ ଘରେ ଆସି ଶୋଇପଡ଼ନ୍ତି । ବାପାଙ୍କ ସବୁ

ସମୟ ସେଇ ଘରେ ହିଁ କଟେ କହିଲେ ଚଳେ । ସେ ବେଶି କଥାବାର୍ତ୍ତା କାହା ସାଙ୍ଗରେ କରନ୍ତି ନାହିଁ । ପରିବାରର ଅନ୍ୟ ସମସ୍ତେ ବିରକ୍ତ ହୁଅନ୍ତି । ତେବେ ମୁଁ ଆଜି ଭାବୁଛି ସେ ଜଣେ ସାଧକ ଥିବାରୁ ତାଙ୍କୁ ସେଇ ଭାଗବତ ଘରର ଶୂନ୍‌ଶାନ୍ ବାତାବରଣ ବୋଧହୁଏ ବେଶି ଭଲ ଲାଗୁଥିଲା । ସେ ଘରେ ରହିଥିବା ପୋଥି ସବୁକୁ ବାପା ସବୁବେଳେ ବାରମ୍ବାର ପଢୁଥିଲେ ଏବଂ କିଛି ନୂତନ ତଥ୍ୟର ସନ୍ଧାନରେ ସମୟ ନିୟୋଜିତ କରୁଥିଲେ ।

ହଁ, ଆମର ରକ୍ଷଣଶୀଳ ପରିବାରରେ ଗାଁରେ କେହି ଝିଅ ବେଶି ପାଠ ପଢ଼ିନାହାନ୍ତି । ଏପରିକି ବଡ଼ବାପାଙ୍କ ଗୋଟିଏ ଝିଅ (ନୟନ ଅପା) ଖୁବ୍ ଭଲ ପାଠ ପଢୁଥିଲା । ସେ ସପ୍ତମ ଶ୍ରେଣୀରେ ବୃତ୍ତି ପାଇଥିଲା । ତଥାପି ତା'କୁ ଡେଲାଙ୍ଗ ହାଇସ୍କୁଲକୁ ବଡ଼ବାପା ଛାଡ଼ିଲେ ନାହିଁ । କାରଣ ସେ ସ୍କୁଲରେ ପୁଅ ଝିଅ ଏକାଠି ପଢୁଥିଲେ । ଅପାର ପାଠପଢ଼ା ସେଇଠି ଶେଷହେଲା ଏବଂ କିଛି ଦିନପରେ ସେ ବାହା ସାହା ହୋଇ ସଂସାର କଲା ।

ସେଇପରି ରକ୍ଷଣଶୀଳ ପରିବାର ଭିତରେ ରହି ମଧ୍ୟ ବାପାଙ୍କର ଦୂରଦୃଷ୍ଟି ଅନ୍ୟ ପ୍ରକାର ଥିଲା । ପୁଅ ଝିଅ ସମସ୍ତେ ପାଠ ପଢ଼ିବା ଉଚିତ୍ ବୋଲି ବାପା ସବୁବେଳେ ମନେ କରୁଥିଲେ । ଅବଶ୍ୟ ଆଜିକାଲି ଯେପରି ସନ୍ତାନମାନଙ୍କ ପାଇଁ ପିତାମାତା ଏକପ୍ରକାର ନିଜେ ପାଠ ପଢୁଛନ୍ତି, ସେପରି ଅବସ୍ଥା ସେ ସମୟରେ ଆଦୌ ନଥିଲା । ବାପା ୧୯୬୦ ମସିହାରେ ବି.ଜେ.ବି. କଲେଜ, ଭୁବନେଶ୍ୱରକୁ ଆସିଲେ । ତା' ପୂର୍ବରୁ ସେ ରେଭେନ୍‌ସା କଲେଜରେ ଅବସ୍ଥାପିତ ଥିଲେ । ଭୁବନେଶ୍ୱରରେ ପ୍ରଥମେ ବାପାଙ୍କୁ ଛଅ ନମ୍ବରରେ Type V, Qr- 26, ଘରଟି ମିଳିଥିଲା । ଏହା ଗଭର୍ଣ୍ଣର ହାଉସ୍ ପାଖରେ । ସେ କ୍ୱାର୍ଟରର ଆକର୍ଷଣ ଏତେ ବେଶୀ ଯେ, ଆଜି ବି ବେଳେ ବେଳେ ମୁଁ ସେ ଘର ବାଟ ଦେଇ ଚାଲିଯାଏ । ବାପାଙ୍କୁ ତା'ପରେ ବି.ଜେ.ବି. କଲେଜ କାମ୍ପସ୍‌ରେ କ୍ୱାର୍ଟର ମିଳିଲା । ଆମେ ଭାଇଭଉଣୀ ଭାବିଲୁ ବାପା ବୋଧହୁଏ ଛଅ ନମ୍ବର ଛାଡ଼ି କଲେଜ ପାଖକୁ ଚାଲିଯିବେ । କିନ୍ତୁ ତାହା ହେଲାନାହିଁ । ସେ କ୍ୱାର୍ଟରଟି ଅନେକ ଦିନଧରି ଖାଲି ପଡ଼ିଲା । ଅନ୍ୟମାନଙ୍କ କହିବା ସତ୍ତ୍ୱେ ବାପା ନିଜ ମତରେ ଅଟଳ ରହିଥିଲେ । ତାଙ୍କ ମତ ଅନୁସାରେ ଛଅ ନମ୍ବରରେ ଆମେ ଯେଉଁଠି ରହିଥିଲୁ, ସେଠାରେ ପାଠ ପଢ଼ିବା ପାଇଁ ବାତାବରଣ ଖୁବ୍ ଭଲ । ଜଣେ ବିଦ୍ୟାର୍ଥୀର ପଢ଼ାପଢ଼ି ପାଇଁ ସୁସ୍ଥ ବାତାବରଣ ଯେ ନିହାତି ଆବଶ୍ୟକ ସେ କଥା ବାପା ତାଙ୍କର ମତ ଦେଇ ସ୍ପଷ୍ଟ କରି ଦେଇଥିଲେ ।

ବାପା ହେଉଛନ୍ତି ଜଣେ ନିରବଚ୍ଛିନ୍ନ ସାଧକ । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ସାହିତ୍ୟ ସାଧନାରେ ନିଜକୁ ନିୟୋଜିତ କରିଥିଲେ । ସେ ଓଡ଼ିଆ ସାହିତ୍ୟ ଏବଂ ଭାଷାକୁ ଏତେ ବେଶି ଭଲ ପାଉଥିଲେ ଯେ, ତାଙ୍କର ସାହିତ୍ୟିକ ଝିଅ 'ଝୁନୁ' କୋଳରେ ହିଁ ସେ ଶେଷ ନିଃଶ୍ୱାସ ନେଲେ ।

ଆଉ ଗୋଟିଏ କଥା ମନେପଡୁଛି । ବାପା ସବୁବେଳେ ବଣ୍ଡ ପେପରରେ ଲେଖାଲେଖି କରନ୍ତି । ସେ ସମୟର ବଣ୍ଡ ପେପର ଖୁବ୍ ଚିକ୍‌କଣ ଥିଲା । ତାଙ୍କର କଲମ ଏବଂ ପେପର କେହି ଛୁଇଁଦେଲେ ସେ ନିଶ୍ଚୟ ଜାଣିପାରନ୍ତି । ବାପାଙ୍କ ଅନୁପସ୍ଥିତିରେ ବେଳେବେଳେ ମୁଁ ସେ କଲମଟି ନେଇ କାଗଜର ଗୋଟିଏ କୋଣରେ ଛୋଟିଆ ବିନ୍ଦୁଟିଏ ବା ଗାରଟିଏ ପଛପଟରେ ଦେଇଦିଏ । ଏହା ସେ ସମୟର ଚପଳତା ଥିଲା । ବାପା କିନ୍ତୁ ଠିକ୍ ଜାଣିପାରନ୍ତି,

କିଏ ତାକୁ ଛୁଇଁଛି ବୋଲି ପଚାରନ୍ତି ।

ବାପା ଥରେ ଭୁବନେଶ୍ୱର ମ୍ୟୁନିସିପାଲଟି ଡାକ୍ତରଖାନାରେ ଡାକ୍ତରଙ୍କ ସହିତ ପରାମର୍ଶ କରିବାକୁ ଦୁଇଘଣ୍ଟା ଅପେକ୍ଷା କରିଥିଲେ । ସେଇ ଦିନଠାରୁ ସେ ମନେ ମନେ ଚିନ୍ତା କରିଥିଲେ ଘରେ କେହି ଜଣେ ଡାକ୍ତରୀ ପାଠ ପଢ଼ିଲେ ଏ ଅସୁବିଧା ରହିବନି । ବାସ୍ତବିକ ସେ'ୟା ହିଁ ହେଲା । ମୋର 'ମେଡ଼ିସିନ' ବିଷୟ ପ୍ରତି ପ୍ରବଳ ଆଗ୍ରହ ଥିଲା । ମୁଁ ତେଣୁ ସେଇ ପାଠ ପଢ଼ିଲି ।

ବେଶ୍ କିଛି ବର୍ଷ ତଳର କଥା । ଏ ଘଟଣା ୧୯୯୪ ମସିହାର । ବାପାଙ୍କ ସହିତ କଥାବାର୍ତ୍ତା ହେଉ ହେଉ ମୁଁ ତାଙ୍କୁ ପଚାରିଲି "ବଙ୍ଗଳା ସାହିତ୍ୟ କାହିଁକି ଏତେ ଉନ୍ନତ ? ଓଡ଼ିଆ ଭାଷା ଓ ସାହିତ୍ୟକୁ ଓଡ଼ିଶା ବାହାରେ ଏ ପର୍ଯ୍ୟନ୍ତ କାହିଁକି ବେଶି ଲୋକ ଜାଣି ପାରିନାହାନ୍ତି ?"

ବାପା ସେଦିନ ଉତ୍ତରରେ କହିଥିଲେ, "ବଙ୍ଗଳା ସାହିତ୍ୟରେ ମାତ୍ରା ପ୍ରୟୋଗ କରିବାର ଏକ ନିର୍ଦ୍ଦିଷ୍ଟ ନିୟମ ଅଛି । ଉଭୟ କଥିତ ବଙ୍ଗଭାଷା ଏବଂ ମୁଦ୍ରିତ ଭାଷାରେ କୌଣସି ବନାନ୍ ଭୁଲ ହୋଇଗଲେ ତାକୁ ପ୍ରତିବାଦ କରିବା ପାଇଁ ଜନ ସଚେତନତା ରହିଛି । ଫଳରେ ସେଠି ଭୁଲ ସାହିତ୍ୟ ରଚନା କରିବା ବା କହିବା ପୂର୍ବରୁ ଜନସମାଜ କିଛି ସମୟ ଚିନ୍ତା କରନ୍ତି । କିନ୍ତୁ ଓଡ଼ିଶାରେ ଓଡ଼ିଆ ସାହିତ୍ୟରେ ଯେତେ ମାତ୍ରାରେ ବନାନ୍ ଓ ଶବ୍ଦ ପ୍ରୟୋଗରେ ଭୁଲ ବଢ଼ି ବଢ଼ି ଚାଲିଛି- ତାହା ସମସ୍ତେ ଦେଖି ବି ନ ଦେଖିଲା ପରି ନୀରବ ।"

କେଉଁ ନିର୍ଦ୍ଦିଷ୍ଟ ଫର୍ମୁଲାରେ ଓଡ଼ିଆ ଭାଷା ସାହିତ୍ୟରେ ମାତ୍ରା ପ୍ରୟୋଗ କରାଯିବା ଉଚିତ୍ ତାହା ମୁଁ ଜାଣିବା ପୂର୍ବରୁ ବହୁତ ବିଳମ୍ବ ହୋଇଗଲା । ମୋର ବ୍ୟକ୍ତିଗତ କର୍ମମୟ ଜୀବନ ଭିତରୁ ମୁଁ ସମୟ ପାଇଲିନି ତାଙ୍କ ସହିତ ଏ ବିଷୟରେ ଆଉ ବେଶି କଥାବାର୍ତ୍ତା ହେବା ପାଇଁ ।

ଚାହୁଁ ଚାହୁଁ ବର୍ଷଟିଏ ଅତିକ୍ରାନ୍ତ ହୋଇଗଲାଣି ବାପା ଆମକୁ ଛାଡ଼ି ଚାଲିଯିବାର । ବାପା ଦୀର୍ଘ ବୟାଅଣୀ ବର୍ଷ ପର୍ଯ୍ୟନ୍ତ ଏକ ସରଳ, ନିରାଡ଼ମ୍ବର ଜୀବନ ଯାପନ କଲେ । ବାପାଙ୍କ ଜୀବନଶୈଳୀକୁ ମୁଁ ଯେତେବେଳେ ଖୁବ୍ ଗଭୀର ଭାବରେ ଚିନ୍ତାକରେ, ସେତେବେଳେ ମନେହୁଏ -"ସାହିତ୍ୟ ହେଉଛି ସବୁଠାରୁ ଉତ୍ତମ ପୁଷ୍ଟିକର ଖାଦ୍ୟ । ଏହି ପୌଷ୍ଟିକ ଖାଦ୍ୟ ଜଣେ ମନୁଷ୍ୟର ମାନସିକ, ଶାରୀରିକ ତଥା ବୌଦ୍ଧିକ ସ୍ୱାସ୍ଥ୍ୟ ବଜାୟ ରଖିବା ପାଇଁ ନିହାତି ଜରୁରୀ ।"

ଆଜି ତାଙ୍କର ପ୍ରଥମ ଶ୍ରାଦ୍ଧ ବାର୍ଷିକୀରେ ସେଇ ମହାନ୍ ଆତ୍ମାର ସଦ୍‌ଗତି ନିମନ୍ତେ ମୋର ବିନମ୍ର ପ୍ରଣତି ଜଣାଉଛି ।

*ଆଶୀର୍ବାଦ, ପ୍ଲଟ ନଂ-୧,*
*ବ୍ରହ୍ମେଶ୍ୱର ବାଗ୍, ଭୁବନେଶ୍ୱର-୨*

# କୀର୍ତ୍ତି ଅକ୍ଷର ସମ୍ବନ୍ଧାଃ

# ସ୍ଥିରାଃ ଭବତି ଭୂତଳେ

*ଡଃ ଚିତ୍ତ ସାମନ୍ତ*

ଓଡ଼ିଆ ସାହିତ୍ୟ ଗବେଷଣା ଓ ସମାଲୋଚନାକୁ ଏକ ବୈଜ୍ଞାନିକ ବିଶ୍ଳେଷଣାତ୍ମକ ଐତିହାସିକ ଓ ଗାଣିତିକ ମୂଲ୍ୟବୋଧ ଆଧାରିତ ଭିତ୍ତିଭୂମି ପ୍ରଦାନ କରିଥିବା ନିର୍ଭୀକ ସ୍ୱାଭିମାନୀ ଓ ସାଲିସ୍ ବିହୀନ ବ୍ୟକ୍ତି ଡଃ ନଟବର ସାମନ୍ତରାୟ ଜଣେ ବନ୍ଧୁବତ୍ସଳ, ଛାତ୍ରାନୁରାଗୀ ଓ ଅନନ୍ୟ ସାଧାରଣ ବ୍ୟକ୍ତିତ୍ୱର ଅଧିକାରୀ ଭାବରେ ଶିକ୍ଷକ ସମାଜ ଓ ସାହିତ୍ୟିକମାନଙ୍କ ମଧ୍ୟରେ ଶ୍ରଦ୍ଧାର ଅଧିକାରୀ ଥିଲେ । ଏହି ନିରଳସ ସାହିତ୍ୟ ସାଧକ, ଅଧ୍ୟୟନନିଷ୍ଠ ସମାଲୋଚକ ତଥା ସମାଲୋଚନା ସାହିତ୍ୟର ମଙ୍ଗୁଆଳ ନିଜ ଜୀବନର ନୌକା ବାହିବା ଆରମ୍ଭ କରିଥିଲେ ୧୯୩୬ ମସିହାରୁ । ସଂଗ୍ରାମ ଓ ସଂଘାତରୁ ତାଙ୍କର ଦୃପ୍ତ ପଦଯାତ୍ରା ।

ପୁରୀ ଜିଲ୍ଲା ଡେଲାଙ୍ଗ ବ୍ଲକର ରାମଚନ୍ଦ୍ରପୁର ଗାଁର ଜଣେ ସଦ୍ୟ ମାଟ୍ରିକ୍ ପାସ୍ କରିଥିବା ଯୁବକ, କଲେକ୍ଟରେଟରେ ସହଜରେ ମିଳୁଥିବା କିରାଣୀ ଚାକିରିର ସୁଯୋଗକୁ ହାତଛଡ଼ା କରି, ମାତ୍ର ଖଣ୍ଡେ ଟିକେଟ କିଣିବାର ଅର୍ଥ ଯୋଗାଡ଼ କରି ଉଚ୍ଚଶିକ୍ଷାର ମୋହ ଓ ଆକାଂକ୍ଷାର ସହ ଯାତ୍ରା ଆରମ୍ଭ କରିଦେଲେ, ସୁଦୂର ବନାରସ ସହରକୁ । ବନାରସ ସହର ଯେ କେତେ ଦୂରରେ ସେ ବିଷୟରେ ଧାରଣା କେବଳ ହାତରେ ଧରିଥିବା ମାନଚିତ୍ରରେ । ପୁରୀରୁ ଟାଟା, ବନାରସ - ବାସ୍ ଏତିକି ରାସ୍ତା ! ଅତିକ୍ରାନ୍ତ କଲାପରେ ଆରମ୍ଭ ଏକ ଉଜ୍ଜ୍ୱଳ ଭବିଷ୍ୟତର ଉନ୍ମୁକ୍ତ ମାର୍ଗ । ଏହି ଆତ୍ମବିଶ୍ୱାସ ଉଚ୍ଚଶିକ୍ଷା ପ୍ରାପ୍ତିର ଉକ୍ତଣ୍ଠା ଟାଣିନେଲା ଯୁବକ ନଟବରଙ୍କୁ । ହେଲେ ଭାଗ୍ୟର ବିଡ଼ମ୍ବନା । ଟାଟାରୁ ବନାରସ ଯାଉଥିବା ଟ୍ରେନ୍‌ଟି ଅଟକି ଗଲା 'ଗୋମ'ଠାରେ କୌଣସି ଅନିବାର୍ଯ୍ୟ କାରଣବଶତଃ । ଆଉ ଆଗକୁ ଯିବାର ନାହିଁ । ସବୁ ଯେମିତି ଓଲଟ ପାଲଟ ହୋଇଗଲା । ପକେଟରେ ପଇସା ନାହିଁ ଦେହରେ ଶକ୍ତି ନାହିଁ । ଶୂନ୍ୟତାର ବଳୟ ମଧ୍ୟରେ ଛଟପଟ ହେଉଥିବା ଯୁବକଙ୍କୁ ସାହାଯ୍ୟ କରିବା ପାଇଁ ଆଗେଇ ଆସିଲେ ଜଣେ ସହଯାତ୍ରୀ । ଭରସା ଦେଲେ, ସାଙ୍ଗରେ ନେଇଗଲେ ବନାରସକୁ ।

ବନାରସ ସହର । ଦୀର୍ଘ କୋଡ଼ିଏ ଦିନ କାଳ ନିରାଶ୍ରୟ ଭାବେ ବୁଲିଲା ପରେ କାମାକ୍ଷା ଲେନ୍‌ରେ ଏକ ଛାତ୍ର ଆଶ୍ରମରେ ମିଳିଲା କର୍ମଭିତ୍ତିକ ଆଶ୍ରୟ । ଉଚ୍ଚଶିକ୍ଷା ଲାଭ କରିବାର ପ୍ରଥମ ସୁଯୋଗ - ଏକ ସଂଗ୍ରାମରତ ଜୀବନର ଶୁଭାରମ୍ଭ ।

୧୯୩୯ରେ ବନାରସରୁ ଆଇ.ଏ.ପାସ୍ କରି ବାହୁଡା ଯାତ୍ରା ଜନ୍ମସ୍ଥଳକୁ । ୧୯୪୧ରେ ବି.ଏ. ୧୯୪୨ରେ ଡି.ଇଡି. । କର୍ମମୟ ଜୀବନର ଅୟମାରମ୍ଭ । ଓଡ଼ିଶାର ବିଭିନ୍ନ ଉଚ୍ଚ ବିଦ୍ୟାଳୟରେ ଗଣିତ ଓ ଭୂଗୋଳ ଶିକ୍ଷକ ଭାବରେ କର୍ମରତ । ତଥାପି ଅଧିକ

ଶିକ୍ଷାଲାଭ କରିବାର ଉଚ୍ଚାଭିଳାଷ ରଖିଥାନ୍ତି ଶିକ୍ଷକ ନଟବର । ୧୯୪୬ରେ ସାଂସାରିକ ଜୀବନ ଆରମ୍ଭ । ୧୯୪୮ରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଓଡ଼ିଆରେ ଏମ୍.ଏ. ଓ ୧୯୬୨ରେ "ଓଡ଼ିଆ ସାହିତ୍ୟର ଇତିହାସ" ସନ୍ଦର୍ଭ ଉପରେ ଡକ୍ଟରେଟ୍ ।

ଓଡ଼ିଆରେ ଏମ୍.ଏ. ପାସ୍ କରିଥିଲେ ମଧ୍ୟ ୧୯୫୦ ମସିହା ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟ ପ୍ରତି ବିଶେଷ ମୋହ ନଥାଏ । ୧୯୪୯ରେ ଅଧ୍ୟାପକ ଭାବେ ଯୋଗ ଦେଲେ ବାରିପଦା କଲେଜରେ । ଏଠାରେ ପରିଚୟ ହୁଏ ଅନ୍ୟ ଏକ ସାଧକ, ଦାର୍ଶନିକ ଓ ବନ୍ଧୁବତ୍ସଳ ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟଙ୍କ ସହ । ସେ ହେଲେ ଅଧ୍ୟାପକ ନଟବର ସାମନ୍ତରାୟଙ୍କ ପାଇଁ ପ୍ରେରଣାର ଉତ୍ସ ।

ନିଜକୁ ଜଣେ ଗବେଷକ ଭାବରେ ପରିଚିତ କରାଇବାର ଅଭିଳାଷ ରଖି, ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟଙ୍କ ପ୍ରେରଣା ଓ ଦିଗ୍‌ଦର୍ଶନକୁ ପାଥେୟ କରି ଅଧ୍ୟାପକ ନଟବର ସାମନ୍ତରାୟ ନିଜକୁ ପ୍ରସ୍ତୁତ କରିବାରେ ଲାଗିଲେ । ବର୍ଣ୍ଣବୋଧ, ବ୍ୟାକରଣ, ସଂସ୍କୃତ ଅଳଙ୍କାର ଶାସ୍ତ୍ର ଆଦି ଅଧ୍ୟୟନ ମାଧ୍ୟମରେ ଆତ୍ମପ୍ରସ୍ତୁତି, ଝଞ୍ଜାଳମୟ ପାରିବାରିକ ଜୀବନ ମଧ୍ୟରେ ।

୧୯୭୬ରେ ପ୍ରକାଶିତ "ମୁଁ କିପରି ଗବେଷଣା କଲି" ପୁସ୍ତକରେ ଡଃ ନଟବର ସାମନ୍ତରାୟ ଉଲ୍ଲେଖ କରିଛନ୍ତି ଯେ, 'ପିଏଚ୍.ଡ଼ି' ଥେସିସ୍ ଲେଖାରେ ମୋର ବ୍ୟକ୍ତିଗତ ଅଧ୍ୟୟନ, ଅଧ୍ୟବସାୟ ଯେତେ ଥାଉନା କାହିଁକି, ଏଠାରେ ସ୍ପଷ୍ଟ ସ୍ୱୀକାର କରି ନେଉଛି, ସେଇ ସମଗ୍ର ଲେଖା ଭିତରେ ଥିବା ଦୃଷ୍ଟି ଅନ୍ୟ ଜଣଙ୍କର...ତାଙ୍କ(ପରମାନନ୍ଦ ଆଚାର୍ଯ୍ୟ) ସଂସ୍ପର୍ଶରେ ଆସି ମୁଁ ତାଙ୍କଠାରୁ ଏ ଦୃଷ୍ଟିକୋଣଟିକୁ ଆହରଣ କରିଥିଲି ମାତ୍ର...।'

ଉଭୟଙ୍କ ମଧ୍ୟରେ ମୈତ୍ରୀ ବନ୍ଧନ ଦୃଢ଼ୀଭୂତ ହେଲା । ଆଚାର୍ଯ୍ୟ ମହାଶୟଙ୍କ ପୁସ୍ତକାଳୟରୁ ବହୁ ଦୁର୍ମୂଲ୍ୟ ଓ ଦୁର୍ଲଭ ପୁସ୍ତକ, ପତ୍ରପତ୍ରିକା ପାଠ କରିବାର ସୁଯୋଗ ମିଳିଲା ଅଧ୍ୟାପକ ନଟବରଙ୍କୁ । ଲେଖା ହେଲା "ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩ରୁ ୧୯୨୦) । ୧୯୫୧ରୁ ଆରମ୍ଭ ହୋଇ ୧୯୬୨ରେ ଶେଷ ହେଲା ।

୧୮୦୩ ରୁ ୧୯୨୦ ମଧ୍ୟରେ ଯେଉଁ ସବୁ ସ୍ରଷ୍ଟାମାନେ ଓଡ଼ିଆ ସାହିତ୍ୟକୁ ସବଳ ଓ ସମୃଦ୍ଧ କରିଥିଲେ ସେମାନଙ୍କୁ ବିଚାରକୁ ନେଇ ନଥିଲେ ଗବେଷକ ନଟବର ସାମନ୍ତରାୟ । ସେ କେବଳ ଆଧୁନିକ ଓଡ଼ିଆ ସାହିତ୍ୟର ବିଶ୍ଲେଷଣ କରି ଆଗାମୀ ପିଢ଼ି ପାଇଁ ଗବେଷଣାର ନୂତନ ମାର୍ଗ ପ୍ରଦର୍ଶନ କରିଥିଲେ । ଏହାର ପଦ୍ଧତି ଓ ପ୍ରକରଣ ନୂଆ । ତଥ୍ୟ ବିଶ୍ଲେଷଣ ଓ ସଂଶ୍ଳେଷଣ ନୂଆ । ଚିନ୍ତା ବିନ୍ୟାସ ଓ ଅଭିବ୍ୟକ୍ତି ନୂଆ; ବ୍ୟାଖ୍ୟା ନୂଆ । ଆଧୁନିକ ସାହିତ୍ୟର ଗବେଷଣା କ୍ଷେତ୍ରରେ କିପରି ପତ୍ରପତ୍ରିକା ଅଧ୍ୟୟନ କରାଯିବ; କିପରି ଦୁର୍ଲଭ ରିପୋର୍ଟ ଓ ଦଲିଲ ସଂଗ୍ରହ କରାଯିବ; ମୌଳିକ କଳାର କାଳ କିପରି ନିରୂପଣ କରାଯିବ ଇତ୍ୟାଦି ବିଷୟରେ ମାର୍ଗ ଦର୍ଶନ କରିଥିଲେ । ସମୟର ପ୍ରାଣ ସ୍ପନ୍ଦନଟିକୁ ସେ ଧରିପାରିଥିଲେ ଓ ଧରାଇ ପାରିଥିଲେ ଏଇ ଆଚାର୍ଯ୍ୟ ଜଣକ ତାଙ୍କ ଶିକ୍ଷାର୍ଥୀମାନଙ୍କୁ ।

ଡ଼ଃ ନଟବର ସାମନ୍ତରାୟଙ୍କ ନିଜ ଭାଷାରେ, "ଆଲୋଚନା ଓ ଗବେଷଣାର ଥାଏ ମୁଖ୍ୟତଃ ଦୁଇଟି ପ୍ରଧାନ ଆବଶ୍ୟକତା । ପ୍ରଥମ, ଅଧ୍ୟବସାୟ ବଳରେ ନୂତନ ତଥ୍ୟ ବା ଉପାଦାନର ଆବିଷ୍କାର । ଦ୍ୱିତୀୟ, ଏଇ ଆବିଷ୍କୃତ ତଥ୍ୟର ଯଥାର୍ଥ ଅଧ୍ୟୟନ ଓ ବିଚାର ଭିତ୍ତିରେ ବିଷୟର ତତ୍ତ୍ୱ -ନିରୂପଣ ଅଥବା ସତ୍ୟର ଦ୍ୱାର ଉଦ୍‌ଘାଟନ । ତେଣୁ ସମାଲୋଚନା

ଓ ଗବେଷଣାର ପ୍ରାରମ୍ଭରୁ ହିଁ ଏ ଦୁଇଟି ଆବଶ୍ୟକତା ଉପରେ ବିଶେଷ ପ୍ରାଧାନ୍ୟ ଦେଇ ମୁଁ ଯେଉଁ ସବୁ ଆଲୋଚନା କଲି, ସେତେବେଳେ ପାଠକଙ୍କ ଦ୍ୱାରା ତାହା ପ୍ରଶଂସିତ ହୋଇଥିଲା । ସେଥିରେ ନୂତନ ମାର୍ଗ ସ୍ୱତଃ ଉନ୍ମୋଚିତ ହୋଇଥଲା, ଯାହା ମୂଳତଃ ସ୍ୱତନ୍ତ, ବୈଜ୍ଞାନିକ ଓ ସର୍ବାଂଶରେ ଯୁକ୍ତିସିଦ୍ଧ ବୋଲି ମତପ୍ରକାଶ ପାଇଥିଲା ।''

ଅର୍ଦ୍ଧଶତାବ୍ଦୀ ବ୍ୟାପୀ (୧୯୪୯ରୁ ୧୯୯୯) ନିରନ୍ତର ପ୍ରଚେଷ୍ଟା କରି ଚାଲିଥିଲେ ଡଃ ନଟବର ସାମନ୍ତରାୟ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିବାରେ । ଏହି ଦୀର୍ଘ ସମୟ ମଧ୍ୟରେ ତାଙ୍କର ଅଦମନୀୟ ପ୍ରବୃତ୍ତି ଆତ୍ମପ୍ରକାଶ କଲା ଅଜସ୍ର ଲେଖା ମଧ୍ୟରେ । ପ୍ରଥମ ପ୍ରକାଶିତ ସମାଲୋଚନା କୃତି 'ବ୍ୟାସକବି ଫକୀର ମୋହନ'(୧୯୫୭) ଭିତ୍ତିରେ କବି ସମୀକ୍ଷକ ଡଃ ମାୟାଧର ମାନସିଂହ ସେ କାଳର ନଟବର ସାମନ୍ତରାୟଙ୍କୁ 'ତରୁଣ ଗବେଷକ' ଆଖ୍ୟା ଦେବା ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ । ୧୯୫୯ରେ ପ୍ରକାଶିତ 'ଆଧୁନିକ ଓଡ଼ିଆ ସାହିତ୍ୟର ଦିଗ୍‌ଦର୍ଶନ' ଓ 'ଓଡ଼ିଆ ବୈଷ୍ଣବ ସାହିତ୍ୟ' ୧୯୬୦ରେ ପ୍ରକାଶିତ 'ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ', 'ଗଙ୍ଗାଧର ସାହିତ୍ୟ ସମୀକ୍ଷା', 'ସାହିତ୍ୟାଦର୍ଶ', ଏବଂ 'ରାଧାନାଥ ଓ ଚିଲିକା କାବ୍ୟ', ବହୁଚର୍ଚ୍ଚିତ 'ଓଡ଼ିଆ ସାହିତ୍ୟର ଇତିହାସ' ସନ୍ଦର୍ଭ ପ୍ରକାଶନ ପୂର୍ବରୁ ତାଙ୍କୁ ଜଣେ ସମାଲୋଚକ ଭାବରେ ପ୍ରତିଷ୍ଠିତ କରାଇ ପାରିଥିଲେ । ତାଙ୍କ ଗବେଷଣାରେ ମୌଳିକତା ଓ ବିଶେଷତ୍ୱ ପରିସ୍ଫୁଟ ହୋଇଥିଲା ୧୯୬୩ରେ ପ୍ରକାଶିତ 'ରାଧାନାଥ ଓ ଚିଲିକା କାବ୍ୟ', ଓ 'ଗଚ୍ଚ ନୁହେଁ ସମାଲେଚନା' ଗ୍ରନ୍ଥ ଦୁଇଟିରେ । ସେହି ବର୍ଷ ପ୍ରକାଶ ଲାଭ କଲା ଡଃ ସାମନ୍ତରାୟଙ୍କ ପିଏଚ୍.ଡି. ନିବନ୍ଧ 'ଓଡ଼ିଆ ସାହିତ୍ୟର ଇତିହାସ' (୧୮୦୩ ରୁ ୧୯୨୦) ଏବଂ ପରବର୍ଷ ଆତ୍ମପ୍ରକାଶ କଲା 'ଆଧୁନିକ ଓଡ଼ିଆ ସାହିତ୍ୟର ଭିତ୍ତିଭୂମି' ଓ 'ନନ୍ଦ କିଶୋର ସାହିତ୍ୟ ସମୀକ୍ଷା' । ୧୯୭୦ ପରଠାରୁ ଡଃ ସମାନ୍ତରାୟଙ୍କର ଆଉ ୧୨ଟି ପୁସ୍ତକ ପ୍ରକାଶିତ ହୋଇଛି । ଏହି ସବୁ ବଳିଷ୍ଠ ରଚନା ତାଙ୍କୁ ସଂସ୍ଥାପିତ କଲା ପ୍ରତିଷ୍ଠାର ମହାର୍ଘ ପାହାଚରେ ।

ଆଜି ଆଉ ସେ ନାହାନ୍ତି ସତ, ମାତ୍ର ଓଡ଼ିଆ ଭାଷା ସାହିତ୍ୟରେ କର୍ମରତ ପ୍ରତ୍ୟେକ ଅଧ୍ୟାପକ, ସ୍ରଷ୍ଟା, ସମୀକ୍ଷକ ଓ ଶିକ୍ଷାର୍ଥୀ ଡଃ ନଟବର ସାମନ୍ତରାୟଙ୍କୁ ସମାଲୋଚନା ସାହିତ୍ୟର ଶୀର୍ଷସ୍ତମ୍ଭ ଭାବରେ ସମ୍ମାନିତ କରୁଛନ୍ତି । ବହୁ ସମ୍ମାନର ଅଧିକାରୀ ଡଃ ସାମନ୍ତରାୟଙ୍କୁ ଓଡ଼ିଶା ସାହିତ୍ୟ ଏକାଡେମୀ ୧୯୫୫ ମସିହାରେ ସର୍ବୋଚ୍ଚ ସାରସ୍ୱତ ସମ୍ମାନ 'ଅତିବଡ଼ୀ ଜଗନ୍ନାଥ ଦାସ ପୁରସ୍କାର' ପ୍ରଦାନ କରି, 'ସେ ସ୍ୱକୀୟ ସୃଷ୍ଟି ଓ ସାଧନାର ଦୀପ୍ତିରେ ଭାସ୍ୱର । ତାଙ୍କୁ ସମ୍ମାନିତ କରି ଏକାଡେମୀ ନିଜକୁ ଗୌରବାନ୍ୱିତ ମନେକରୁଛି ।' ବୋଲି ସ୍ୱୀକାର କରିଥିଲା ।

୨୦୦୦ ଅଗଷ୍ଟ ୧୭ ତାରିଖ ସକାଳଠାରୁ ଡଃ ନଟବର ସାମନ୍ତରାୟଙ୍କ ସୃଷ୍ଟିଶୀଳ ଲେଖନୀ ସବୁଦିନ ପାଇଁ ସ୍ଥିର ହୋଇଗଲା ।

*୭୯୫, ମଳୟ ବିହାର*
*ଭୁବନେଶ୍ୱର - ୭୫୧୦୧୦*

# ସ୍ମୃତି ତ କଦାପି ନୁହେଁ ଫିଙ୍ଗିବାର

*ଡଃ ଅଶୋକ କୁମାର ମହାନ୍ତି*

ସମ୍ପର୍କର ଖିଅଟିଏ । ଏ ଡଃ ନଟବର ସାମନ୍ତରାୟଙ୍କ ସହିତ ପାରିବାରିକ ସମ୍ପର୍କରେ ଯୋଡ଼ି ହୋଇଯିବା ପରେ ସେ ଲାଗନ୍ତି ଅତି ଆପଣାର । ଆଉ କାହାପାଇଁ ନ ହୁଅନ୍ତୁ ପଛକେ, ମୋ ପାଇଁ ଏକାନ୍ତ ନିଜର, ସରଳ, ନିରଳସ ମଣିଷଟିଏ । ଜୀବନର ଶେଷଦିନ ପର୍ଯ୍ୟନ୍ତ ନା' ପଢ଼ା ତାଙ୍କୁ ଛାଡ଼ିଛି, ନା' ସେ ପଢ଼ାକୁ ଛାଡ଼ିଛନ୍ତି । ପଢୁଥିବେ ଯେ ପଢୁଥିବେ, ଗଲା ଆସିଲା କାହାରି ପ୍ରତି ନଜର ନଥିବ । କିନ୍ତୁ ମୁଁ ଯାଇ ପହଞ୍ଚିଗଲେ କଥା ନିଆରା ! ପଢ଼ାଘରୁ ନଇଁ ନଇଁ ବାହାରି ଆସି କୁଶଳ ପଚାରିବେ । ଭଲ ମନ୍ଦର ହିସାବ ବୁଝିବେ । କିଛି ଉପଦେଶ ସାଙ୍ଗକୁ କିଛି ଅନୁଶାସନର ସ୍ୱରରେ ତାଗିଦ୍ କରିବେ । ମୁରବୀ ପରି ମୁରବୀ ଜଣେ । ହୋଇ ପାରନ୍ତି ସେ' ଓଡ଼ିଆ ସାହିତ୍ୟର ଭୀଷ୍ମ ପିତାମହ କିନ୍ତୁ ତାଙ୍କ ଭିତରର ଦରଦୀ ମଣିଷଟିକୁ ଯେ ଚିହ୍ନିଛି, ସେ କେବଳ ଜାଣିଛି, ନହେଲେ ସାଧାରଣରେ ବେଶ୍ ମାର୍ଜିତ ଓ ଗମ୍ଭୀର । ଗମ୍ଭୀରତା ହିଁ ତାଙ୍କର ବ୍ୟକ୍ତିତ୍ୱ । ଯେ ଥରେ ତାଙ୍କ ପଢ଼ାଘରକୁ ଛୁଇଁଛି, ସେ ହିଁ କେବଳ ତାଙ୍କୁ ଛୁଇଁବାର ଆନନ୍ଦ ଅନୁଭବ କରିଛି କିନ୍ତୁ କାହା ଭାଗ୍ୟରେ ତାହା ଘଟିଛି କେଜାଣି । ଲେନସ୍‌ରେ ପାଠ ମାନଙ୍କୁ ଧରି ରଖିବାର ଯେଉଁ ଅକ୍ଲାନ୍ତ ପ୍ରୟାସ, ଯେ ଦେଖିଛି ସେ ଜାଣିଛି । ଶେଷ ମୂହୁର୍ତ୍ତ ପର୍ଯ୍ୟନ୍ତ ପଢ଼ାଘରେ ବସି ରହି ପାଠପଢ଼ା ଯେ ଏକ ତପସ୍ୟା ତାହା ତାଙ୍କ ଛଡ଼ା ଅନ୍ୟ କେହି ବୁଝି ପାରି ନଥିଲେ । ତପସ୍ୱୀ ତପସ୍ୟା ମାଧ୍ୟମରେ ବ୍ରହ୍ମଦର୍ଶନ କଲାଭଳି ସେ ବିଦ୍ୟାବ୍ରହ୍ମ ପ୍ରାପ୍ତି ନିମନ୍ତେ ତାଙ୍କ ପ୍ରଚେଷ୍ଟା । ଜୀବନର ଅନ୍ତିମ କ୍ଷଣ ପର୍ଯ୍ୟନ୍ତ ଜାରି ରଖିଥିଲେ । ସମ୍ପର୍କ କହିଲେ ତାଙ୍କ ଦୃଷ୍ଟିରେ କେବଳ ଜ୍ଞାନକୁ ବୁଝାଏ । ସାମାଜିକ ଓ ପାରିବାରିକ ସମ୍ପର୍କର ବହୁ ଉର୍ଦ୍ଧ୍ୱରେ ରହି ସେ କେବଳ ଜ୍ଞାନ ବ୍ରହ୍ମକୁ ଆୟତ କରିଥିଲେ । ଦୃଢ଼ ବ୍ୟକ୍ତିତ୍ୱ ବୋଧ, ଅଖଣ୍ଡ ଆତ୍ମପ୍ରତ୍ୟୟ ମଧ୍ୟରେ ଆତ୍ମ ଅଭିମାନ ସାଙ୍ଗକୁ ସ୍ୱାଭିମାନୀ ଜ୍ଞାନୀ ମଣିଷଟିଏ ଭାବରେ ତାଙ୍କର ଆଚରଣ ଓ ସୃଜନୀଶକ୍ତି ଓଡ଼ିଶାବାସୀଙ୍କୁ ଚମତ୍କୃତ କରିଛି । ମହାପ୍ରୟାଣର ସ୍ମୃତିଚାରଣ ଅବସରରେ ତାଙ୍କର ମହନୀୟ ଆଦର୍ଶ, ମାନବବାଦୀ ଦୃଷ୍ଟିଭଙ୍ଗୀ, ଜ୍ଞାନପିପାସା ତଥା ସରଳ, ନିରାଡ଼ମ୍ବର ଜୀବନଧାରା ଆମ ପାଇଁ ପଥ ପ୍ରଦର୍ଶକ ହେଉ ।

*ପ୍ରାଣୀବିଜ୍ଞାନ ଅଧ୍ୟାପକ,*
*ନୟାଗଡ଼ କଲେଜ, ନୟାଗଡ଼*

# ମୋ ମନର ଅଭିବ୍ୟକ୍ତି

*ସବିତା ସାମନ୍ତରାୟ*

୨୦୦୦ ମସିହା ଜୁନ୍ ୨୧ ତାରିଖ ବୁଧବାର ସକାଳ । ବାପା ମୋତେ କହିଲେ- 'ତୁ ପରା ୨୩ରେ ସ୍କୁଲ ଚାଲିଯିବୁ । କାଲି ଗୁରୁବାର, ଆଉ ମୋ ହାତ ଗୋଡ଼ର ନଖ କାଟିବୁ କେବେ ?' 'ହଁ କାଟି ଦେବି' କହି କିଛି କ୍ଷଣ ପରେ ଦାଣ୍ଡପିଣ୍ଡାର ସିମେଣ୍ଟ ବେଞ୍ଚ୍ ଉପରେ ବସି ନଖ କାଟୁଥିବା ବେଳେ ସବୁଥର ପରି ସେଦିନ ମଧ ସେଇ ଏକା କଥାର ପୁନରାବୃତ୍ତି ହେଲା । ମୁଁ ନଖ କାଟିବା ସମୟରେ ଯେଉଁ ଆଙ୍ଗୁଠି ସାହାଯ୍ୟରେ କାଟେ ତାକୁ ସେ ଜାବୋଡ଼ି ଧରନ୍ତି ବୋଧହୁଏ ଭୟ ହେତୁ । ସବୁଥର ପରି ତେଣୁ ମୁଁ କହିଲି, 'ତୁମେ ତ ସବୁବେଳେ ଏମିତି ମୋ ଆଙ୍ଗୁଠିକୁ ଜାବୋଡ଼ି ଧରୁଛ, ମୁଁ କାଟିବି କିପରି ?' ବାସ୍, ଏତିକିବେଳେ ବାଧ ସନ୍ତାନ ପରି ସେ ମୁହଁକୁ ଥରେ ଅନେଇ ପୁଣି ଧୀରସ୍ଥିର ହୋଇ ବସିଲେ ଶେଷଯାଏ । ସେ ମୁହଁ ଏବେ ବି ମୁଁ ଭୁଲି ପାରୁନି । ୨୩ ଜୁନ୍ ଶୁକ୍ରବାର କୋରାପୁଟ ଯିବାର ଦିନ । ବାପାଙ୍କୁ ମୁଁ ଯେତେବେଳେ ତାଙ୍କ ଅତି ଆଦରର ପଢ଼ା ଟେବୁଲ ପାଖରେ ପ୍ରଣାମ କଲି ଆଶୀର୍ବାଦ ଦେଇ କେବେ ପୁଣି ଆସିବୁ ବୋଲି ପ୍ରଶ୍ନ କଲେ ! ଦଶହରା ଛୁଟିରେ ପୁଣି ଆସିବି- କହିଲି ମୁଁ ।

ପରିସ୍ଥିତିର ଚାପରେ ମାସାଧିକ ମୁଁ ଘର ସହିତ ଡାକ କିମ୍ବା ଫୋନ୍ ଜରିଆରେ ସମ୍ପର୍କ ରଖିପାରି ନଥିଲି । ହଠାତ୍ ମୋ ମନର ସମସ୍ତ ବ୍ୟସ୍ତତାକୁ ଦୂରକରି ଡାକବାଲା ଅଗଷ୍ଟ ୩ ତାରିଖ (ଯେଉଁ ଦିନ ବାପାଙ୍କୁ ରକ୍ତହୀନତା ଯୋଗୁଁ ରକ୍ତ ଦିଆ ଯାଇଥିଲା) ଗୁରୁବାରରେ ବୋଉର ଚିଠିଟେ ଦେଲା । ପଢ଼ିସାରି ଆଗ୍ରହଟା ମଉଳିଗଲା ଗୋଟେ ଧାଡ଼ି ନିକଟରେ ଯେଉଁଠି ବୋଉ ଲେଖିଥିଲା ଗତ ୧୬ ତାରିଖ ଚନ୍ଦ୍ରଗ୍ରହଣଠାରୁ ବାପାଙ୍କ ଦେହ ଖରାପ । ଅବୁଝା ମନକୁ ବୁଝାଇ ପାରିଲିନି । ଆବାସିକ ବିଦ୍ୟାଳୟର କାର୍ଯ୍ୟବ୍ୟସ୍ତତା ମଧରେ ୬ ତାରିଖ ରବିବାରରେ ୭ କି.ମି ଦୂର କୋରାପୁଟ ଆସି ଫୋନ୍‌ରେ ଗ୍ରେଡ଼େ ସମୟ କଥା ହେଲି ବୋଉ ଓ ଭଉଣୀ ସଙ୍ଗେ ବାପାଙ୍କ ସ୍ୱାସ୍ଥ୍ୟ ନେଇ । ଜାଣିଲି ବାପା ଅନେକ ଦୁର୍ବଳ ହୋଇଯାଇଥିବା ହେତୁ ବିଶେଷ ଖାଇପାରୁ ନାହାନ୍ତି । ସଙ୍ଗେ ସଙ୍ଗେ ବାପା ପଢୁଛନ୍ତି ନା ନାହିଁ ମୁଁ ପଚାରିଲି । ବସି ତ ପାରୁନାହାନ୍ତି ୧୦/୧୫ ମିନିଟ୍‌ରୁ ଅଧିକ ଆଉ ପଢ଼ିବେ କ'ଣ- ଉତ୍ତର ଦେଲା ଭଉଣୀ । ମୁଁ ଭଲ କରି ଜାଣିଥିଲି ପଢ଼ିବା ହିଁ ତାଙ୍କର ଖାଦ୍ୟ । ତା' ବିନା ସେ ଆଦୌ ବଞ୍ଚି ପାରିବେନି । ମୁଁ ତେଣୁ ଘରକୁ ଯିବାକୁ କହିଲି କିନ୍ତୁ ମୁଁ ନିଜେ ଜଣେ ଶ୍ୱାସରୋଗୀ ହେତୁ ସେମାନେ ମନାକଲେ । ମୁଁ କହିଛି ଖାଇବାକୁ ବୋଲି ବାପାଙ୍କୁ କହିଲେ ସେ ଖାଇବେ ବୋଲି ଭଉଣୀକୁ କହିବାରୁ ସେ ହସିଥିଲା ।

ମନ ମୋର ଆଦୌ କୌଣସି କାମରେ ଲାଗିଲାନି । ସମୟ ବାହାର କରି ୯ ତାରିଖ ବୁଧବାରରେ ପୁଣି ଜୟପୁରରୁ ଫୋନ୍ କରି ଜାଣିବାକୁ ପାଇଲି, ଜ୍ୱର ଆଉ ନାହିଁ

। ଝାଡ଼ା ବହୁତ ଥର ହୋଇ ଦୁର୍ବଳ ହୋଇ ଯାଇଛନ୍ତି ଅଧିକ । ଔଷଧ ଖିଆଚାଲିଛି ଶୁଣି ମୁଁ ନିଶ୍ଚୟ ଘରକୁ ଯିବି କହି ଫେରି ଆସିଲି । ସେ ଦିନ ଆସିବାବେଳେ ବାପା ପୂରା ଭଲଥିଲେ । କ'ଣ ତାଙ୍କର ହୋଇଥିବ ସେକଥା ଭାବି ଭାବି କୌଣସି ଉତ୍ତର ମୁଁ ଖୋଜି ପାଇଲି ନାହିଁ । ଘରକୁ ଯିବାର ଦୃଢ଼ ପ୍ରତିଜ୍ଞାକରି ସମସ୍ତଙ୍କ ଅଜାଣତରେ ୧୨ ତାରିଖ ଶନିବାର ପାଇଁ ଟ୍ରେନ୍ ଟିକେଟ୍ କଲି । ମୋ ନିଜର ଅସୁସ୍ଥତାକୁ ନେଇ ବ୍ୟସ୍ତ ହେଉଥିବା କେତେକ ହିତାକାଂକ୍ଷୀ ସହକର୍ମୀ ବରଂ ବାରମ୍ବାର ଫୋନରେ ଯୋଗାଯୋଗ ରଖି ଅତି ଦରକାର ହେଲେ ଘରକୁ ଯାଆନ୍ତୁ ବୋଲି ପରାମର୍ଶ ଦେଇଥିବା ମୋ ଉପରେ କିଛି ପ୍ରଭାବ ପକାଇଲାନି । ଜଗନ୍ନାଥଙ୍କ ଉପରେ ପୂର୍ଣ୍ଣ ବିଶ୍ୱାସ ରଖି ମୁଁ ଯାଉଛି । ସେ ମଙ୍ଗଳମୟ ତେଣୁ ସେ ଯାହା କରିବେ ଭଲ ହିଁ କରିବେ । ଯେଉଁ ଜନ୍ମଦାତାଙ୍କର ଅନେକ ବିନିଦ୍ର ରଜନୀ ବିତିଛି ଆମରି ସେବାରେ ପୂଜାପାଠର ଅଭାବ ରଖି ନାହାନ୍ତି, ସେ ଆଜି ରୋଗ ଶଯ୍ୟାରେ ଅଥଚ ମୁଁ ଏଠାରେ ରହିବି, ଅସମ୍ଭବ । ପୃଥିବୀର କେଉଁ ଶକ୍ତି ମୋତେ ଆଉ ଅଟକାଇ ପାରିବନି । ପ୍ରଭୁ ମୋତେ ଏତେ ଅବିବେକୀ ଅନ୍ତତଃ କରନା । ସବୁ ଜାଣିବା ପରେ ଯଦି ମୁଁ ଯିବାରେ ବିଳମ୍ବ କରେ ଆଉ ଇତିମଧ୍ୟରେ ବାପାଙ୍କର ଯଦି କ'ଣ ହୋଇଯାଏ ତେବେ ଜନ୍ମଜନ୍ମକୁ ମୋତେ କେହି କ୍ଷମା ଦେବେନି । ୯ରୁ ୧୩ ପର୍ଯ୍ୟନ୍ତ ମୋ ମାନସିକ ଅବସ୍ଥା ବର୍ଣ୍ଣନାତୀତ ।

ଯାତ୍ରା ପଥରେ ଅନେକ ଭୟ ଓ ଆଶଙ୍କା ନେଇ ୧୩ ସକାଳେ ଘରେ ପହଞ୍ଚି ଦେଖେ ତ ବାପା ଅବଶ ହୋଇ ଗାଢ଼ ନିଦରେ ଶୋଇଛନ୍ତି । ପ୍ରଣାମ କରି ନିଦ୍ରାରେ ବାଧା ପହଞ୍ଚେଇବାକୁ ଆତ୍ମା ଡାକିଲାନି । ଘରୁ ଶୁଣିଲି ଏବେ ସଙ୍ଗେ ସଙ୍ଗେ ବିସ୍କୁଟ, ଅଙ୍ଗୁର, ହରଲିକ୍ସ ଖାଇ ଶୋଇଛନ୍ତି । ଦେହ ଖରାପ ଦିନ (କର୍କଟ ସଂକ୍ରାନ୍ତି) ଠାରୁ ସେଦିନ ପର୍ଯ୍ୟନ୍ତ ଘଟିଥିବା ସବୁକଥା ଜାଣିଲି । ପ୍ରସଙ୍ଗକ୍ରମେ ନର୍ସ ଭଉଣୀ ଯିଏ ବାପା ରକ୍ତ ନେବା ସମୟରେ ବାପାଙ୍କୁ ମଜାରେ ତାଙ୍କ ଘରକୁ ଯିବା ପାଇଁ କହିଥିଲେ ଓ ତାଙ୍କୁ କିପରି ବାପା 'ଏ ଘରେ ଦେଖୁଛ ତ କେତେ ବହି, କିଏ ଏସବୁ ପଢ଼ିବ । ତେଣୁ ମୁଁ ଏ ଘର ଛାଡ଼ି କୁଆଡ଼େ ଯିବିନି' ଉତ୍ତର ଦେଇଥିଲେ ସେ କଥା ଭଉଣୀଠାରୁ ଶୁଣି ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ପଢ଼ିବା ପାଇଁ ସେ କେମିତି ପାଗଳ !

କିଛି ସମୟ ପରେ ମୁଁ ମଧ ହାଲିଆ ହୋଇ ଶୋଇ ଯାଇଥିଲି । ସନ୍ଧ୍ୟାରେ ବର୍ଣ୍ଣଭିଟା ଖୁଆଇଲା ବେଳେ ମୁଁ ପ୍ରଣାମ କରନ୍ତେ 'କିଏ ଝୁନୁ ? ମୋ ଦେହ ଖରାପ ଶୁଣି ଆସିଲୁ, ହଉ ବସ୍' କହିଲେ । ପୂରା ଅସ୍ଥିକଙ୍କାଳ ସାର ଶରୀର । ରକ୍ତ ନେଇଥିବା ହେତୁ ଓଠ ପୂରା ଗାଢ଼କଳା । ଯେଉଁ ଯେଉଁ ଯାଗାରେ ରକ୍ତ ଦିଆ ଯାଇଛି ସେଗୁଡ଼ିକ କଳା ଚକା ଚକା ଦେଖାଯାଉଥିଲା । ଡାହାଣ ପଟ ଆଖି ପତା ଓହଳି ପଡ଼ିଥିଲା । ଏ ଅବସ୍ଥା ଦେଖି ମୁଁ ହତଚକିତ ହୋଇଗଲି । କାନକୁ ଶୁଣାଯାଉ ନଥିଲା କି କଥା ମଧ ଅସ୍ପଷ୍ଟ ଥିଲା । କାହାରି ସହାୟତା ବିନା ସେ ବାଡ଼ି ଧରି ବାହାର ବେଞ୍ଚରେ ବସି ତାଙ୍କ ବ୍ଵାଇଁ ତ୍ରିଲୋଚନଙ୍କୁ ଓ ଫ୍ରେଣ୍ଡସ୍ ପବ୍ଲିସର୍ସକୁ ଚିଠି ଲେଖିବାକୁ କହିଲେ । ଏତେ ସ୍ମରଣ ଶକ୍ତି ବାପାଙ୍କର ମୁହେଁ ମୁହେଁ ଠିକଣା କହିଲେ । ଆଜି ତ ରବିବାର କାଲି ଲେଖି ଡାକରେ ପକାଇ ଦେବା କହିଲି ସେ ଦିନ । ସୋମବାର ସକାଳୁ ଖାଇସାରି ଫ୍ରେଣ୍ଡସ ପବ୍ଲିସର୍ସକୁ ତାଙ୍କ ଶେଷ ଚିଠି ଲେଖିବାକୁ ମତେ କହିଲେ ଯେଉଁଥିରେ 'ପ୍ରାୟଶ୍ଚିତ' ଉପନ୍ୟାସର ପ୍ରୁଫ୍ ରିଡ଼ିଙ୍ଗ୍ ସରିଯାଇଛି

ତାଙ୍କୁ ଆସି କୌଣସି ଛୁଟି ଦିନରେ ନେବା କଥା ଲେଖାଥିଲା । ଚଷମା ଓ ଲେନସ୍ ମାଗି ସେ ଦସ୍ତଖତ କଲେ । ସ୍ଥାନ ଜାଗାରେ ଭୁବନେଶ୍ୱର ଲେଖି ନଥିବାରୁ ସେ ମୋ ଉପରେ ଚିଡ଼ିଲେ । କ୍ଷୀରଙ୍କୁ ଚିଠି ଦେଲେ ବିଳମ୍ବ ହେବ, ଫୋନ୍ କରିଦେବି, ମୁଁ କହିଲି । ରାତିରେ ଯଥାରୀତି ଖାଇ ଶୋଇଲେ । 'ରାତିରେ ଆଜି ବାପାଙ୍କ ପାଖରେ ମୁଁ ଜଗୁଛି, ତୁ ଅନିଦ୍ରା ହୋଇ ଦୁର୍ବଳ ହୋଇଗଲୁଣି, ବୋଉ', ମୁଁ କହିଲେ ବି ଆମମାନଙ୍କର ଦେହ ଖରାପ ହେବ ବୋଲି ସେ ମନାକଲା ।

ଅଗଷ୍ଟ ୧୫ ମଙ୍ଗଳବାର । ସକାଳ ଖିଆ ଯଥାରୀତି । ଦ୍ୱିପ୍ରହରରେ ମୁଁ ଓ ବୁଲୁଭାଇ ବାପାଙ୍କ ପାଇଁ ଭାତ, ଡ଼ାଲି, ପୋଟଳ ତରକାରୀ, ବାଇଗଣ ଭର୍ତ୍ତା, ଟମାଟୋ ଖଟା ଆଣି ରଖିଲୁ । ଖୁଆଇ ଦେବାକୁ କହିବାରୁ ବିରକ୍ତ ହେଲେ । ତାଙ୍କର ଅତି ପ୍ରିୟ ଆଳୁଭର୍ତ୍ତା ସେ ଥାଳିରେ ଖୋଜିଲେ । ଏହା ପୂର୍ବରୁ ଥରେ ସେ ଭର୍ତ୍ତା ଖାଇବାକୁ ବିରକ୍ତ ହୋଇଥିବାରୁ ବୋଉ ତାହା ସେଦିନ କରିନଥିଲା । ସଙ୍ଗେ ସଙ୍ଗେ ପଚାରିଲେ 'ଆଳୁଭର୍ତ୍ତା କାହିଁ '- ଆଜି ବୋଉ କରିନି କାଲି କରିବ, ମୁଁ କହିଲି । 'ମୁଁ ତେବେ କ'ଣ ଖାଇବି' ପଚାରିଲେ ସେ ଖୁବ୍ ଅଭିମାନଭରା ସ୍ୱରରେ । ଖଟାକୁ ଅତି ଆଗ୍ରହରେ ସେ ଖାଉଥିବାରୁ ତାହା ଶୀଘ୍ର ସରିଗଲା । ବଡ଼ ବ୍ୟାକୁଳରେ ମାଗିଲେ 'ମତେ ଆଉ ଟିକେ ଖଟା ଦେବୁନି' ସାଙ୍ଗେ ସାଙ୍ଗେ ହଉ ମୁଁ ଆଣୁଛି ବୋଲି କହିବାରୁ ସେ ଛୋଟପିଲାଙ୍କ ପରି ଅଭିମାନରେ କହିଲେ 'ନା ମୁଁ ଆଉ ଖାଇବିନି ।' ଆମେ ଭଲକରି ଜାଣୁ ସେ ରାଗିଲେ ତାଙ୍କୁ ବୁଝାଇବା ସାଧ୍ୟାତୀତ ହୋଇପଡ଼େ । ତେଣୁ ନୀରବ ରହିଲୁ ଆମେ । ସେଦିନର ଖାଇବା ଦେଖି ମୁଁ ଭାବିଲି ଯଦି ସେ ଏମିତି ଧୀରେ ଧୀରେ ଖାଇବେ ତେବେ ଭଲ ହୋଇ ଯିବେ ନିଶ୍ଚୟ ! ସେ ଶୋଇବା ବେଳେ ତାଙ୍କର ଗୋଡ଼ ଘଷି ଦେଉଥିଲି । ସେ ତାଙ୍କ ହାତରେ ଧୀରେ ଧୀରେ ଡ଼ାହାଣ ଜଙ୍ଘ ଉପର ଭାଗକୁ ବାଡ଼େଇ ମୋତେ ସେମିତି କରିବାକୁ କହିଥିଲେ ମଧ୍ୟ ସେ ଜାଗାରେ ତାଙ୍କ ହାଡ଼ ଭାଙ୍ଗି ଯାଇଥିବା ଯୋଗୁଁ ମୋ ଆତ୍ମା ଆଦୌ ଡାକିଲାନି ସେ ଜାଗାକୁ ଧୀରେ ଧୀରେ ବାଡ଼େଇବାକୁ । ଅତ୍ୟନ୍ତ ଅସ୍ପଷ୍ଟ ସ୍ୱରରେ 'ତୁ ବହି ପଢ଼' କହୁଥିଲେ । ସେଦିନ ମଧ୍ୟ ଚାଲି ଚାଲି ବାହାରେ ବସିଲେ । ହେଲେ ରାତିରେ ଆଦୌ ଖାଇଲେନି । ଅତ୍ୟନ୍ତ ଦୁର୍ବଳ ହୋଇଯାଇଥିବା ଯୋଗୁଁ ତାଙ୍କୁ ବାଧ କରିବାକୁ ମୋ ମନ ଡାକିଲାନି ।

ବୁଧବାର ୧୬ ତାରିଖ ସକାଳ ଗାଧୁଆ ପାଧୁଆ ସାରି ସେ ମୋ ହାତରୁ ଶେଷ ଜଳଖିଆ ଖାଇଲେ । ୬ଟା ଲୁଣି ବିସ୍କୁଟ, ଅଙ୍ଗୁର, ବର୍ନଭିଟାକୁ ଥାଳିରେ ଦେଖି 'ଏତେ କାହିଁକି ଦେଉଛୁ, ମୁଁ ଖାଇପାରିବିନି' କହିଲେ । 'ହଉ ତୁମେ ଧୀରେ ଧୀରେ ଯେତିକି ପାରୁଛ ଖାଅ' ମୁଁ କହିଲି । ସିଧା ୩ଟା ବିସ୍କୁଟ ନେଇ ଟେବୁଲ ଉପରେ ନେଇ ଥୋଇଲେ । ବାକି ୩ଟା ଖାଇଲେ, ବାଧ କରିବାରୁ ଆଉ ଗୋଟେ ଖାଇଲେ । ମାତ୍ର ତାଙ୍କର ଅଙ୍ଗୁର ଖିଆ ମତେ ଆଶ୍ଚର୍ଯ୍ୟାନ୍ୱିତ କଲା । ସେ ସବୁ ଅଙ୍ଗୁର ବାମ ହାତରେ ଧରି ଏକା ସାଙ୍ଗରେ ଡ଼ାହାଣ ହାତରେ ୪/୫ଟା ପାଟିରେ ପକାଇବା ମୋତେ ବହୁତ ଅସ୍ୱାଭାବିକ ଲାଗିଲା । କାରଣ ଜୀବନସାରା ସେ କେବେ ଖାଦ୍ୟ ଲାଳସା ଦେଖାଇବା ମୁଁ ଦେଖିନି । ଧୀରେ ଧୀରେ ଖାଅ ବାପା ତଣ୍ଟିରେ ଲାଗିଯିବ ବୋଲି ବାରମ୍ବାର ମୁଁ କହୁଥାଏ । ସେ କିନ୍ତୁ କିଛି ଶୁଣି ନଥିଲେ । ଅବଶ୍ୟ ତାଙ୍କ ଶ୍ରବଣ ଶକ୍ତି ବହୁତ କମ ହୋଇ ଯାଇଥାଏ । ବର୍ନଭିଟା ଅଧା

ପିଇସାରି ମୋତେ ଖବର କାଗଜ ମାଗିଲେ; ମାତ୍ର ସ୍ୱାଧୀନତା ଦିବସ ପାଇଁ ଛୁଟି ଅଛି କହିବାରୁ ସେ ଟିକେ ସମୟ ଖଟରେ ବସି ଶୋଇପଡ଼ିଲେ ଆଉ ଦାଣ୍ଡ ପିଣ୍ଡାରେ ବସିଲେ ନାହିଁ । ବୋଉ ମୋର ସେଦିନ ଆଳୁଭର୍ତ୍ତା, ଟମାଟୋ ଖଟା, ଜହ୍ନି ତରକାରୀ, ସଜନା ଇତ୍ୟାଦି ବାପାଙ୍କ ରୁଚି ଅନୁଯାୟୀ କରିଥିଲା । ସେ କିନ୍ତୁ କିଛି ଖାଇଲେନି । ବହୁତ ବାଧ କରି ପ୍ରାୟ ଦିନ ୨ଟାରେ ଲିତୁ (ସାନଭଉଣୀ) ଅଙ୍ଗୁରରସ ଅଧାକପ୍ ପିଆଇଥିଲା । ଦିନସାରା ସେ ଖାଲି ଶୋଇଲେ । ରାତିରେ ବି ଉଠିଲେନି । ମୋ ଡାକ୍ତର ଭିଣୋଇଙ୍କୁ ପଚାରିବାରୁ ସବୁ ଠିକ୍ ଅଛି, ଆଉ ଡାକ୍ତରଙ୍କର କିଛି କରିବାର ନାହିଁ ବୋଲି କହିଲେ । ହେଲେ ତାଙ୍କୁ (ଭାଇଙ୍କୁ) ଏସବୁ କିଛି ଭଲ ଲକ୍ଷଣ ପରି ଲାଗୁ ନଥିବା କହିଲି । ହାତ ଓ ଗୋଡ଼ ତଳେ ସୋରିଷ ତେଲ ମାଲିସ କରିଦେଲୁ କାରଣ ଧୀରେ ଧୀରେ ସେସବୁ ଆମକୁ କାହିଁକି ଥଣ୍ଡା ଲାଗୁଥିଲା । ରାତିରେ ବାପା ନିଶ୍ଚୟ ଥରେ ବାହାରକୁ ଉଠିବେ । ତେଣୁ ସେତେବେଳେ ହରଲିକ୍ସ ଖୁଆଇଦେବା ବୋଲି ବୋଉ କହିଲା । ଡେରି ରାତିଯାଏ ଆମେ ସମସ୍ତେ ଚେଇଁ ଥିଲୁ । ତମେମାନେ ଶୋଇଯାଅ ମୁଁ ପାଖରେ ଅଛି- ବୋଉ କହିଲା ।

ରାତି ୨ଟା ହେବ ପ୍ରାୟ । ଆମେ ତୁଳାରେ ପାଣି ଟିକେ ଟିକେ ଦେବାରୁ ବଡ଼ ବିରକ୍ତ ହେଲେ ବାପା । ଆଖି ଜମା ଖୋଲୁ ନଥାନ୍ତି । ବଡ଼ ପାଟିରେ କହିବାରୁ ସେ ଧୀରେ ଆଖି ଖୋଲି ଦେଖିଲେ । ତାଙ୍କ ଚାହାଣୀରୁ ଅନୁମାନ ହେଲା ସେ ଯେପରି ଗୁଡ଼େ କହିବାକୁ ଉତ୍ସୁକ; ମାତ୍ର ଶକ୍ତିହୀନ ଯୋଗୁଁ କହିପାରୁ ନଥିଲେ । ବାପାଙ୍କ ମୁଣ୍ଡ ପାଖରେ ଖଟତଳେ ମୁଁ ବସି ଦେଖୁଥାଏ ବାପାଙ୍କୁ । କାହାକୁ ଅତି ଖୋଜିଲା ଖୋଜିଲା ଦୃଷ୍ଟିରେ ସେ ଚାହୁଁଥାନ୍ତି । ବାପାଙ୍କ ଗୋଡ଼ ପାଖରେ ରାତିଟା ବସିବାକୁ ଇଚ୍ଛାଥିଲା ମାତ୍ର ବୋଉ କହିଲା ତୁମେ ସବୁ ହାଲିଆ ହୋଇଯାଇଛ, ଶୋଇପଡ଼ । ସକାଳ ହେଲେ ସେ ଆପେ ଉଠିବେ ।

ସେଠୁ ଆସି ମତେ ଆଉ ଖଟରେ ନିଦ ଲାଗିଲାନି । ବାହାର ଆକାଶକୁ ସେମିତି ଜଳଜଳ କରି ଅନେଇ ଭାବୁଥିଲି, ହେ ଜଗନ୍ନାଥ, ତମେ ଯାହା ଭାବିବ ତାହା କରିବ । ମୋର କିଛି କରିବାର ନାହିଁ । ଭୋରରୁ ଉଠି ଦେଖିଲି ବାପା ଗାଢ଼ ନିଦରେ ଶୋଇ ଯାଇଛନ୍ତି । ହେଲେ ତାଙ୍କ ଶରୀରର ଅବସ୍ଥା ଏମିତି ଥିଲା ବୋଧ ହେଉଥିଲା ସେ ସେମିତି ଉଠି ବସିବାକୁ ଚେଷ୍ଟା କରୁଥିଲେ । ବୋଉ ମଧ୍ୟ ହାଲିଆ ହୋଇ ଶୋଇ ଯାଇଥିଲା । ସକାଳୁ ବୋଉ ବାପାଙ୍କୁ ଉଠାଉଥିଲା ବେଳେ ମୁଁ କହିଲି ଉଠାନା । ଆମେ ସମସ୍ତେ ଗାଧୋଇ ସାରି ଉଠାଇବା ଓ ଖୁଆଇବା । ତେଣିକି ସେ ପଛେ ଶୁଅନ୍ତୁ । ଭଉଣୀ ପୂଜା ସାରିଲା, ଭାଇ ଡାକ୍ତର ଡାକିବାକୁ ଯାଇଥିଲା । ବୋଉ ମୋତେ ଗରମ ପାଣି ଆଣି ବାପାଙ୍କ ମୁହଁ ଧୋଇବାକୁ କହିଲା । ବାପା ସେତେବେଳେ ବହୁତ ଚେଷ୍ଟା କରୁଥାନ୍ତି ଏକୁଟିଆ ଉଠିବା ପାଇଁ । ତାଙ୍କର ଏ ଉଦ୍ୟମ ଦେଖି ମତେ ଆଶ୍ଚର୍ଯ୍ୟ ଲାଗିଲା । ସେତେବେଳକୁ ବାପାଙ୍କ ଡ଼ାହାଣପଟ ଆଖି ଉପରିଭାଗ ପ୍ରାୟ ବନ୍ଦ ହୋଇଯିବା ଭଳି ଲାଗୁଥାଏ । ମୁଁ ସେତେବେଳେ ମନେ ମନେ ଭାବିଲି ମୋ ବାପା କ'ଣ ଅନ୍ଧ ହୋଇଯିବେ ? ପ୍ରଭୁ ସବୁ ତମର ଇଚ୍ଛା । ମୁଁ ଭଲକରି ଜାଣେ ପୂଜା ନକଲେ ସେ କିଛି ଖାଇବେନି । ତେଣୁ ବଡ଼ ପାଟିରେ କହିଲି- ସକାଳ ହେଲାଣି ତମେ କ'ଣ ଠାକୁର ପୂଜା କରିବନି । ଖୁବ୍ ଧୀରେ ଧୀରେ ସେ ଆଖି ଖୋଲିଲେ । ବାପାଙ୍କୁ ପଛପଟୁ ଯାଇ ମୁଁ ଧୀରେ ଧୀରେ ଉଠାଇ

ଟେବୁଲ ପାଖରେ ବସାଇଲି । ମୁହଁ ଧୋଇବା ପାଇଁ ବାଁ ହାତରେ ତସଲା ଧରିଥାଏ ବାପଙ୍କ ଛାତିକୁ ଲଗାଇ ଓ ଡ଼ାହାଣ ହାତରେ ବାପାଙ୍କୁ ଦୃଢ଼ ଭାବରେ ଧରିଥାଏ । ମୋ କହିବାନୁଯାୟୀ ୩ଥର ପାଟିରେ ପାଣି ପୂରାଇ ସେ ମୁହଁ ଧୋଇଲେ ଭଲ ମଣିଷଙ୍କ ପରି । ମୁହଁଧୁଆ ପାଣିରେ ଅଙ୍ଗୁରରସର କଳା କଳା ଅଂଶ ଥିବା ଦେଖାଯାଉଥିଲା । ଡାହାଣ ପଟକୁ ସେ ଢ଼ଳି ଆସିଲା ବେଳକୁ ମୁଁ ଭାବିଲି, ବାପା ଭାରି ଚାଲାକ, ଶୋଇ ପଡ଼ିବେ ଭାବୁଛନ୍ତି । କିନ୍ତୁ ଆମେ ତାଙ୍କୁ ନ ଖୁଆଇ ଛାଡ଼ିବୁନି । ତେଣୁ ସାନ ଭଉଣୀକୁ ଇଙ୍ଗିତରେ ଶୀଘ୍ର ବର୍ନଭିଟା ଆଣିବାକୁ କହିଲି ।

ସେ ତାହା ଆଣିବା ଭିତରେ ବାପା ତାଙ୍କର ଅତି ଆଦରର ପଢ଼ା ଟେବୁଲକୁ ବାମ ହାତରେ ଭିଡ଼ି ନିଜ ଆଡ଼କୁ ଏମିତି ଜୋରରେ ଟାଣୁଥିଲେ ଯେ ତାହା ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ଯେଉଁଲୋକ ପାଖରେ ଆଦୌ ଶକ୍ତି ନଥିଲା କହିଲେ ଚଳେ ସେ ଲୋକ କେମିତି ଏତେ ବଳ ପାଇଲେ ମୁଁ ଜାଣି ପାରିଲିନି । ହେଲେ ଜୋର୍‌ରେ ଭିଡ଼ିବା ପରେ ପୁଣି ଅବଶ ହୋଇ ପଡ଼ିଯାଉ ଥାଏ ତାଙ୍କ ହାତ । ମୁଁ କହିଲି ସେ ଟେବୁଲ୍‌ଟା ତ ଖଟ ସହିତ ଲାଗିଯାଇଛି, ତେଣୁ ତମେ ତାକୁ ଟାଣିଲେ କ'ଣ ତାହା ତମ ଆଡ଼କୁ ଆସିବ ? ସେ ନିରୁତ୍ତର । ପୁଣି ସେ ଭିଡ଼ିଲେ ଟେବୁଲକୁ । ବୋଉ ମଧ ମୋ ପରି ସମାନ କଥା କହିଲା ବାପାଙ୍କୁ । ଅବଶ ହାତଟି ପୁଣି ଝୁଲି ପଡୁଥାଏ ଶରୀରର ପାର୍ଶ୍ୱରେ । ଏସବୁ ଦୃଶ୍ୟ କେବେ ମୁଁ ଜୀବନରେ ଭୁଲିପାରିବି ନାହିଁ । ସବୁ ଗୋଟି ଗୋଟି ହୋଇ ନାଚିଯାଉଛି ଆଖି ଆଗରେ । ଭଉଣୀ ବର୍ନଭିଟା ଆଣିଲା । ଗୋଟେ ଢୋକ ବାପା ପିଇଲେ । ଦ୍ୱିତୀୟ ଢୋକ ଗଲାନି । ମୋ ଭଉଣୀ ସେତେବେଳକୁ ବାପା ବାପା ବୋଲି ଭୋ ଭୋ କାନ୍ଦି ପକାଇଲାଣି । ଅଧୈର୍ଯ୍ୟ ନ ହେବାକୁ ମୁଁ ତାକୁ ଉପଦେଶ ଦେଉଥାଏ । ଦୁର୍ବଳ ବହୁତ ହୋଇ ଯାଇଛନ୍ତି ତେଣୁ ଧୀରେ ଧୀରେ ଖାଇବେ । ବ୍ୟସ୍ତ ହୋ'ନା ତୁ । ପ୍ରଥମେ ଯେତେବେଳ ଗୋଟେ ହିକ୍କା ଉଠିଲା, ମୁଁ ତ ବାପାଙ୍କ ପଛରେ ବସିଥାଏ । ମୁହଁ ତାଙ୍କର ମୋତେ ଦିଶୁନଥାଏ । ତେଣୁ ମୁଁ ବୋଉ ଓ ଭଉଣୀକୁ କହିଲି ଦେଖିଲ ବାପା ବୋଧେ ଢ଼ୋକି ଦେଲେ । କିନ୍ତୁ ସେ ମନାକଲା ଓ ଅଧୈର୍ଯ୍ୟ ହୋଇ ଚାଲିଗଲା ସମସ୍ତଙ୍କୁ ଫୋନ କରିବାକୁ । ଦ୍ୱିତୀୟ ହିକ୍କା ଉଠିଲା, ମୋର ପୁଣି ସେହି ଏକା ପ୍ରଶ୍ନ । ବୋଉ ଦେଖିଲୁ ବାପା ବୋଧେ ଢ଼ୋକିଦେଲେ ନା କ'ଣ । ବୋଉ ମୋର ନା କହିଲା । ଶେଷ ହିକ୍କାରେ ସବୁ କିଛି ଶେଷ ହୋଇଗଲା । ବାପା ମୋର ଡାହାଣ କାନ୍ଧରେ ସବୁଦିନ ପାଇଁ ଢ଼ଳି ପଡ଼ିଗଲେ ।

ଏହା ମୋ ଜୀବନର ଏକ ସମ୍ପୂର୍ଣ୍ଣ ନୂତନ ଅଭିଜ୍ଞତା । ସାମ୍ନାରେ ବୋଉ ମୋର ସ୍ଥାଣୁ ହୋଇ ଠିଆ ହୋଇ ମୋତେ ଅନାଇଥିଲା । ଆଉ ଅଭିମାନରେ ପଚାରିଲା ତୁ ବାପାଙ୍କୁ ଶେଯରୁ ଉଠାଇଦେଲୁ ବୋଲି ଏମିତି ହେଲାକି ? କିଛି ତ ନଥିଲା । ସେମିତି ଭଲରେ ଭଲରେ ସେ ଶେଯରେ ଶୋଇଥିଲେ । ବୋଉ ପ୍ରଶ୍ନର କୌଣସି ଉତ୍ତର ମୋ ପାଖରେ ନଥିଲା । ବାପାଙ୍କ ନିର୍ଜୀବ ଶରୀରଟାକୁ ମୁଁ ସେମିତି ଧରିଥାଏ, ଭାବୁଥାଏ ବାପା ମୋତେ ପିଲାଦିନେ କେତେ ଧରୁଥିଲେ ଏବେ ସେ ମୋ ପାଖରେ ପିଲା ହୋଇ ଯାଇଛନ୍ତି । କିଛିକ୍ଷଣ ନୀରବରେ ବିତିଗଲା । ବାଷ୍ପାକୁଳ କଣ୍ଠରେ ବୋଉ କହିଲା ଆଉ ତୋ ବାପାଙ୍କୁ କାହିଁକି ଧରିଛୁ ? ତୋ ବାପ ତ ସବୁଦିନ ପାଇଁ ଚାଲିଗଲେ । ଶେଜରେ

ଶୁଆଇ ଦେ । ମୁଁ ନିର୍ବାକ, ପଥର । ବୋଉ ମୋର ବାପାଙ୍କର ଗୋଡ଼କୁ ଟେବୁଲ ତଳୁ ଶେଜ ଉପରକୁ ଉଠାଇଲା । ମୁଁ କୋଳରେ ସେମିତି ବାପାଙ୍କୁ ଧରି ନିରେଖୁଥାଏ ଏକ ଲୟରେ । ଲମ୍ବା ଲମ୍ବା କାନ, ଉନ୍ନତ କପାଳ । ଭାବୁଥିଲି ଏ ମସ୍ତିଷ କି ଉପାଦାନରେ ତିଆରି ହୋଇଥିଲା କେଜାଣି ଯେ ଦେଇଗଲା ହଜାର ହଜାର ଓଡ଼ିଆ ସାହିତ୍ୟ ପ୍ରେମୀଙ୍କୁ ସମାଲୋଚନାର ଏକ ନୂତନ ଦିଗ । ଭାବିଲି ସତରେ କ'ଣ  ଓଡ଼ିଆ ସାହିତ୍ୟ ପାଇଁ, ବାପାଙ୍କର ଲେଖା ଆଉ ବାହାରିବନି । ଏତେ ବଡ଼ ଜ୍ଞାନୀ ଲୋକଟେ ଆମ ସମସ୍ତଙ୍କୁ ଛାଡ଼ି ସତରେ ଚାଲିଗଲେ ମୁଁ ବିଶ୍ୱାସ କରି ପାରିଲିନି ।

ବାପା ଯିବାର ବର୍ଷେ ହୋଇଗଲା, ହେଲେ ଲାଗୁଛି, ଶେଷ ୫ଦିନର କଥା ମୋ ଜୀବନରେ ଅପାଶୋରା ହୋଇ ରହିଯିବ । ଜାଣେନା ଭୁଲିବା ଦ୍ୱାରା ଭୁଲ ନା ଠିକ୍ ମୁଁ କ'ଣ କରୁଛି । କାରଣ ଏକ ପାଖରେ ନ ଭୁଲିବା ଦ୍ୱାରା ସଂସାର ପ୍ରତି ଆସକ୍ତିର ପ୍ରଶ୍ନ ଉଠୁଥିବା ବେଳେ ଅନ୍ୟ ପକ୍ଷରେ ଭୁଲିଯିବା ଦ୍ୱାରା ମାନବୀୟ କର୍ତ୍ତବ୍ୟରେ ଅବହେଳାର ପ୍ରଶ୍ନ ବାରମ୍ବାର ମନରେ ଉଠୁଛି । ତେଣୁ ଅନେକ ସମୟରେ ମାନସିକ ଦ୍ୱନ୍ଦ୍ୱରେ ଏହି ଦୋ'ଛକି ଉପରେ ଠିଆ ହୋଇ ମୁଁ ଭାବେ ଅତୀତକୁ ସାଥୀ କରି ଅନାସକ୍ତ ଭାବେ ଜୀବନଯାତ୍ରା କରିବା ବୋଧେ ମୋ ପାଇଁ ଠିକ୍ ହେବ । ହେ ଭଗବାନ୍ ତୁମେ ହିଁ ଏ ସବୁରୁ ଉର୍ଦ୍ଧ୍ୱତମ ରାସ୍ତା ମତେ ଦେଖାଇବ । ନିଜ ଜୀବନରେ ଅନ୍ତଃହୀନ ଦୁଃଖ ପିଲାମାନଙ୍କୁ କହିଲେ କାଳେ ଆମେ ଦୁଃଖୀ ହେବୁ ଭାବି ବୋଧେ ସେ କେବେବି ଆମକୁ ନିଜର ଦୁଃଖ କହିନାହାନ୍ତି । ତାଙ୍କର ଆଜୀବନ ନିରଳସ ସାହିତ୍ୟ ସାଧନା, ସ୍ୱାବଲମ୍ବନଶୀଳତା, କର୍ତ୍ତବ୍ୟ ପରାୟଣତା, ସମୟାନୁବର୍ତ୍ତିତା ମୋ ଜୀବନର ଧେୟ ହେଉ ।

କିନ୍ତୁ ମୋ ଜୀବନର ସବୁଠୁ ବଡ଼ ଦୁଃଖ ଓ ଅବଶୋଷ ରହିଗଲା ଯେ ମୁଁ ବାପା ଚାହୁଁଥିବା ତ୍ରିଲୋଚନଙ୍କୁ ଠିକ୍ ସମୟରେ ଖବର ଦେଇ ପାରିଲିନାହିଁ, ତାଙ୍କ ଅସୁସ୍ଥତା ବିଷୟରେ । ସେ ଭ୍ରାଇଁଙ୍କୁ ବହୁତ ଖୋଜୁଥିଲେ ବୋଧେ ତାଙ୍କୁ କିଛି ବାଣୀ ଆରଧନା ସମ୍ପର୍କରେ କହିଥାନ୍ତେ । କିନ୍ତୁ ଖବର ପହଞ୍ଚିଲା ବେଳକୁ ବହୁତ ବିଳମ୍ବ ହୋଇ ଯାଇଥିଲା । ଅନ୍ୟ ଏକ ଦୁଃଖ ହେଲା ଯେ ବାପା ଯିବାର କିଛି ଦିନ ପୂର୍ବରୁ (ସୁସ୍ଥ ସମୟରେ) ମୋତେ ବାରମ୍ବାର ଶ୍ରୀ ରମାକାନ୍ତ ରଥଙ୍କ 'ଶ୍ରୀରାଧା' ପୁସ୍ତକ ମାଗୁଥିଲେ ପଢ଼ିବା ପାଇଁ । ମୁଁ ତାଙ୍କ ପଢ଼ିବାର ବ୍ୟାକୁଳତାର ଗୁରୁତ୍ୱକୁ ଉପଲବ୍ଧି କରି ନପାରି ବହିଟେ ଦେଇ ପାରିନଥିବାରୁ ବାସ୍ତବିକ ମୁଁ ବହୁତ ଅନୁତପ୍ତ ।

'ସେବା ଦିଅ କିନ୍ତୁ ସେବା ନିଅନି ' ମହାମନ୍ତ୍ରରେ ଅଭିମନ୍ତ୍ରିତ ହୋଇ ବୋଧେ ଶେଷ ଜୀବନ ପର୍ଯ୍ୟନ୍ତ ସେ କାହାଠାରୁ ସେବା ନେଲେନି । ଭଗବାନ କରନ୍ତୁ ଏପରି ଜନ୍ମଦାତା ମୋତେ ଯୁଗ ଯୁଗକୁ ମିଳୁ ଥାଉ ଓ ମୁଁ ତାଙ୍କ ପାଦ ପଦ୍ମ ସେବୁଥାଏ ।

*ପି.ଜି.ଟି ଶିକ୍ଷୟିତ୍ରୀ,*
*ଜବାହାର ନବୋଦୟ ବିଦ୍ୟାଳୟ,*
*ଲାଣ୍ଡିଗୁଡ଼ା, କୋଲାବ ନଗର,କୋରାପୁଟ*

# ନଟବର ବାଣୀ

ସୃଷ୍ଟି ସମୀକ୍ଷା ପରସ୍ପର ସମ୍ବନ୍ଧାନ୍ୱିତ । ସୃଷ୍ଟି, କିନ୍ତୁ ମୌଳିକ ପ୍ରତିଭାପ୍ରସୂତ ସ୍ୱାତନ୍ତ୍ର୍ୟର ଦ୍ୟୋତକ; ସମୀକ୍ଷା, ଅନୁରୂପ ପ୍ରତିଭା ସାପେକ୍ଷ ବୌଦ୍ଧିକ କ୍ରିୟାର ପରିପ୍ରକାଶ ମାତ୍ର । ସୃଷ୍ଟିର ଲକ୍ଷିତ ସୌନ୍ଦର୍ଯ୍ୟ ତଥା ତା'ର ଶିଳ୍ପ-ମୂଲ୍ୟ ଅବଧାରଣ ଦିଗରେ ନୂତନ ଆଲୋକପାତ କରିବା ହେଉଛି ସମୀକ୍ଷା କର୍ମର ଏକ ପରମ ଧର୍ମ । ଏଉ ପରମ ଧର୍ମର ଚରମ ପରିପ୍ରକାଶ ହୁଏ ସମୀକ୍ଷା କର୍ମର ବିଭିନ୍ନ ରୂପ ମାଧ୍ୟମରେ । ମୌଳିକ ପରିକଳ୍ପନାଠାରୁ ଆରମ୍ଭ କରି ବିଷୟବସ୍ତୁ, ବିଭିନ୍ନ ପ୍ରବୃତ୍ତି ତଥା ଗଠନ କୌଶଳ ପର୍ଯ୍ୟନ୍ତ ବିଭିନ୍ନ ଉପାଦାନ ଭିତରେ ଗୋଟିଏ ସୃଷ୍ଟିର ସ୍ୱତନ୍ତ୍ର ସ୍ୱରୂପ ସାଧାରଣତଃ ସୁପ୍ରତିଷ୍ଠିତ ହୋଇଥାଏ । ବିଭିନ୍ନ ସୃଷ୍ଟିର ବିଭିନ୍ନ ସ୍ୱରୂପ ବିଶ୍ଳେଷିତ ହେଲେ ସମୀକ୍ଷାର ରୂପଗତ ବିଭିନ୍ନତା ଦେଖାଯିବା ଏକାନ୍ତ ସ୍ୱାଭାବିକ ହୋଇପଡ଼େ । ତଥାପି, ଏହା ନିଶ୍ଚିତ ଯେ ପ୍ରତ୍ୟେକ ସୃଷ୍ଟିର ମୌଳିକ ଲକ୍ଷ୍ୟ ଏକ; ସୌନ୍ଦର୍ଯ୍ୟର ରୂପାୟନ ହିଁ ଏଇ ଲକ୍ଷ୍ୟର ଚରମ ପରିଣତି ମାତ୍ର । ଅନ୍ୟ ପକ୍ଷରେ, ବିଭିନ୍ନତା ସତ୍ତ୍ୱେ ସମୀକ୍ଷାର ଲକ୍ଷ୍ୟ ମଧ ଏକ; ସୃଷ୍ଟିର ଅବବୋଧ ଦିଗରେ ଆଲୋକପାତ କରିବା ହେଉଛି ଏହାର ଅନ୍ତିମ ଅବଦାନ ।

*ରାଧାନାଥ ସାହିତ୍ୟ ସମୀକ୍ଷା (୧୯୮୪) ପୃ ୪୪*

କାଳର ପ୍ରକୃତି ଅତି ରହସ୍ୟ ମୟ ଓ ତା'ର ଗତି ନିଷ୍ଠୁରତାରେ ପରିପୂର୍ଣ୍ଣ । ଯଶ ଲିପ୍ସୁ, ଅହମିକାଗ୍ରସ୍ତ ଲୋକଙ୍କର ସମସ୍ତ ସାମୟିକ ବିକ୍ଷୋଭ ଓ ଉତ୍ତେଜନାକୁ ସେ ଭ୍ରୂକୁଟୀରେ ଉଡ଼ାଇ ଦେଇ ଓ ତା'ର ଶାଣିତ ତରବାରୀରେ 'ଗୋଦାମରଦ୍ଦି' ମାଲର କର୍ତ୍ତାଙ୍କୁ ସଂପୂର୍ଣ୍ଣ ନିପାତ କରିଥାଏ । କାଳର କଠୋର କଷାଘାତ ଓ ମୃତ୍ୟୁର କରାଳ-କରସ୍ପର୍ଶରୁ ଉଦ୍ଧାର ପାଇ ଯେ ନୂତନ ରୂପବିଭବରେ ସର୍ବଦା ପ୍ରୋଜ୍ଜ୍ୱଳ ହୋଇଉଠେ ତାହା ହିଁ ଯଥାର୍ଥ ଖାଣ୍ଟିମାଲର ସାହିତ୍ୟ । ତାହା ହିଁ ସାହିତ୍ୟ ରାଜ୍ୟରେ ଯଥାର୍ଥ ସୃଷ୍ଟି । ଯଶରଙ୍କଙ୍କର ସମସ୍ତ କାରସାଦି, ସମସ୍ତ କୂଟଜାଲ ଏହାକୁ ଧ୍ୱଂସ ମୁଖକୁ ଠେଲି ଦେଇ ପାରେ ନାହିଁ । ଏଇମାନଙ୍କୁ ନେଇ ସାହିତ୍ୟର ଇତିହାସ ତିଆରି କରାଯାଏ ।

*ଆଧୁନିକ ଓଡ଼ିଆ ସାହିତ୍ୟର ଭିତ୍ତିଭୂମି (୧୯୬୪)ପୃ ୯୪*

# କେତୋଟି ସାକ୍ଷାତ କାର

ନୀରବ ସାଧକଟିଏ
ଚୁପ୍‌ଚାପ ରହିବାକୁ ଭଲ ପାଉଥିଲେ ବି
ଲୋକଲୋଚନର ଆଢ଼ୁଆଳରେ
ସାଧନାରତ ହେବାକୁ ଇଚ୍ଛା କରୁଥିଲେ ବି
ସମାଜ କିନ୍ତୁ ଚେଷ୍ଟା କରୁଥାଏ
ତାଙ୍କୁ ସମସ୍ତଙ୍କ ସମ୍ମୁଖକୁ ଆଣିବାକୁ
ସେହିପରି କେତୋଟି ଚେଷ୍ଟାର
ପରିପ୍ରକାଶ ଏହି ସାକ୍ଷାତକାର

# ମୁଁ କେବଳ ଓଡ଼ିଆରେ ଲେଖେ ଓଡ଼ିଆ ମୋର ମାତୃଭାଷା

*ପ୍ରସ୍ତୁତି ଓ ଉପସ୍ଥାପନା- ଜ୍ୟୋତ୍ସ୍ନା ରାଉତରାୟ*

୧୯୩୬ ମସିହା । ରେଳ ଷ୍ଟେସନ୍‌ରୁ ଖଣ୍ଡିଏ ଭାରତବର୍ଷର ମାନଚିତ୍ର କିଣି ମାଟ୍ରିକ୍ ପାଶ୍ କରିଥିବା କିଶୋରଟି ବାହାରି ପଡ଼ିଲା ବନାରସ । ଉଚ୍ଚଶିକ୍ଷା ପାଇଁ । ପୁରୀ ଏମାର ମଠ, ରଘୁନନ୍ଦନ ଲାଇବ୍ରେରୀରୁ 'ହିମାଳୟ ପଥେ' ବହିରେ ସେ ପଢ଼ିଛି, ବନାରସ ହେଉଛି ଜ୍ଞାନତୀର୍ଥ । ସେଠାରେ ଅନେକ ମେଧାବୀ ଛାତ୍ର ଅନ୍ୟମାନଙ୍କ ସହାୟତାରେ ଉଚ୍ଚ ଶିକ୍ଷା ଲାଭ କରନ୍ତି । ବହୁ କଷ୍ଟ ଓ ସାହାଯ୍ୟର ବିନିମୟରେ ଦ୍ୱିତୀୟ ଶ୍ରେଣୀରେ ମ୍ୟାଟ୍ରିକ୍ ପାଶ୍ କରିଥିବା ପିଲାଟି ପାଠ ପଢ଼ିବାକୁ ଚାହେଁ, ଅନେକ ପାଠ । କିନ୍ତୁ ଅର୍ଥର ଅଭାବ ।

ପାଠ ପଢ଼ିବା ପାଇଁ ସେଦିନର ସେଇ ସ୍ୱପ୍ନ ପାଗଳ, ନିଃସଙ୍ଗ କିଶୋର ଛାତ୍ରଟି ଜନ୍ମମାଟି ତ୍ୟାଗ କରିଥିଲା । ବନାରସରେ ପହଞ୍ଚିଲା । ସେଠାରେ ୩୪ ନମ୍ବର କାମାକ୍ଷାନଗର ଦୁର୍ଗାଚରଣ ଚଟ୍ଟୋପଧ୍ୟାୟଙ୍କ ଆଶ୍ରମରେ ରହି ଘରୋଇ ଭାବରେ ଆଇ.ଏ. ପରୀକ୍ଷା ଦେବା ପାଇଁ । ପାଠ୍ୟବସ୍ତୁ ନେଇଥିଲା- ଇଂରାଜୀ, ସଂସ୍କୃତ, ଗଣିତ, ଗ୍ରୀକ୍ ଇତିହାସ ଓ ଭୂଗୋଳ । ୧୯୩୬ ମସିହାରେ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ସେ ପୁଣି ଫେରି ଆସିଥିଲା ଜନ୍ମଭୂମି କୋଳକୁ । କାରଣ ଅଚିହ୍ନା ଭୂଇଁ, ଅଜଣା ମଣିଷ ଭିତରେ ନିଜର ଗ୍ଲାନିରେ ନିଜେ ବୁଡ଼ିଗଲା ସେ । ଅନୁତାପ କଲା ଏବଂ ଫେରି ଆସିଲା । ଦାଦାପୁଅ ଭାଇ ସୁଧାନିଧି ସାମନ୍ତରାୟଙ୍କ ସହାୟତାରେ ସେ ରେଭେନ୍ସା କଲେଜରେ ନାଁ ଲେଖାଇଲା । ରେଭେନ୍ସାରେ ମାସିକ ମେସ୍ ଖର୍ଚ୍ଚ ଥିଲା ନଅ ଟଙ୍କା । ଭାଇଙ୍କ ଠାରୁ ମିଳୁଥିଲା ଛଅ ଟଙ୍କା ଓ କଲେଜର ସାହାଯ୍ୟ ପାଣ୍ଠିରୁ ମିଳୁଥିଲା ୩ଟଙ୍କା । ବାସ୍ ବି.ଏ. ରେ ବିଷୟ ଥିଲା ସଂସ୍କୃତରେ ଅନର୍ସ ଓ ଗଣିତ ପାଶ୍ । କି ଅଦ୍ଭୁତ ପରସ୍ପର ବିରୋଧୀ ବିଷୟ ଏବଂ ବିଧିର ବି କି ବିଚିତ୍ର ଖିଆଲ୍ । ଯେଉଁ ଛାତ୍ରଟି ଗଣିତ ଶିକ୍ଷକ ଭାବରେ ନିଜର ପ୍ରଥମ କର୍ମଜୀବନ ଆରମ୍ଭ କରିଥିଲା, ପରବର୍ତ୍ତୀ ସମୟରେ ସେ ହେଲା ଓଡ଼ିଆ ଅଧ୍ୟାପକ । ଗଦା ଗଦା ପୋଥି, ପୁରାତନ ଗ୍ରନ୍ଥ ଆଉ ପ୍ରାଚୀନ ପତ୍ରିକା ଭିତରେ ସେ ବୁଡ଼ିଗଲା । ବର୍ଷ ବର୍ଷ ଧରି ଚାଲିଲା ଅକ୍ଲାନ୍ତ ସାଧନା । ଧ୍ୟାନସ୍ଥ, ଉଚ୍ଚାଟ ମନଟି ଗବେଷଣା ଓ ସମାଲୋଚନାରେ ଏକ ନୂତନ ଦିଗନ୍ତ ଖୋଲି ଦେଲା ଓଡ଼ିଆ ପାଠକ ସମ୍ମୁଖରେ । ସାହିତ୍ୟର ଜଟିଳ ତତ୍ତ୍ୱକୁ ଅଭିନବ ଆଙ୍ଗିକରେ ସଜାଇ ଦେଇ ଏକ ମୂଳମନ୍ତ୍ର ଉଦ୍‌ଘାଟନ କଲା । ହୃଦୟ ଜୟ କରିନେଲା ଅସଂଖ୍ୟ ସାଧାରଣ ପାଠକଙ୍କର । 'ନେତ୍ରମଣିର ଡାଏରୀ' ପ୍ରଭୃତି ଭିତରେ ପାଠକ ଅନୁଭବ କଲା, ମୂଳଲେଖା ଠାରୁ ବି ଆଲୋଚନାରେ ଅଛି ଏକ ଭିନ୍ନ ସ୍ୱାଦ । ଲେଖାର ଯାଦୁକରୀ ସ୍ପର୍ଶରେ ଏକ ଦୃଷ୍ଟିକୋଣ- ତେବେ କିଏ ସେଇ ଯାଦୁକର ? ସେ ହେଉଛନ୍ତି ଡକ୍ଟର ନଟବର ସାମନ୍ତରାୟ । ନିରଳସ ସାହିତ୍ୟ ଚର୍ଚ୍ଚା ଓ ଗବେଷଣା ପାଇଁ ତାଙ୍କୁ ଓଡ଼ିଶା ସାହିତ୍ୟ ଏକାଡେମୀର ସର୍ବୋଚ୍ଚ ସମ୍ମାନ 'ଅତିବଡ଼ୀ ଜଗନ୍ନାଥ ଦାସ' ପୁରସ୍କାର ପ୍ରଦାନ

କରାଯାଇଥିଲା । ତାଙ୍କ ପୂର୍ବରୁ ଦୁଇ ଜଣ ବରିଷ୍ଠ କବି ରାଧାମୋହନ ଗଡ଼ନାୟକ ଓ କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କୁ ମଧ୍ୟ ଏ ସମ୍ମାନ ପ୍ରଦାନ କରାଯାଇଛି ।

ଅଠାବନ ବର୍ଷରେ ସମସ୍ତେ ସରକାରୀ ଚାକିରିରୁ ଅବସର ଗ୍ରହଣ କରନ୍ତି କିନ୍ତୁ ଡକ୍ଟର ସାମନ୍ତରାୟ ତତ୍‌କାଳୀନ ଓଡ଼ିଶା ସରକାରଙ୍କ ଖାମଖିଆଲୀ ନୀତିଯୋଗୁ ୫୫ ବୟସରେ ୧୯୭୩ ମସିହାରେ ଅବସର ଗ୍ରହଣ କଲେ । ସ୍ୱାଭିମାନୀ, କାହା ଆଗରେ ଗୋଡ଼ଭାଙ୍ଗି ଛିଡ଼ା ହୋଇ ନ ଥିବା ଡକ୍ଟର ସାମନ୍ତରାୟ ଅବସର ଗ୍ରହଣ ପରେ ସାହିତ୍ୟ ଚର୍ଚ୍ଚାରେ ଅଧିକ ମନୋନିବେଶ କରିଥିଲେ ଏବେ ମଧ୍ୟ ବୟସର ଅପରାହ୍ନରେ ପଢ଼ାପଢ଼ି ବା ଲେଖାଲେଖିରୁ ସେ ବିଶ୍ରାମ ନେଇପାରି ନାହାନ୍ତି । ଦେଖିଲେ ମନେହୁଏନା ଏତେ କଷ୍ଟ, ଏତେ ବିଘ୍ନ, ଏତେ ନିମଗ୍ନତା ଭିତରେ ସେ ପାହାଚ ପରେ ପାହାଚ ଅତିକ୍ରମ କରିଛନ୍ତି ବୋଲି । ସାଧାରଣ ଚେହେରା, ସାଧାରଣ ସ୍ୱାସ୍ଥ୍ୟ ଓ ୭୭ ବର୍ଷ ବୟସର ଭାର । ସ୍ୱଚ୍ଛ ବାକ୍ । କିନ୍ତୁ ବୁଦ୍ଧିଦୀପ୍ତ ସେ ଆଖିର ଦୃଷ୍ଟି, ଏ ବୟସରେ ମଧ୍ୟ । ଯେମିତି ଅନୁସନ୍ଧିତ୍ସା, ଜ୍ଞାନଲିପ୍‌ସା ଏବେ ବି ସେ ଆଖିର ଚାହାଣୀ ସହିତ ଅତି ନିବିଡ଼ ଭାବରେ ମିଶିଯାଇଛି । ଓଠରେ ଆନ୍ତରିକ ହସଧାର । ଏ ବୟସରେ ମଧ୍ୟ ମଧ୍ୟ କି ଚମତ୍କାର ସ୍ମୃତିଶକ୍ତି ।

*- କେମିତି ଆରମ୍ଭ ହେଲା ଆପଣଙ୍କର ଏଇ ଅତନ୍ଦ୍ର ସାଧନାର ଜୀବନ ?*

ଆଖିରେ ସତେ ଯେମିତି ଭରିଗଲା ଅତୀତର ବହୁ ଦୃଶ୍ୟପଟ । କହିଲେ ସେ, ମୁଁ କ'ଣ କେବେ ଭାବିଥିଲି । ଡେଲାଙ୍ଗ ଅଞ୍ଚଳର ଲେମ୍ବାଇ ପ୍ରଗଣା ଥିଲା ପୁରୀ ରାଜାଙ୍କ ଜମିଦାରୀ । କର୍ଣ୍ଣୱାଲିସ୍ ପ୍ରବର୍ତ୍ତିତ ସୂର୍ଯ୍ୟାସ୍ତ ଆଇନ ବଳରେ ସେ ଜମିଦାରୀ ନିଲାମ ଧରି ନେଇଥିଲେ ପାରଳା ମହାରାଜା । ସେଇ ଲେମ୍ବାଇ ପ୍ରଗଣାରେ ଡେଲାଙ୍ଗର ତହସିଲଦାର ଥିଲେ ମୋ ବାପା ରାସବିହାରୀ ସାମନ୍ତରାୟ । ଡେଲାଙ୍ଗ ମାଇନର ସ୍କୁଲରୁ ମାଇନର ପାଶ୍ କଲାପରେ, ପରିବାରରେ ଆଉ ପୂର୍ବର ସ୍ୱଚ୍ଛଳ ଆର୍ଥିକ ଅବସ୍ଥା ନ ଥିଲା । ତେଣୁ କେବଳ ମ୍ୟାଟ୍ରିକ ପାଶ୍ କରିବା ପାଇଁ ମତେ ବିଭିନ୍ନ ଜାଗାରେ ଆଶ୍ରୟ ନେବାକୁ ପଡ଼ିଥିଲା ।

ବନାରସରେ ଆଶ୍ରିତ ହୋଇ ରହି ଆଇ.ଏ. ମଧ୍ୟ ୨ୟ ଶ୍ରେଣୀରେ ପାଶ୍ କଲି କିନ୍ତୁ ବିଦେଶରେ ମନ ଲାଗିଲା ନାହିଁ । ଫେରି ଆସିଲି, ଦାଦା ପୁଅ ଭାଇ ସୁଧାନିଧିଙ୍କ ସହାୟତାରେ ସାହାଯ୍ୟ ପାଇ ୧୯୪୧ ମସିହାରେ ଦ୍ୱିତୀୟ ଶ୍ରେଣୀରେ ବି.ଏ. ପାଶ୍ କଲି ଓ ରାଧାନାଥ ଟ୍ରେନିଂ କଲେଜରେ ଡି.ଇଡ଼ି. ପଢ଼ିଲି । ୧୯୪୩ରେ ଭୁବନେଶ୍ୱର, ଭଞ୍ଜମଧୁ ବିଦ୍ୟାପୀଠର ଗଣିତ ଶିକ୍ଷକ, ଫୁଲବାଣୀ ଦାରିଙ୍ଗିବାଡ଼ି ଏବଂ ମୋହନାରେ ସ୍କୁଲ ବିଭାଗର ଜୁନିୟର ଇନ୍ସପେକ୍ଟର ତଥା ୧୯୪୪-୪୫ ମସିହାରେ ଅନୁଗୁଳ ହାଇସ୍କୁଲର ଗଣିତ ଶିକ୍ଷକ ଭାବରେ କାର୍ଯ୍ୟ କରିଥିଲି । ୧୯୪୬ରେ ବାହାଘର ହେଲା ଓ ୧୯୪୮ ମସିହାରେ ଗୋପାଳ ଚନ୍ଦ୍ର ମିଶ୍ର, ଶାନ୍ତି ଦେବୀ ଓ ସର୍ବେଶ୍ୱର ଦାସ ପ୍ରମୁଖଙ୍କ ସହଯୋଗରେ ଓଡ଼ିଆରେ ଏମ୍.ଏ. ପାଶ୍ କରିଥିଲି ।୧୯୪୯ରେ ବାରିପଦାରେ ଅଧ୍ୟାପକ ଭାବରେ ନିଯୁକ୍ତି ପାଇଲି ।

କିନ୍ତୁ ମୁଁ ବୁଝିପାରେନା ମୋ ଭିତରେ କେମିତି ଏକ ଶୂନ୍ୟଭାବ ସବୁବେଳେ ଲାଗି ରହିଥାଏ । କିଛି ଗୋଟାଏ କରିବାକୁ ହେବ କିନ୍ତୁ କ'ଣ କରିବି । ଯେଉଁ ଲୋକ ସ୍କୁଲରେ ଥିଲା ଗଣିତ ଓ ଭୂଗୋଳ ଶିକ୍ଷକ, ସେ ପୁଣି ହେଲା ଓଡ଼ିଆ ଅଧ୍ୟାପକ । ଜୀବନର କି ପରିହାସ । ତେଣୁ ମନେ ମନେ ଭାବିଲି ଭଗବାନଙ୍କ ମୋ ଦ୍ୱାରା କିଛି କରିବାର ଅଛି । ଜଣେ ମଣିଷ ଯେତିକି ଜାଣିଛି ବା ପଢ଼ାଉଛି, ସେତିକି ଯଥେଷ୍ଟ ନୁହେଁ, ଅଧିକା କିଛି

ଜାଣିବା ଦରକାର । ପରମାନନ୍ଦ ଆଚାର୍ଯ୍ୟ ବି.ଏସ୍‌ସି., ଭୁବନେଶ୍ୱର ପ୍ରତ୍ନତତ୍ତ୍ୱ ବିଭାଗର ସୁପରିଣ୍ଟେଣ୍ଡେଣ୍ଟ ଥାଆନ୍ତି । ତାଙ୍କୁ ମୁଁ ଦେଖା କଲି । ତାଙ୍କୁ ପଚାରିଲି ଆପଣ ତ ବି.ଏସ୍‌ସି. ଇତିହାସ ଜାଣନ୍ତି ନାହିଁ, ଏଠିକୁ କେମିତି ଆସିଲେ, ପୁଣି ଲୋକ କହୁଛନ୍ତି ଆପଣ ସାହିତ୍ୟ ଜାଣନ୍ତି ବୋଲି ।

ସେ କିଛି ସମୟ ରହି କହିଲେ, ତମେ ପରୀକ୍ଷା କଲ ସତ କି ମିଛ ଜାଣିପାରିବ !

ପଚାରିଲି- ରାଧାନାଥ ଯେଉଁ ବିଦେଶର ତଥ୍ୟ ଆଣିଛନ୍ତି ବୋଲି କୁହାକୁହି ହେଉଛନ୍ତି ସେ ସବୁ କେଉଁଠୁ ଆସିଛି କହିଲେ ?

ମୁଁ ପକେଟରୁ କାଗଜ ବାହାର କରି ଟିପୁ ଥାଏ । ଶେଷରେ ପରମାନନ୍ଦ ଆଚାର୍ଯ୍ୟ ମହାଶୟ କହିଲେ, ବୁଝିଲ ତୁମେ ପାଶ୍ କଲ ମୁଁ ଫେଲ୍ ହୋଇଗଲି ।

-କେମିତି ?

ଦେଖୁନ କେତେ ସହଜରେ ତମେ ଏତେ ବିଷୟ ଜାଣି ନେଇ, ଆଚାର୍ଯ୍ୟ କହିଲେ ।

ସେଇ ମୋର ସାଧନାର ଆରମ୍ଭ ।

*-ଆପଣଙ୍କ ସମାଲୋଚନାରେ ଥାଏ ଏକ ସ୍ୱତନ୍ତ୍ର ଦୃଷ୍ଟିଭଙ୍ଗୀ, ଯାହା ଆମ ସାହିତ୍ୟ ପାଇଁ ଅନନ୍ୟ, ଏଥିପାଇଁ ଉପାଦାନ ବା ମାନସିକ ଭାବେ ପ୍ରେରଣା କେଉଁଠୁ ମିଳିଥାଏ ?*

ଏକ ଅପୂର୍ବ ଦୀପ୍ତି ଖେଳିଗଲା ଡକ୍ଟର ସାମନ୍ତରାୟଙ୍କ ମୁହଁରେ, ବୟସର ଅପରାହ୍ନରେ ମଧ୍ୟ ସେ ଆଭାକୁ ଅସ୍ୱୀକାର କରାଯାଇପାରେ ନାହିଁ । ଧୀର କଣ୍ଠରେ କହିଲେ, ଫାଇନେଷ୍ଟ ଇଜ୍ ବେଷ୍ଟ । ପାଞ୍ଚଜଣଙ୍କୁ ଫୁଲ ଦିଆଗଲା, ପାଞ୍ଚଜଣଯାକ ମାଳା ଗୁନ୍ଥିଲେ କିନ୍ତୁ ତା' ଭିତରେ ସବୁଠୁ ଭଲ ନିଶ୍ଚୟ ଗୋଟିଏ ଥିବ । ତେଣୁ ପ୍ରତ୍ୟେକ ଗବେଷଣା ବା ଅନୁଧ୍ୟାନ ପାଇଁ ଗୁଡ଼ାଏ ପଢ଼ିବାକୁ ହେବ, ଗୁଡ଼ାଏ ଟିପିବାକୁ ହେବ, ତମେ ଯାହା ଆଣିବ ତାହା ଯେମିତି ଅନ୍ୟ କେହି ଆଣୁ ନ ଥିବେ । ତାହା ହିଁ ହେବ ଏକ ସ୍ୱତନ୍ତ୍ର ଦୁର୍ଲ୍ଲଭ ସୃଷ୍ଟି । ରବିନ୍ଦ୍ର ବିଶ୍ୱବିଦ୍ୟାଳୟର ଜଣେ ବଙ୍ଗାଳୀ ପ୍ରଫେସର, ଥରେ ଆସିଥିଲେ ଶିଖ୍ ଧର୍ମ ଉପରେ ଗବେଷଣା ଆରମ୍ଭ କରିଥାନ୍ତି । ସେ ମୋ ନୋଟ୍ ଦେଖିଲେ ତା'ପରେ ପଚାରିଲେ ଏଇ ଅଭିନବ ଉପାୟ ଆପଣ ଶିଖିଲେ କେମିତି ?

ମୁଁ କହିଲି, ତମେ ନିଜେ ନିଜେ ଶିଖିବ, ଗବେଷଣା କରିବ, ବାଟ ଖୋଲିବ । ଶିଖାଇବ କିଏ ? ଗୋଟିଏ ଛୋଟ ପ୍ରବନ୍ଧ ଭିତରେ ବି କ'ଣ ଅଛି ତା'କୁ ଦେଖିବାକୁ ପଡ଼େ । ଗୋଟାଏ ଅନ୍ଧାରଘର ଭିତରେ ସମାଲୋଚନା ହେଉଛି ଏକ-ଫୋକସିଂ ପାୱାର, ଗୋଟେ ଟର୍ଚ୍ଚ ଭଳି । ଆଖିକୁ ଗୋଟେ ଜିନିଷ ଦିଶେ, ତାକୁ ତମେ ଆଉ ଗୋଟିଏ ରୂପରେ ଯଦି ଦେଖାଇପାର ତେବେ ତାହା ଏକ ପଥ ଖୋଲିଦିଏ, ପରବର୍ତ୍ତୀ ସମୟ ପାଇଁ । ସମାଲୋଚନା ପାଇଁ ଛୋଟ ଗୋଟେ ପୃଷ୍ଠା ପ୍ରଥମେ ଲେଖିବ, ତା'ର ଇଣ୍ଟିଗ୍ରାଲ୍ କ୍ୱାଲିଟି ଦେଖିବ, ଭଲ ନ ହେଲେ ଚିରିବ ।

ଉଦାହାରଣ ଗୋଟିଏ ଦେବି : ମଧୁସୂଧନ ରାଓଙ୍କର- 'ଆକାଶ ଦିଶେ କି ସୁନ୍ଦର, ତାହାକୁ ରଚିଲେ ଈଶ୍ୱର ।' ଏଥିରେ ନୂଆ କ'ଣ ଅଛି ? କିନ୍ତୁ ସମାଲୋଚନା କହେ, ଏହାର ନୂତନତ୍ୱ ହେଉଛି, ତା'କୁ ଯିଏ ଲେଖିଛନ୍ତି, ତାଙ୍କର ଜୀବନ ସହିତ ଏ କବିତାର ସମ୍ପର୍କ ଅଛି । ତାଙ୍କର ଈଶ୍ୱର ଭକ୍ତି ଏଥିରେ ପ୍ରତିଫଳିତ ହୋଇଛି । ଏହା ହେଉଛି ସମାଲୋଚନାର ବାହାଦୁରୀ ।

*- ଆପଣଙ୍କର ଗାଇଡ୍ କିଏ ଥିଲା ?*

ଡଃ ନଟବର ସାମନ୍ତରାୟ- 'ସେ ଏକ ବିଚିତ୍ର ଅଭିଜ୍ଞତା' କଣ୍ଠରେ ଫୁଟି ଉଠୁଥାଏ ସରଳ ଚାପଲ୍ୟ । 'ମୁଁ ନିଜେ ନିଜେ ରିସର୍ଚ୍ଚ କରୁଥିଲି । ବାରବର୍ଷ ଲାଗିଗଲା । ୧୯୬୨ରେ ମୁଁ ଯେତେବେଳେ 'ଡକ୍ଟରେଟ୍' ପାଇଁ ଗଲି ସେତେବେଳେ ହେଡ୍ ଅଫ୍ ଦି ଡିପାର୍ଟମେଣ୍ଟ ଆଉ ଚେୟାରମ୍ୟାନ୍ ଥାଆନ୍ତି କୁଞ୍ଜବିହାରୀ ତ୍ରିପାଠୀ । ସେ କହିଲେ ତମର ତ ଗାଇଡ୍ ନାହିଁ, ଏକ୍‌ଜାମିନର୍ କିଏ ହେବ ? ଅସୁବିଧାରେ ପଡ଼ିଗଲି । ସ୍ୱର୍ଗତ ଶ୍ରୀରାମଚନ୍ଦ୍ର ଦାଶ ମୋର ସାଙ୍ଗ । ସେ ମତେ ବାଟ ବତେଇ ଦେଲା, କହିଲା ୫ ବର୍ଷ ଚାକିରୀ କଲା ପରେ ଆଇନ୍ ଅଛି ନିଜେ ରିସର୍ଚ୍ଚ କରିପାରିବ । ତେଣୁ ବିନା ଗାଇଡ୍‌ରେ ମୁଁ ରିସର୍ଚ୍ଚ କରି ଡକ୍ଟରେଟ୍ ପାଇଥିଲି ।

*- କେଉଁ ସମୟରେ ଆପଣ ଏଇ ଗବେଷଣା କରନ୍ତି, ପଢ଼ାପଢ଼ି କରନ୍ତି ଏବଂ ଏଥିପାଇଁ ଯେଉଁ ଏକାଗ୍ରତା ତାହା କିପରି ଆସିପାରେ ?*

ଡକ୍ଟର ସାମନ୍ତରାୟ- 'ମୁଁ ଜଣେ ସଂସାରୀ ମଣିଷ ତେଣୁ ପିଲାମାନେ ଶୋଇ ପଡ଼ିବା ପରେ ରାତି ୯ଟା ପରେ ଆରମ୍ଭ ହୁଏ , ସକାଳ ହୋଇଯାଏ । ତା' ଭିତରେ ଉଇହୁଙ୍କାରେ ରହିଲା ଭଳି ମଗ୍ନ ହୋଇଯିବାର ଅବସ୍ଥା । ଏବଂ ଏକାଗ୍ରତା... ମୁଁ ଯଦି ଗଣିତ ପଢ଼ି ନଥା'ନ୍ତି ତେବେ ଏତେ ଏକାଗ୍ରତାର ସହିତ ଏତେ ବୈଜ୍ଞାନିକ ପଦ୍ଧତିରେ ସଂଗଠିତ କରି ସମାଲୋଚନା ବା ଗବେଷଣା କରିପାରି ନଥାନ୍ତି । ଗବେଷଣା ହେଉଛି 'ଟୁ ଟ୍ରେନ୍‌ଡ ଏ ମାଇଣ୍ଡ ଟୁ ପୁଟ୍ ମେନି କ୍ୱଷ୍ଟିନ୍ ।' କିନ୍ତୁ ପ୍ରସେସ୍ ଇଜ୍ ୱାନ୍ ।

*-ସମାଲୋଚନାର ଜଣେ ନିରଳସ ସାଧକ ହିସାବରେ ଆପଣ କହିବେ କି, ଆଜିର ସମାଲୋଚନା କ'ଣ ଠିକ୍ ପଥ ଅନୁସରଣ କରୁଛି ?*

ଆଖିର ଚାହାଣୀ ହଠାତ୍ ବିଷନ୍ନ ହୋଇଗଲା ଡଃ ସାମନ୍ତରାୟଙ୍କର । କହିଲେ, ଆଗେ ଯେଉଁମାନେ ଗବେଷଣା କରୁଥିଲେ ସେମାନଙ୍କର ଲକ୍ଷ୍ୟ ଥିଲା ମୁଁ କିଛି ଦେଇଦେବି । ମୁଁ ପାଠ ପଢ଼ିଛି, ସମାଜକୁ ଯଦି କିଛି ଦେଇ ପାରିଲି ନାହିଁ ତାହା ମୋ ପାଇଁ ଅନେକ ଅସଫଳତା । ପ୍ରତି ବଦଳରେ କିଏ କ'ଣ ଦେବ ସେ ଚିନ୍ତା ନଥିଲା । କର୍ମରେ ମୋର ଅଧିକାର, ଫଳରେ ନାହିଁ; ଏହା ସେମାନେ ଚିନ୍ତା କରୁଥିଲେ । ବର୍ତ୍ତମାନ ପିଏଚ୍.ଡି. ନ କଲେ ଚାକିରୀ ହେବ ନାହିଁ । ତେଣୁ ଏମ୍. ଫିଲ୍. କର, ରିସର୍ଚ୍ଚ କର । ଏଇ ଯେଉଁ ନିୟମ ହେଲା ଏବଂ ପ୍ରତିଯୋଗିତା ହେଲା ଯେ ସମସ୍ତେ ଗବେଷଣା କର, ସେଥିରୁ ଠକିବା ଆରମ୍ଭ ହେଲା, ଯେନତେନ ପ୍ରକାରେଣ ସମସ୍ତେ ପାରି ହେବାକୁ ଚାହିଁଲେ । ପିଲାଙ୍କ ସଂଖ୍ୟା ବଢ଼ିଲା ଓ ମାନ ବି ହ୍ରାସ ପାଇଲା ।

*-ସମାଲୋଚନା କ୍ଷେତ୍ରରେ କିଏ ଆପଣଙ୍କ ପ୍ରିୟ ?*

ଡକ୍ଟର ସାମନ୍ତରାୟ- ମୁଣ୍ଡ ହଲେଇଲେ । ମୁଁ କେବେ ଓଡ଼ିଆ ସମାଲୋଚନା ପଢ଼େ ନାହିଁ । ମୁଁ ମଧ କେବେ ବିଷୟବସ୍ତୁ ପଢ଼େ ନାହିଁ । ଗୋଟିଏ ଉଦାହରଣ ଦେବି, ତିନୋଟି ମନୋହରୀ ଦୋକାନ, ସବୁଠାରେ ସବୁ ଜିନିଷ ଅଛି । କିନ୍ତୁ ଗୋଟେ ଦୋକାନ ଭଲ ଲାଗେ ଓ ଗ୍ରାହକ ସେଇଠି ବାନ୍ଧି ହୋଇଯାଏ । କାରଣ ହୁଏତ ସେ ଦୋକାନର ସଜେଇବା କଳାଟି ଭଲ, ଖାତିର୍ ଭଲ । ବ୍ୟବହାର ଭଲ । ତେଣୁ ଆକର୍ଷିତ କରେ ଗ୍ରାହକକୁ । ତେଣୁ ଦୋକାନ ଯେମିତି ବାହାର ଲୋକ ପାଇଁ, ଠିକ୍ ସେମିତି ଗବେଷଣା, ସମାଲୋଚନା

ପାଠକ ପାଇଁ । ଅନେକ ସମୟରେ ପାଠକ ବି ସମାଲୋଚକଠାରୁ ଉପରେ ଥାଏ । ତେଣୁ ସେତିକି ବେଳେ ସମାଲୋଚକର ଚିନ୍ତା ହେବ, ମୁଁ ଅଧିକ କିଛି ଦେବି । ପାଠକକୁ ଆକର୍ଷିତ କରିବି । ସମାଲୋଚନା ପାଇଁ ବହୁ ଜିନିଷ ପଢ଼ିବାକୁ ପଡ଼େ । ବହୁ ଭାଷା ମଧ ଶିଖିବାକୁ ହୁଏ । କିନ୍ତୁ ମୋ କ୍ଷେତ୍ରରେ ଅଲଗା ହୋଇଛି । ଗବେଷଣା ଆରମ୍ଭ କରିବା ସମୟରେ ମୁଁ ପ୍ରଥମେ ସଂସ୍କୃତର ଅଳଙ୍କାର ଗ୍ରନ୍ଥ ମଗାଇଲି ଓ ତା'ପରେ ଇଂରେଜୀ ପଢ଼ିଲି, ରବିନ୍ଦ୍ର ଠାକୁରଙ୍କ ଛନ୍ଦ ପଢ଼ିଲି, ହିନ୍ଦୀରେ ହଜାରୀ ପ୍ରସାଦ ଦ୍ୱିବେଦୀଙ୍କ ବହି ପଢ଼ିଲି । ଧର୍ମ ପୁସ୍ତକ ସମାଲୋଚନା ପାଇଁ 'ଉତ୍ତର ଭାରତକୀ ସନ୍ଥ ପରମ୍ପରା' ପଢ଼ିଲି ।

*-କୁହାଯାଏ ସାହିତ୍ୟରେ କାଳ ଓ କଳା ଅତି ଅନ୍ତରଙ୍ଗ, ଏ ସମ୍ପର୍କରେ ଆପଣଙ୍କ ସମାଲୋଚନାର ଦୃଷ୍ଟିଭଙ୍ଗୀ କ'ଣ ?*

ଡକ୍ଟର ନଟବର ସାମନ୍ତରାୟ- ସମସ୍ତେ କହନ୍ତି କଳା କାଳ ଉପରେ ହିଁ ନିର୍ଭରଶୀଳ । କିନ୍ତୁ ମୁଁ କହେ ନା କାଳକୁ ନ ଜାଣିଲେ କଳା ବିଷୟରେ ଜାଣିବା ମୁସ୍କିଲ । ତେଣୁ 'ନେତ୍ରମଣି ଡାଏରୀ' ଲେଖା ସମୟରେ ମୁଁ ପୁସ୍ତକ (ଛ ମାଣ ଆଠଗୁଣ୍ଠ)ରେ ଥିବା ଜଜ୍‌ମେଣ୍ଟ୍‌ର ସାଲ, ପୋଲିସ୍ ରିପୋର୍ଟର ସାଲ, ସବୁ ଟିପିକି ରଖିଛି । ଏବଂ ତା'ପରେ ଦୀର୍ଘ ୧୫ ଦିନ କାଳ ଚିନ୍ତା କରି ମୁଁ 'ନେତ୍ରମଣିର ଡାଏରୀ' ଆରମ୍ଭ କଲି । ଆଉ ଗୋଟିଏ କଥା ମଧ ମୋର ମନେ ଅଛି । ସେତେବେଳେ କାଳନ୍ଦୀବାବୁ (୰ କାଳନ୍ଦୀଚରଣ ପାଣିଗ୍ରାହୀ) ଆମ ଗାଁ ପାଖ 'ବେରବୋଇ'ରେ 'କୋ-ଅପରେଟିଭ ଷ୍ଟୋର'ର ମ୍ୟାନେଜର ଥାଆନ୍ତି । ଥରେ ତାଙ୍କ ପାଖକୁ ଜଣେ ଲୋକ ଦଉଡ଼ି ଆସି କହିଲା, ବାବୁ ଘର ଭିତରେ ମୋର ପାଚିରୀ ଉଠିଛି । ଡିହରେ ବାଡ଼ଦିଆ ହୋଇଛି ଏବଂ କାଳନ୍ଦୀ ବାବୁଙ୍କ ଅମର ସୃଷ୍ଟି 'ମାଟିର ମଣିଷ' ସେଇ ଅନୁଭୂତିରୁ ସୃଷ୍ଟି । ତେଣୁ 'ମାଟିର ମଣିଷ'ର କାଳକୁ ଆଗ ଚିହ୍ନିବା ଦରକାର ।

*-ଆପଣ ଅନ୍ୟ କୌଣସି ଭାଷାରେ ଲେଖିଛନ୍ତି କି ?*

ଡଃ ସାମନ୍ତରାୟ- ନା, ମୁଁ କେବଳ ଓଡ଼ିଆରେ ଲେଖେ । ଓଡ଼ିଆ ମୋର ମାତୃଭାଷା ଯଦିଓ ମୁଁ ଇଂରାଜୀ ବା ଅନ୍ୟ କିଛି ଭାଷାରେ ଲେଖି ପାରିଥା'ନ୍ତି । କିନ୍ତୁ ନିଜର ଭାଷାକୁ ତ ଆଗ ଧନୀ କରିବାକୁ ପଡ଼ିବ । ତମ ନିଜ ପାଖରେ ଯଦି ପଇସାଟିଏ ନାହିଁ, ଦାନ କରିବ କ'ଣ ?

*- ଆଜିର ସମାଲୋଚକ ବା ସମୀକ୍ଷକ ପାଇଁ ଆପଣ କ'ଣ କହିବେ ?*

ଡକ୍ଟର ସାମନ୍ତରାୟ- ସମାଲୋଚକ ହିଁ ପଥ ପରିଷ୍କାର କରିଦିଏ, ଗୋଟିଏ ଭାଷାର ସାହିତ୍ୟକୁ ଅନୁଭବ କରିବା ପାଇଁ ।

ଯେଉଁ ସମାଲୋଚନା ସାହିତ୍ୟକୁ ଲୋକେ ପଚାରୁ ନଥିଲେ, ଆଜି ଅନେକ ଖୁବ୍ ଆଗ୍ରହରେ ପଢୁଛନ୍ତି । ସମସ୍ତେ ଅନୁଭବ କଲେଣି, ସମାଲୋଚନା ବିନା ସାହିତ୍ୟର ଉନ୍ନତି ଅସମ୍ଭବ ।

ତେଣୁ ସମାଲୋଚନା ସାହିତ୍ୟ ଭିତରେ ତମେ ତମର ପରମ୍ପରାକୁ ମଜଭୁତ କରି ଛିଡ଼ା କରାଅ, ନିଜକୁ ଗଢ଼ । ଅନୁକରଣ କରି ସ୍ୱାତନ୍ତ୍ୟ ହରାଅ ନାହିଁ ।

*(ସୌଜନ୍ୟ- 'ସମ୍ବାଦ',ଫେବ୍ରୁଆରୀ ୪/୧୦/୧୯୯୬)*

# ସୃଷ୍ଟି ଓ ସମୀକ୍ଷା: ଏକ ଓ ଅଭିନ୍ନ

*ଉପସ୍ଥାପନା-ଜିତେନ୍ଦ୍ର ପଟ୍ଟନାୟକ*

*ଚଳିତ ବର୍ଷ ଆପଣ 'ଅତିବଡ଼ୀ ଜଗନ୍ନାଥ ପୁରସ୍କାର' ପାଇଲା ପରେ ଆପଣ କ'ଣ ଅନୁଭବ କଲେ ?*

ମୋ ପାଇଁ ଏହାର ଉତ୍ତର କିଛି ନାହିଁ । ଖୁସି ହେବି ବା କାହିଁକି ? ପିଲାବେଳେ ପୁରସ୍କାର ପାଇବାରେ ଯେମିତି ଖୁସି ଲାଗିଥାଏ, ଏବେ ତାହା ହେବନି । ମାତ୍ର ଖୁସିର କଥା, ଓଡ଼ିଶା ସରକାର ଯେ ସମାଲୋଚନା ସାହିତ୍ୟକୁ ଏତେ ଟଙ୍କା (୨୫ହଜାର) ସହ ତାମ୍ର ଫଳକ ଦେଇ ସମ୍ମାନିତ କରିପାରିଲେ, ତାହା ହିଁ ବଡ଼ କଥା ।

*ଆପଣଙ୍କ ସମାଲୋଚନାର ସୂତ୍ର ମୁଖ୍ୟତଃ 'ସମୟ'-ଭିତ୍ତିକ । ଏପରି ସମାଲୋଚନାର ସାର୍ଥକତା ସପକ୍ଷରେ ଆପଣଙ୍କ ଯୁକ୍ତି କ'ଣ ?*

ସମାଲୋଚନା ଏକ ବୈଜ୍ଞାନିକ ପରୀକ୍ଷାଗାର । ଏହି ପରୀକ୍ଷାଗାର ମଧ୍ୟରେ ଯାହା ସବୁ କରାଯିବ, ସେ ସବୁ ଯୁକ୍ତି ସଙ୍ଗତ ହେବ । ଯୁକ୍ତି ବ୍ୟତିତ ଆନୁମାନିକତାକୁ ସମାଲୋଚନା ସାହିତ୍ୟରେ ଗ୍ରହଣ କରାଯାଏ ନାହିଁ । ଯେଉଁ ସମାଲୋଚନା ସାହିତ୍ୟରେ ହିସାବ ସବୁ ଠିକ୍ ରହିଛି, ସେ ପର୍ଯ୍ୟନ୍ତ ସିଦ୍ଧାନ୍ତ କେବେ ଭୁଲ୍ ହୁଏ ନାହିଁ । ଏଣୁ ସାହିତ୍ୟର ନିର୍ଣ୍ଣୟ ହେବା ପାଇଁ ତା'ର ଉପାଦାନ ଓ ପ୍ରାମାଣିକତା ପ୍ରଥମେ ହୃଦୟଙ୍ଗମ କରିବା ନିହାତି ଗୁରୁତ୍ୱପୂର୍ଣ୍ଣ ।

*ଆପଣ ସମାଲୋଚନାରେ ଯେଉଁ ନୂତନ ଦୃଷ୍ଟିକୋଣ ଗ୍ରହଣ କରିଥିବା କଥା କୁହନ୍ତି ତାହା କେବେଠାରୁ ଆରମ୍ଭ ହେଲା ?*

ମୋର ପ୍ରଥମ ଲେଖା 'ଓଡ଼ିଆ ଅକ୍ଷର ଶିକ୍ଷାର ସହଜ ପ୍ରଣାଳୀ' ରବିବାର ପ୍ରଜାତନ୍ତ୍ର (୨୫/୯/୪୯)ରେ ପ୍ରକାଶ ପାଇଥିଲା । ଗୋଟିଏ ଅକ୍ଷର 'ଠ' ଦେହରୁ ଭାଙ୍ଗି ଓଡ଼ିଆର ପ୍ରାୟ ସମସ୍ତ ଅକ୍ଷର ଶିଖାଯାଇ ପାରିବ । ଏହା ସେଥିରେ ପ୍ରତିପାଦିତ ହୋଇ ସାରିଛି । ବୟସ୍କମାନେ ଏହି ପ୍ରଣାଳୀ ଅନୁକରଣ କଲେ ଓଡ଼ିଆ ଅକ୍ଷର ଶିଖାଯାଇ ପାରିବ । ସେଥି ପାଇଁ ବୋଧହୁଏ କୌଣସି ସଂସ୍ଥା ଏହି ଧାରାକୁ ଅନୁକରଣ କରି ବୟସ୍କମାନଙ୍କ ଭିତରେ ଅକ୍ଷର ଶିକ୍ଷାକୁ ପ୍ରବର୍ତ୍ତନ କରୁଅଛନ୍ତି । ତା' ପରେ ମୋର ଦ୍ୱିତୀୟ ଲେଖା 'ପ୍ରାଚୀନ ଓଡ଼ିଆ ସାହିତ୍ୟ' ପୁନଶ୍ଚ ସେଇ 'ପ୍ରଜାତନ୍ତ୍ର' ରବିବାର ପୃଷ୍ଠା(୪/୧୦/୪୯)ରେ ମଧ୍ୟ ପ୍ରକାଶିତ ହୋଇଥିଲା । ଯେଉଁଥିରେ ଓଡ଼ିଆ ପ୍ରାଚୀନ ସାହିତ୍ୟକୁ ନୂତନ ରୂପରେ ବ୍ୟାଖ୍ୟା କରିବାର ପ୍ରୟାସ କରା ଯାଇଅଛି ।

*ଆପଣଙ୍କର ସମାଲୋଚକ ଜୀବନକୁ କେଉଁମାନେ ସଫଳତାର ଶୀର୍ଷ ସୋପାନ ଆଡ଼କୁ ଆଗେଇ ନେଇଛନ୍ତି ?*

ଘରୋଇ ଭାବେ ଏମ.ଏ. ପରୀକ୍ଷା ପାଇଁ ନିଜକୁ ପ୍ରସ୍ତୁତ କଲାବେଳେ ମୋର ଶିକ୍ଷାଗୁରୁ ଡଃ ଆର୍ତ୍ତବଲ୍ଲଭ ମହାନ୍ତି ଓ ଜ୍ଞାନଗୁରୁ ପଣ୍ଡିତ ନୀଳକଣ୍ଠଙ୍କର ଗଭୀର ଅନ୍ତର୍ଦୃଷ୍ଟି ଓ ମୌଳିକ ମନନଶୀଳତା ମୋତେ ବିଶେଷ ଭାବରେ ଆକୃଷ୍ଟ କରିଥିଲା । ଅନୁଗୋଳରେ

ଶିକ୍ଷକତା କରୁଥିବା ବେଳେ କବିବନ୍ଧୁ ଶ୍ରୀ ରାଧାମୋହନ ଗଡ଼ନାୟକଙ୍କ ସଂସ୍ପର୍ଶରେ ଆସେ ଓ ତାହାଙ୍କର ନୂତନ ଦୃଷ୍ଟିଭଙ୍ଗୀ ଓ ବିଷୟ ପରିଶୀଳନରେ ତୀକ୍ଷ୍ମ ବିଚାରବୋଧ ମୋତେ ଏତେ ଦୂର ପ୍ରଭାବିତ କରିଥିଲା ଯେ ସେ ସବୁ ସାହିତ୍ୟାଲୋଚନା ନିମନ୍ତେ ଅପରିହାର୍ଯ୍ୟ ବୋଲି ମୁଁ ଗ୍ରହଣ କରି ନେଇଥିଲି । ଅଧ୍ୟାପକ ଜୀବନ ପ୍ରାରମ୍ଭରେ ମୋର ଶିକ୍ଷାଗୁରୁ ଡଃ ମାୟାଧର ମାନସିଂହର ଓଡ଼ିଆ ବିଭାଗର ଅନ୍ୟ ବିଭାଗ ଅପେକ୍ଷା ସମାଲୋଚନାରେ ଅଧିକ ସମୟ ନିୟୋଜିତ କରିବା ପାଇଁ ମୋତେ ସତତ ଉତ୍ସାହିତ କରିଥିଲେ । ବାରିପଦାରେ ମୋର ଗବେଷକ ଜୀବନର ଶୁଭାରମ୍ଭ ହୁଏ ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟଙ୍କର ବାସଭବନର ଗ୍ରନ୍ଥାଗାରରେ । ଏ ସମସ୍ତ ବ୍ୟକ୍ତିଗତ ଅଭିଜ୍ଞତାକୁ ମୂଳଧନ କରି ଅଧ୍ୟାପକ ଜୀବନ ସହିତ ଆରମ୍ଭ ହେଲା ମୋର ପ୍ରକୃତ ସମାଲୋଚକ-ଜୀବନ ।

ଶେଷରେ କହିବି- ଡଃ ହରେକୃଷ୍ଣ ମହତାବଙ୍କର ବିଶେଷ ଉତ୍ସାହ ଓ ପ୍ରେରଣା ହେତୁ 'ଝଙ୍କାର' ମାଧ୍ୟମରେ ହିଁ ଦେଶବାସୀଙ୍କ ନିକଟରେ ମୁଁ ବେଶ୍ ପରିଚିତ ହୋଇପାରିଲି ।

*ଆଜିର ସମାଲୋଚନା ସାହିତ୍ୟ ସମ୍ପର୍କରେ କିଛି ?*

ସମାଲୋଚନା ସାଧାରଣତଃ ଉଚ୍ଚଶିକ୍ଷିତ ପାଠକମାନଙ୍କର ଦୃଷ୍ଟିରେ ଆଦୃତ ହୋଇଥାଏ । କିନ୍ତୁ କବିତା, ଗଳ୍ପ, ଉପନ୍ୟାସ ପରି ଲେଖାଗୁଡ଼ିକ ସହିତ ସମାଲୋଚନାକୁ ତୁଳନା କରି ଉପସ୍ଥାପନା କଲେ ସାଧାରଣ ପାଠକ ଉପନ୍ୟାସ ପରି ତାକୁ ବେଶୀ ଆଦର କରିବେ । ମାତ୍ର ସମାଲୋଚନା ସାହିତ୍ୟ ଏକ ବୌଦ୍ଧିକ ପ୍ରକ୍ରିୟା ଉପରେ ପ୍ରତିଷ୍ଠିତ ଥିବାରୁ ଏହା ଅନେକଙ୍କ ଦ୍ୱାରା ଅନାଦୃତ ହେବାର ଆଶଙ୍କା ଥାଏ ।. କିନ୍ତୁ ଆଜିକାଲି ସାହିତ୍ୟ ସମାଲୋଚକ ବା ଗବେଷକମାନେ ଆଲୋଚନାକୁ କେବଳ ବୁଦ୍ଧିଭିତ୍ତିକ ନକରି ସୃଷ୍ଟି ଧର୍ମାଶୟୀ କରିବାକୁ ଚେଷ୍ଟା କରୁଛନ୍ତି । ଏପରି ଲେଖାର ସଂଖ୍ୟା ବୃଦ୍ଧି ହେଲେ ଓଡ଼ିଆ ସମାଲୋଚନା ସାହିତ୍ୟ ଯେ ଅଚିରେ ସମୃଦ୍ଧ ଓ ଲୋକପ୍ରିୟ ହେବ ଏଥିରେ କୌଣସି ସନ୍ଦେହ ନାହିଁ । ପାଠକମାନେ ଜାଣି ରଖିବା ଉଚିତ ଯେ, ସୃଷ୍ଟି ଓ ସମୀକ୍ଷା ପରସ୍ପର ବିରୋଧ୍ ଧର୍ମାକ୍ରାନ୍ତ ନୁହଁନ୍ତି । ମଣିଷ ମନରେ ଥାଏ ସାଧାରଣତଃ ଦୁଇଟି ବିଶିଷ୍ଟ ପ୍ରକୃତି । ଗୋଟିଏ ସୃଷ୍ଟି ଓ ଅନ୍ୟଟି ସମୀକ୍ଷା । ସ୍ରଷ୍ଟା ସୃଷ୍ଟି କଲାବେଳେ, ନିଜକୁ ସମୀକ୍ଷା ଧର୍ମାତ୍ମକ ନ କଲେ ତା'ର ସୃଷ୍ଟି ଅପସୃଷ୍ଟିରେ ପରିଣତ ହୋଇଯିବାର ସମ୍ଭାବନା ରହିଛି । ଠିକ୍ ସେହିପରି ସମୀକ୍ଷକ ସାହିତ୍ୟର ସମାଲୋଚନା କ୍ଷେତ୍ରରେ ନିଜକୁ 'ସୃଷ୍ଟି-ରସାପ୍ଳୁତ' ନକଲେ ସମାଲୋଚନା ମଧ୍ୟ ଲୋକଙ୍କ ପାଖରେ ପ୍ରୀତିପ୍ରଦ ହୋଇପାରିବ ନାହିଁ । ଫଳତଃ ସୃଷ୍ଟି ଓ ସମୀକ୍ଷା ଗୋଟିଏ ଦୃଷ୍ଟିରୁ ଏକ ଓ ଅଭିନ୍ନ । ତା ହେଲେ ଓଡ଼ିଆ ସାହିତ୍ୟ ଏହି ଉଭୟ ଲକ୍ଷଣ ଦ୍ୱାର ସମୃଦ୍ଧି ଲାଭ କରିବ ।

*(ସୌଜନ୍ୟ-'ପ୍ରଜାତନ୍ତ୍ର', ୧୧/୧୧/୯୪)*

# ନିଜ ଉପରେ, ନିଜ ଜ୍ଞାନ ଉପରେ ଗଭୀର ଆତ୍ମବିଶ୍ୱାସ ନଥିଲେ ସମାଲୋଚନା ଲେଖିହେବ ନାହିଁ

ଉପସ୍ଥାପନା-ଶଶାଙ୍କ ଚୂଡ଼ାମଣି

ଶ୍ରୀଯୁକ୍ତ ନଟବର ସାମନ୍ତରାୟ ଓଡ଼ିଶାରେ ଅନନ୍ୟ ସାହିତ୍ୟ ସମାଲୋଚକ ଓ ଗବେଷକ ଭାବରେ ବହୁ ଯଶର ଅଧିକାରୀ । ୨୩ଟି ଗବେଷଣାତ୍ମକ ସନ୍ଦର୍ଭ ଓ ସମାଲୋଚନା ଲେଖିଥିବା ଏହି ସୁ- ସମାଲୋଚକଙ୍କର ଜନ୍ମ ୧୯୧୮ ମସିହାରେ ଡେଲାଙ୍ଗର ରାମଚନ୍ଦ୍ରପୁର ଗ୍ରାମରେ ।୧୯୪୨ ମସିହାରୁ ଓଡ଼ିଶାର ବିଭିନ୍ନ ଉଚ୍ଚ ବିଦ୍ୟାଳୟରେ ଗଣିତ ଶିକ୍ଷକ ଭାବେ ଶିକ୍ଷକତା କରିବା ପରେ ୧୯୪୯ ମସିହାରୁ ମହାବିଦ୍ୟାଳୟରେ ଅଧ୍ୟାପନା କାର୍ଯ୍ୟ ଆରମ୍ଭ କରିଥିଲେ । ୧୯୪୯ ଯାଏ ସାହିତ୍ୟ ସହିତ ପ୍ରାୟ ସମ୍ପର୍କ ନଥିବା ଏହି ପ୍ରଥିତଯଶା ସମାଲୋଚକ ନିଜ ଗାଣିତ୍ୟିକ ହିସାବ ଓ ବୈଜ୍ଞାନିକ ପଦ୍ଧତିର ଆଧାରରେ ଓଡ଼ିଆ ଆଧୁନିକ ସାହିତ୍ୟକୁ ନିଜ ଗବେଷଣାର ବିଷୟ ଭାବେ ଗ୍ରହଣ କରିଥିଲେ । ଅଧ୍ୟାପନା ଜୀବନର ପ୍ରାଥମିକ ଅବସ୍ଥାରେ ବିଶିଷ୍ଟ ଐତିହାସିକ ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟଙ୍କ ସାନ୍ନିଧ ତାଙ୍କ ଭିତରେ ଯେଉଁ ଐତିହାସିକ ଦୃଷ୍ଟିକୋଣକୁ ଜନ୍ମ ଦେଇଥିଲା ତାରି ଆଧାରରେ ସେ ନିଜର ସମାଲୋଚନାର ଧାରା ଠାରୁ ସ୍ୱତନ୍ତ୍ର କରି ପ୍ରକାଶ କଲେ । ସାହିତ୍ୟର ଇତିହାସରେ ପ୍ରଚଳିତ ଅନେକ ଭ୍ରମ ଓ ଅବମୂଲ୍ୟାୟନକୁ ନିଜର ସୂକ୍ଷ୍ମ ବିଚାର ଶକ୍ତି ଓ ପ୍ରଜ୍ଞା ବଳରେ ସଂଶୋଧିତ କରି ସତ୍ୟକୁ ପ୍ରତିଷ୍ଠା କରିବାରେ ସେ ଶତତ ଚେଷ୍ଟିତ ହୋଇଛନ୍ତି । ପୁରାତନ କାବ୍ୟ ସାହିତ୍ୟ, ପଲ୍ଲୀ ସାହିତ୍ୟ, ବୈଷ୍ଣବ ସାହିତ୍ୟ, ଓଡ଼ିଆ ଛାନ୍ଦ ଓ ଅଳଙ୍କାର ଉପରେ ଆଲୋଚନା ଠାରୁ ଆରମ୍ଭ କରି ଆଧୁନିକ ଓଡ଼ିଆ ସାହିତ୍ୟର ବିଭିନ୍ନ କୃତି ଉପରେ ସନ୍ଦର୍ଭ ଓ ସମାଲୋଚନା ପ୍ରସ୍ତୁତ କରି ନିଜର ସ୍ୱତନ୍ତ୍ର ବଜାୟ ରଖିଥିବା ଏହି ସମାଲୋଚକ ବନାମ ଗବେଷକଙ୍କ ନିରଳସ ସାଧନା, ଅନୁସନ୍ଧିତ୍ସା ଓ ସତ୍ୟାନୁରାଗ ପ୍ରତି ମର୍ଯ୍ୟାଦା ଜଣାଇ 'ବିଶ୍ୱମୁକ୍ତି' ସାହିତ୍ୟ ପତ୍ରିକା ତରଫରୁ ତାଙ୍କୁ ସାକ୍ଷାତ କରାଯାଇଥିଲା, ତାଙ୍କ ବାସଭବନ 'ବାଣୀ ଭବନ' ଭୁବନେଶ୍ୱରରେ । ଅଳ୍ପ ସମୟର ସେଇ ସାକ୍ଷାତକାରଟିକୁ ପ୍ରିୟ ପାଠକ ପାଠିକା ମାନଙ୍କ ଆଗରେ ଉପସ୍ଥାପନା କରିଛୁ ।

*ଆପଣ ସାହିତ୍ୟ ସମାଲୋଚନା ଓ ଗବେଷଣାକୁ କିପରି ଆସିଲେ ?*

"ମୁଁ କିପରି ଗବେଷଣା କଲି" ପୁସ୍ତକରେ ଏସବୁ କଥା ଲେଖିଛି । ଏ ପୁସ୍ତକ ପଢ଼ିଲେ ଜଣେ ଭଲ ପ୍ରାବନ୍ଧିକ ହୋଇପାରିବ । ବାରିପଦା ହାଇସ୍କୁଲରେ ଭୂଗୋଳ ଓ ଗଣିତ ଶିକ୍ଷକ ଥିବାବେଳେ ଏଥିପାଇଁ କିପରି ଷ୍ଟ୍ରଗଲ କରିଛି, ସେ ସବୁ ଏ ପୁସ୍ତକରେ ଲେଖିଛି ।

*ଆପଣଙ୍କ ସମାଲୋଚନାର ମୂଳ ଉପାଦାନ କ'ଣ ?*

ସ୍ଥାନ, କାଳ, ପାତ୍ର ଏ ତିନୋଟି କଥାକୁ ଆଖି ଆଗରେ ରଖି ମୁଁ ମୋର ଗବେଷଣା କରିଛି । ସମାଲୋଚନା ଲେଖିଛି । ନିଜ ଉପରେ, ନିଜଜ୍ଞାନ ଉପରେ ଗଭୀର ଆତ୍ମବିଶ୍ୱାସ ନଥିଲେ ସମାଲୋଚନା ଲେଖି ହେବନାହିଁ ।

*ଗୋଟିଏ ସମାଲୋଚନା ଲେଖିବାକୁ କେତେ ସମୟ ଲାଗେ ?*

ଗୋଟିଏ ଲେଖା ଲେଖି ସାରିବା ପରେ ତାକୁ ରଖିଦେବ । ପୁଣି ବର୍ଷେ ପରେ କାଢ଼ିବ । ତା ସହିତ matter ଯୋଡ଼ିବ । ପୁଣି ରଖିଦେବ । ପୁଣି ଯୋଡ଼ିବ, ସଜେଇବ । ତାପରେ ଯାଇ ଉନ୍ନତ ଲେଖା ବାହାରିବ ।

*ଓଡ଼ିଆ ଭାଷା ଆନ୍ଦୋଳନ ସମ୍ପର୍କରେ କିଛି କୁହନ୍ତୁ ।*

କିଛି ଆଲୋଚକ, ସାହିତ୍ୟିକ କହନ୍ତି ଯେ, ବଙ୍ଗାଳିମାନେ ଓଡ଼ିଆ ଭାଷାକୁ ଲୋପ କଲେ । ମାତ୍ର ଏହା ଭୁଲ୍ । ରାଜେନ୍ଦ୍ର ଲାଲ ମିତ୍ର ୧୯୩୩ ରେ ପ୍ରଚଳନ କଲେ ଯେ ୭୨ ଓଡ଼ିଆ ଅକ୍ଷର ଚାଲିବ । ଯେହେତୁ ଓଡ଼ିଆ ଭାଷାର ସମୃଦ୍ଧ ଗ୍ରନ୍ଥ ନଥିଲା । ପାଠ୍ୟ ପୁସ୍ତକ ନଥିଲା ତେଣୁ ଯାହାଥିଲା ବଙ୍ଗଳା ଭାଷାରେ । କ୍ରାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ ସମୟରେ ଗଣ୍ଡଗୋଳ ପରଠାରୁ ସରକାର ୧୮୬୯ ନଭେମ୍ବର ୮ ତାରିଖରୁ ଓଡ଼ିଆ ପ୍ରଚଳନ କରିବାକୁ ଘୋଷଣା କଲେ । ଓଡ଼ିଆ ବହି ନଥିବାରୁ ବଙ୍ଗଳା ବହି ପାଠ୍ୟକ୍ରମରେ ପ୍ରଚଳନ କରାଗଲା । ୧୮୪୧ରୁ । ଭାଷା ଆନ୍ଦୋଳନ ନହେଲେ ଭାଷାର ଉନ୍ନତି ଅସମ୍ଭବ । ଏବେ ବି ଏହାର ପ୍ରୟୋଜନ ରହିଛି ।

*'ବ୍ୟାସକବି ଫକୀର ମୋହନ' ଲେଖିଛନ୍ତି- 'ରେବତୀ' । ଏ ବାବଦରେ ଦୃଷ୍ଟିକୋଣ କିପରି ?*

ଫକୀର ମୋହନ ରେବତୀରେ ସଂସ୍କାର କଥା କହିଥିଲେ ମଧ୍ୟ ସେଥିରେ ସେନାପତି ମାନବିକତାର ପ୍ରତିଫଳନ ହୋଇଛି ବୁଢ଼ୀ ଚରିତ୍ରରେ । ମାନବିକତା ଓ ସଂସ୍କାର ଉଭୟରେ ଏହା ଅନବଦ୍ୟ ।

*ସମାଲୋଚନା ଲେଖି ସାହିତ୍ୟ ପ୍ରାଣ ସନ୍ତୁଷ୍ଟ କି ?*

ମାୟାଧର ମାନସିଂହ ମୋର ଅଧ୍ୟାପକ । ପ୍ରାଚୀନ ସାହିତ୍ୟ ସମାଲୋଚନା ଲେଖିବା ପାଇଁ ସେ ମୋତେ ପ୍ରେରଣା ଦେଲେ । ପରେ ପରେ ପରମାନନ୍ଦ ଆଚାର୍ଯ୍ୟ ଓ ତାଙ୍କ ଗ୍ରନ୍ଥାଗାର । ସେଠୁ ମୋତେ ପ୍ରେରଣା ମିଳିଲା । ଆନନ୍ଦ ନଥିଲେ ମୁଁ ସେଥିରେ ମଜିଯାଇ

ଥାଆନ୍ତି କାହିଁକି ?

*ବର୍ତ୍ତମାନ ଗବେଷଣା କରି ପିଏଚ୍.ଡି ପାଇବା ସମ୍ପର୍କରେ କିଛି ମତ ଦିଅନ୍ତୁ ।*

ସତ କହିଲେ ଏବେ ଗବେଷଣା ନାହିଁ । ଆମର ଯାହା ଶିକ୍ଷା ନୀତି ସେଥିରେ କିଛି କରିହେବ ନାହିଁ । ଏବେ ରାମ, ଦାମ ସବୁ ପିଏଚ୍.ଡି ପାଉଛନ୍ତି ।

*କେଉଁ ବିଶିଷ୍ଟ ସାହିତ୍ୟିକମାନଙ୍କ ସହ ମିଶିଛନ୍ତି ?*

ଏମିତି ସବୁ ସାହିତ୍ୟିକ ସହ ମିଶିଛି । ନୀଳକଣ୍ଠଙ୍କ ସହ ବେଶି ମିଶିଛି । ଅନେକ ସମୟରେ ତାଙ୍କ ସହ ଯୁକ୍ତି କରିଛି । ତାଙ୍କ ଦୃଷ୍ଟିରେ ଗୀତା ଓ ଜଗନ୍ନାଥ ଏକ ନୁହଁନ୍ତି । Historical composition ନାହିଁ । ନୀଳକଣ୍ଠ ମୂଳକଥାଟାକୁ ଏମିତି ଠିଆ କରେଇ ଦିଅନ୍ତି ଯେ, ତାହା ନୂତନ ଚମକ ଦିଏ ।

*ଜନ୍ମମାଟିର ମୋହ କିପରି ?*

ଜନ୍ମମାଟି ସହ ମୋର ସମ୍ପର୍କ ସୀମିତ ।

*ସମାଲୋଚନା ଲେଖି ଆର୍ଥିକ ସଫଳତା ମିଳିଛି ?*

ମୋ' ଜୀବନରେ ଚଉଦ ଖଣ୍ଡ ବହିର ରାଜଭାଗ ପାଇନାହିଁ । ଭାବେ ନିଜେ ଛପାଇବି

*ଏବର କବିତା କିପରି ଲାଗେ ?*

ସମସ୍ତେ ସବୁ ଜାଣନ୍ତିନି । ଅତୀତ ଯେବେ ପୁରୁଣା ହେଲେ ବି ମୋତେ ଆନନ୍ଦ ଦିଏ । ସେଥିରେ ସବୁ ଅଛି ।

*ପରବର୍ତ୍ତୀ କାଳରେ କେଉଁ ସମାଲୋଚକଙ୍କୁ ଭଲ ଲାଗେ ?*

ଶରତ ଚନ୍ଦ୍ର ପ୍ରଧାନ, ନିତ୍ୟାନନ୍ଦ ଶତପଥୀ, ଆଶୁତୋଷ ପଟ୍ଟନାୟକ ଭଲ ସମାଲୋଚନା କରନ୍ତି । ଅସିତ୍ କବି ଓ ରେଖା ମହାନ୍ତି ମଧ୍ୟ ।

*ବର୍ତ୍ତମାନ କ'ଣ ଲେଖାଲେଖି କରୁଛନ୍ତି ।*

ବର୍ତ୍ତମାନ ଲେଖିପାରୁନି କି ମୋତେ ଦେଖା ଦେଖାଯାଉନି । ଆଉ ବିଶେଷ କିଛି ଲେଖିବାର ନଥିଲା । ମୁଁ ଜୀବନ୍ତ ସାହିତ୍ୟିକ ମାନଙ୍କ ଉପରେ ଲେଖେ ନାହିଁ । ହଁ, ରାଧାମୋହନ ଗଡ଼ନାୟକଙ୍କ ସମ୍ପର୍କରେ କିଛି ଲେଖିପାରିଲି ନାହିଁ । ତାଙ୍କ ସହିତ ଅନେକ ସଂସ୍ପର୍ଶରେ ଆସିଛି ।

*(ସୌଜନ୍ୟ-'ବିଶ୍ୱମୁକ୍ତି', ମେ-ଜୁନ୍, ୨୦୦୦)*

# ଫଟୋରେ ଫଟୋରେ ନଟବର

ଇତିହାସର ପୃଷ୍ଠାରେ ଲିପିବଦ୍ଧ ହୋଇଥିବା
ସ୍ମୃତିରେ ସାଇତା ହୋଇଥିବା
ନଟବରଙ୍କର କେତୋଟି ଫଟୋଚିତ୍ର

# ଫଟୋରେ ଫଟୋରେ ନଟବର



ପତ୍ନୀ ଶ୍ରୀମତି ଗଙ୍ଗାବାଈଙ୍କ ସହ ଅବସର ଗ୍ରହଣ ପରେ



ଶ୍ୱଶୁର ଶ୍ରୀ ହୃଦାନନ୍ଦ ଭୋଳ, ପତ୍ନୀ ଗଙ୍ଗାବାଈ, ପୁତ୍ର ଶିବପ୍ରସାଦ ଓ କନ୍ୟା ସରଯୂ,
ସଂଯୁକ୍ତା, ସୁଲେଖାଙ୍କ ସହ ବାରିପଦାରେ ଅବସ୍ଥାନ କାଳରେ

ସ୍ୱଗୃହ 'ବାଣୀ ଭବନ'ର ବଗିଚାରେ



ସଢୁ ଡାଃ ପ୍ୟାରୀମୋହନ ସିଂ ଓ ଶାଳୀମାନଙ୍କ ସହ ପୁତ୍ର ଶମ୍ଭୁ ପ୍ରସାଦର ବିବାହ ଉତ୍ସବରେ

ବଡ଼ ନାତି ଦେବବ୍ରତର ନାମକରଣ ଉତ୍ସବ ବେଳେ



ଅଧ୍ୟାପକ ଶିବରାମ ପାତ୍ରଙ୍କ ସହ ଏକ ଅନ୍ତରଙ୍ଗ ମୁହୂର୍ତ୍ତରେ

'ବାଣୀ ଭବନ'ରୁ ସ୍ୱର୍ଗଦ୍ୱାରକୁ ଶେଷ ଯାତ୍ରା

ଡଃ ସାମନ୍ତରାୟଙ୍କର ଦଶାହ ଦିନ ସାଂସଦ ଡଃ ପ୍ରସନ୍ନ ପାଟଶାଣୀଙ୍କ ଶ୍ରଦ୍ଧାଞ୍ଜଳି ଜ୍ଞାପନ



୨୮/୩/୭୮ ଦିନ ଓଡ଼ିଶା ସାହିତ୍ୟ ଏକାଡେମୀ ତରଫରୁ ମାନ୍ୟବର ମନ୍ତ୍ରୀ
ଶ୍ରୀଯୁକ୍ତ ବିଶ୍ୱଭୂଷଣ ହରିଚନ୍ଦନଙ୍କ ସମ୍ବର୍ଦ୍ଧନା ଜ୍ଞାପନ

୧୪/୬/୮୦ ଦିନ ଶାରଳା ପୁରସ୍କାର ଉତ୍ସବରେ ଜ୍ଞାନପୀଠ ବିଜେତା
ଆଶାପୂର୍ଣ୍ଣା ଦେବୀଙ୍କ ଦ୍ୱାରା ମାନପତ୍ର ପ୍ରଦାନ

୨୫/୩/୮୪ଦିନ ଉତ୍କଳ ପାଠକ ସଂସଦ ତରଫରୁ ମାନ୍ୟବର ରାଜ୍ୟପାଳ
ଶ୍ରୀଯୁକ୍ତ ବିଶ୍ୱମ୍ଭର ନାଥ ପାଣ୍ଡେଙ୍କ ଦ୍ୱାରା 'ଜ୍ଞାନ ବାରିଧି' ଉପାଧି ପ୍ରଦାନ



୧୪/୧/୯୩ରେ 'ଫକୀର ମୋହନ ସମ୍ମାନ' ପ୍ରାପ୍ତି
ପରେ ଡଃ ସାମନ୍ତରାୟଙ୍କର ଅଭିଭାଷଣ ପ୍ରଦାନ

୧୯୯୪ ଉତ୍କଳ ବିଶ୍ୱବିଦ୍ୟାଳୟ, ଓଡ଼ିଆ ବିଭାଗ ତରଫରୁ
ଡଃ ନିତ୍ୟାନନ୍ଦ ଶତପଥୀଙ୍କ ଦ୍ୱାରା ଉପଢୌକନ ପ୍ରଦାନ

୧୬/୮/୯୫ ଓଡ଼ିଶା ସାହିତ୍ୟ ଏକାଡେମୀ ତରଫରୁ ମାନ୍ୟବର ରାଜ୍ୟପାଳ
ଶ୍ରୀଯୁକ୍ତ ଜି.ରାମାନୁଜନଙ୍କ ଦ୍ୱାରା 'ଅତିବଡ଼ୀ ଜଗନ୍ନାଥ ଦାସ' ପୁରସ୍କାର ପ୍ରଦାନ



ମହାନିଦ୍ରାରେ ଡକ୍ଟର ନଟବର ସାମନ୍ତରାୟ